# ଭାରତରେ ମୂର୍ତ୍ତିପୂଜାର ଉତ୍ପତ୍ତି ଓ ପରିଣାମ





ଯଜ୍ଞପ୍ରକାଶ ଦାସ

# ଭାରତରେ ମୂର୍ତ୍ତିପୂଜାର ଉତ୍ପତ୍ତି ଓ ପରିଣାମ

ମୂଳ ରଚନା :
**ଅଧ୍ୟାପକ ଶ୍ରୀ ରାଜେନ୍ଦ୍ର ଜିଜ୍ଞାସୁ**

ଅନୁବାଦ :
**ଶ୍ରୀ ଯଜ୍ଞପ୍ରକାଶ ଦାସ**

ବୈଦିକ ଅନୁସନ୍ଧାନ ପ୍ରତିଷ୍ଠାନ
ଭୁବନେଶ୍ୱର-୭

ଭାରତରେ ମୂର୍ତ୍ତିପୂଜାର ଉତ୍ପତ୍ତି ଓ ପରିଣାମ

ପ୍ରକାଶକ :
ବୈଦିକ ଅନୁସନ୍ଧାନ ପ୍ରତିଷ୍ଠାନ,
ଭୁବନେଶ୍ୱର-୭

ମୁଦ୍ରକ :
ନବଜୀବନ ପ୍ରେସ୍, ଗୁଡ଼ମାଚୌକ,
କଟକ-୨

ପ୍ରଥମ ସଂସ୍କରଣ :
ବିକ୍ରମାବ୍ଦ ୨୦୪୩, ଖ୍ରୀଷ୍ଟାବ୍ଦ ୧୯୮୬

ମୂଲ୍ୟ : ଚଉଦ ଟଙ୍କା

Bharatare Murtipoojara
Utpatti O Parinama

Published by :
Vaidika Anusandhan Pratisthan
Bhubaneswar-7

Printed at :
Nabajivan Press, Cuttack-2

First Edition :
Vikramabda : 2043; A.D : 1986

Price : Rs. 14.00

# ଅନୁବାଦକୀୟ ଭୂମିକା

ବୌଦ୍ଧ ଓ ଜୈନ ସଂପ୍ରଦାୟମାନଙ୍କଦ୍ୱାରା ଭାରତବର୍ଷରେ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ମହାତ୍ମା ବୁଦ୍ଧ ଓ ଜୈନ ତୀର୍ଥଙ୍କର-ମାନଙ୍କ ମୂର୍ତ୍ତିପୂଜା ସୂତ୍ରପାତ ହୋଇଥିଲା । ପ୍ରାରମ୍ଭରେ ଉକ୍ତ ଦୁଇ ସଂପ୍ରଦାୟ ମୂର୍ତ୍ତିପୂଜକ ନ ଥିଲେ । ମୂର୍ତ୍ତିପୂଜାର ବିକାଶ ପରେ ମଧ୍ୟ ଏହି ମତାବଲମ୍ବୀମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହି ଆସି-ଅଛି । ବୌଦ୍ଧ-ଜୈନ ମତର ହ୍ରାସ ସମୟରେ ଏହି ଦେଶରେ ପୌରାଣିକମାନଙ୍କଦ୍ୱାରା ଈଶ୍ୱର-ଉପାସନା ପାଇଁ ଦେବଦେବୀଙ୍କ ମୂର୍ତ୍ତିର କଳ୍ପନା କରାଗଲା । ଶୈବ, ଶାକ୍ତ, ବୈଷ୍ଣବ ସମ୍ପ୍ରଦାୟମାନେ ପୁରାଣ ନାମରେ ନବୀନ ଗ୍ରନ୍ଥଗୁଡ଼ିଏ ରଚନା କରି ମୂର୍ତ୍ତିପୂଜା, ଅବତାରବାଦ, ଜନ୍ମଗତ ଜାତିପ୍ରଥା, ମୃତକ ଶ୍ରାଦ୍ଧ, ପଶୁବଳି, ତୀର୍ଥସ୍ନାନାଦି ପ୍ରଥା ପ୍ରଚଳିତ କଲେ । ଆଧୁନିକ ହିନ୍ଦୁଧର୍ମ ଏହି ପୌରାଣିକ ମତକୁ ବୁଝାଏ । ପୁରାଣ ଅଧ୍ୟୟନ କଲେ ଜଣାଯାଏ ଯେ ସେ ସମୟର ଦୂରଦର୍ଶୀ ପଣ୍ଡିତମାନେ ମଧ୍ୟ ମୂର୍ତ୍ତିପୂଜାର ବିରୋଧ କରୁଥିଲେ । ସେମାନେ ତାହାକୁ ଅଜ୍ଞ ଲୋକଙ୍କ ପାଇଁ ନିର୍ଦ୍ଦିଷ୍ଟ କରିଥିଲେ । ଦେବୀ ଭାଗବତରେ ଲେଖା ଅଛି—'ପୁରାଣ ରଚନା କରିବାରେ ଧୂର୍ତ୍ତ ଚତୁର ଲୋକମାନେ ଘୋର କଳିକାଳରେ ନିଜର ଉଦର ପୂର୍ତ୍ତି ପାଇଁ ବିଷ୍ଣୁ, ଶିବ ଆଦି କଳ୍ପିତ ଦେବମାନଙ୍କ ପୂଜାବିଧି ପ୍ରଚଳନ କଲେ ।'

ଚାରି ବେଦରେ ମୂର୍ତ୍ତି ଶବ୍ଦ ମିଳେ ନାହିଁ । ବେଦ ପରମାତ୍ମାଙ୍କ ପ୍ରତିମାର କଳ୍ପନାକୁ ଅସମ୍ଭବ ବୋଲି କହିଛନ୍ତି । ଯେଉଁମାନେ ମୂର୍ତ୍ତିପୂଜାକୁ ବୈଦିକ ବିଧାନ ବୋଲି କହନ୍ତି, ସେମାନେ ହୁଏତ ବେଦର ସମ୍ୟକ ଅଧ୍ୟୟନ କରି ନାହାନ୍ତି ଅଥବା ଜାଣିଶୁଣି ସତ୍ୟର ଅପଳାପ କରୁଛନ୍ତି । ଉପନିଷଦର ଋଷିମାନେ ଈଶ୍ୱର-ଉପାସନା ବୁଝାଇବା ବେଳେ କେଉଁଠାରେ ହେଲେ ପ୍ରତିମାପୂଜା ବିଷୟ

ପ୍ରବଚନ କର ନାହାନ୍ତି । ବ୍ରହ୍ମ ପ୍ରାପ୍ତି ପାଇଁ ଉପନିଷଦ ମୂର୍ତ୍ତିପୂଜାକୁ ସାଧନ ସ୍ୱରୂପରେ ଗ୍ରହଣ କର ନାହାନ୍ତି । ସ୍ମୃତିଶାସ୍ତ୍ରମାନଙ୍କରେ ସନ୍ଧ୍ୟା-ଉପାସନା, ଅଗ୍ନିହୋତ୍ର, ପ୍ରଣବ-ଗାୟତ୍ରୀ ଜପ ତଥା ଅଷ୍ଟାଙ୍ଗ ଯୋଗର ଉପଦେଶ ଦିଆଯାଇଛି । କଣାଦ, କପିଳ, ଗୌତମ, ପତଂଜଳି, ବ୍ୟାସ, ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ମହାପୁରୁଷ-ମାନେ ଈଶ୍ୱର-ଆରାଧନା ପାଇଁ ସନ୍ଧ୍ୟାବନ୍ଦନ, ଗାୟତ୍ରୀ ଆଦି ଜପ ଅନୁଷ୍ଠାନ କରୁଥିବା ବିଷୟ ବର୍ଣ୍ଣିତ ହୋଇଛି । ମୂର୍ତ୍ତିପୂଜା ପ୍ରଚଳିତ ହେବା ପରେ ରାମାୟଣ ଆଦି ପ୍ରାଚୀନ ଗ୍ରନ୍ଥମାନଙ୍କରେ ସ୍ଥଳେ ସ୍ଥଳେ ମିଶ୍ରଣ କରାଯାଇ ମୂର୍ତ୍ତିପୂଜାକୁ ପ୍ରାଚୀନ ପ୍ରଥା ବୋଲି ସିଦ୍ଧ କରିବା ନିମନ୍ତେ ଚେଷ୍ଟା କରାଯାଇଛି । ଏହି ସ୍ଥଳଗୁଡ଼ିକରେ ରଚନାଶୈଳୀରେ ଭେଦ, ପ୍ରସଙ୍ଗ ବିରୋଧ ତଥା ଅନ୍ତର୍ବିରୋଧ ପର୍ଯ୍ୟାଲୋଚନା କଲେ ସହଜରେ ଜଣାଯାଏ ଯେ ଏସବୁ ପ୍ରକ୍ଷିପ୍ତ । ବୈଦିକ ଗ୍ରନ୍ଥମାନଙ୍କରେ ମୂର୍ତ୍ତିପୂଜା ଓ ମୂର୍ତ୍ତିର ଆକାର ପ୍ରକାରାଦି ବିଷୟରେ କୌଣସି ବର୍ଣ୍ଣନା ନାହିଁ ।

ଅଷ୍ଟମ ଶତାବ୍ଦୀ ଓ ତାହାର ପରବର୍ତ୍ତୀ ସମୟରେ ଭାରତୀୟ-ମାନେ ରାଜନୈତିକ କାରଣ ଅପେକ୍ଷା ଧାର୍ମିକ ଅନ୍ଧବିଶ୍ୱାସ ଯୋଗୁଁ ମୁସଲମାନମାନଙ୍କଦ୍ୱାରା ପରାଜିତ ହୋଇଥିଲେ । କେତେକ ହିନ୍ଦୁ ଦେଶଦ୍ରୋହୀ ଆକ୍ରମଣକାରୀଙ୍କୁ ସୂଚନା ଦେଇଥିଲେ ଯେ ନଗରର ମନ୍ଦିର ଓ ମୂର୍ତ୍ତି ଧ୍ୱଂସ କରିଦେଲେ ଅନ୍ଧବିଶ୍ୱାସୀ ହିନ୍ଦୁ ସୈନିକ-ମାନେ ଯୁଦ୍ଧକ୍ଷେତ୍ରରୁ ପୃଷ୍ଠଭଙ୍ଗ ଦେବେ । ତାହା ହିଁ ଘଟିଲା । ହିନ୍ଦୁ ସୈନ୍ୟମାନେ ଭାବିଲେ ଯେ ଦୈବୀ ଶକ୍ତି ସେମାନଙ୍କ ପ୍ରତି ଅପ୍ରସନ୍ନ ଥିବାରୁ ସେମାନେ ଯୁଦ୍ଧରେ ସଫଳତା ଆଶା କରିବା ଅସମ୍ଭବ । ସେତେବେଳେ ମୂର୍ତ୍ତିପୂଜକ ଭାରତୀୟମାନଙ୍କ ସୁରକ୍ଷା ପାଇଁ ମୂର୍ତ୍ତିଗୁଡ଼ିକ ସହାୟକ ହେଲେ ନାହିଁ । ମୁସଲମାନ ରାଜତ୍ୱ ସମୟରେ ଓ ତତ୍ପରେ

ନାନକ୍, କବୀର, ଦାଦୁ, ତୁକାରାମ, ଜ୍ଞାନେଶ୍ୱର, ବିଶ୍ୱେଶ୍ୱର, ଶିବା, ନନ୍ଦୀଶ୍ୱର, ରାମଦାସ ପ୍ରଭୃତି ସନ୍ଥମାନେ ଏବଂ ଆଧୁନିକ କାଳରେ ରାମମୋହନ ରାୟ, ଦୟାନନ୍ଦ ସରସ୍ୱତୀ ଆଦି ମନୀଷୀମାନେ ମୂର୍ତ୍ତିପୂଜାର ଅପକାରିତା ବିଷୟରେ ପ୍ରଚାର କରିଥିଲେ । ତଥାପି ଜଣେ ବ୍ୟବହାରୀ ବାରମ୍ବାର କ୍ଷତ ସହି ମଧ୍ୟ ନିଜ ବ୍ୟବସାୟ ନ ଛାଡ଼ିବା ପରି ପ୍ରତିମାପୂଜା ଏବେ ମଧ୍ୟ ହିନ୍ଦୁ ଜାତି ମଧ୍ୟରେ ପ୍ରବଳ ଭାବରେ ପ୍ରଚଳିତ ଅଛି । ବିଭିନ୍ନ ମୂର୍ତ୍ତିଗୁଡ଼ିକର ପୂଜାବିଧାନକୁ ନେଇ ହିନ୍ଦୁ ସମାଜ ବିଚ୍ଛିନ୍ନ ହୋଇ ପଡ଼ୁଛି । ମୂର୍ତ୍ତିପୂଜା ସହିତ ନିତ୍ୟ ସମ୍ପର୍କ ରଖିଥିବା ପଣ୍ଡାପୂଜାରୀ, ମହନ୍ତ ଆଦି ଆତ୍ମବିକାଶ ମାର୍ଗରେ ଅଗ୍ରସର ହୋଇ ନାହାନ୍ତି । ଯେଉଁମାନେ ମୂର୍ତ୍ତିପୂଜାରେ ବିଶ୍ୱାସ ରଖି ମହାତ୍ମା ହୋଇଛନ୍ତି, ସେମାନେ ପରଂପରାଗତ ପେଶାରେ ସଂଯୁକ୍ତ ହୋଇଛନ୍ତି । ମୂର୍ତ୍ତି ମାହାତ୍ମ୍ୟରୁ ନୁହେଁ, ବରଂ ଯମନିୟମାଦି ଆଚରଣ କାରଣରୁ ସେମାନେ ଜୀବନକୁ ମହାନ୍ କରିଛନ୍ତି ।

ମୂର୍ତ୍ତି ଦୁଇ ପ୍ରକାର—ପ୍ରଥମତଃ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ପ୍ରତୀକ ଓ କାଳ୍ପନିକ ମୂର୍ତ୍ତି । ଦ୍ୱିତୀୟତଃ ଶ୍ରୀରାମ, ଶ୍ରୀକୃଷ୍ଣ, ହନୁମାନ ପ୍ରଭୃତି ଐତିହାସିକ ମହାପୁରୁଷମାନଙ୍କ ମୂର୍ତ୍ତି । ମୂର୍ତ୍ତି ସ୍ଥାପନ କରି ସେଥିରୁ ପ୍ରେରଣା ଲାଭ କରିବା ଉଚିତ; ପରନ୍ତୁ ସେଗୁଡ଼ିକୁ ପରମାତ୍ମା ବୋଲି ପ୍ରାର୍ଥନା ଉପାସନା କରିବା ଅବୈଦିକ ଓ ଅସଂଗତ । ଏଭଳି ପ୍ରାର୍ଥନା ପଦ୍ଧତି ଆମ ପ୍ରାଚୀନ ଶାସ୍ତ୍ରରେ ଉପଲବ୍ଧ ନୁହେଁ । ସେ ସବୁର ଉପାସନା ନିମିତ୍ତ ସଂଧ୍ୟାବନ୍ଦନ, ଓଁକାର-ଗାୟତ୍ରୀ ଜପ, ଅଷ୍ଟାଙ୍ଗ ଯୋଗସାଧନା ହିଁ ସନ୍ନିବିଷ୍ଟ ହୋଇଛି । ସବୁଠାରୁ ଦୁର୍ଭାଗ୍ୟର ବିଷୟ ଏହି ଯେ ନିରୀହ ପଶୁପକ୍ଷୀ ଏପରିକି ମନୁଷ୍ୟମାନଙ୍କୁ ଦେବଦେବୀ ପୀଠରେ ଈଶ୍ୱରପୂଜା ନାମରେ ବଳି ଦିଆଯାଏ । ପୂଜା ସମୟରେ ନିରାକାରବୋଧକ

ମନ୍ତ୍ର ପାଠ କରି ମୂର୍ତ୍ତିର ସ୍ନାନ, ଭୋଜନାଦି କରାଯାଏ । ଦେବଦେବୀମାନଙ୍କ ଜନ୍ମ, ବିବାହ, ସନ୍ତାନ, ଯୁଦ୍ଧ ଆଦି ବର୍ଣ୍ଣନା କରି ମଧ୍ୟ ସେମାନଙ୍କୁ ସର୍ବବ୍ୟାପକ ଓ ନିର୍ବିକାର ବୋଲି କହିବା, ପ୍ରାଣ ପ୍ରତିଷ୍ଠା ଓ ବିସର୍ଜନ କରିବା, ବିଭିନ୍ନ ମୂର୍ତ୍ତି ନାମରେ ସାଂପ୍ରଦାୟିକ ବିଦ୍ୱେଷ ସୃଷ୍ଟି କରିବା—ଏ ସମସ୍ତ କାର୍ଯ୍ୟ ଈଶ୍ୱର ଭକ୍ତ ବିଷୟରେ ଅଶୋଭନୀୟ ସ୍ଥିତିର ସୃଷ୍ଟି କରେ ।

ମୋର ସ୍ୱର୍ଗତ ପିତାମହ ପଣ୍ଡିତ ଲିଙ୍ଗରାଜ ଶର୍ମା ଅଗ୍ନିହୋତ୍ରୀ ଈଶ୍ୱରାରାଧନା ନିମିତ୍ତ ସନ୍ଧ୍ୟାବନ୍ଦନ ଅନୁଷ୍ଠାନ କରୁଥିଲେ । ବେଦ ପ୍ରଚାରରେ ଜୀବନକୁ ଉତ୍ସର୍ଗୀତ କରିଥିବା ମୋର ପୂଜ୍ୟ ପିତୃଦେବ ଶ୍ରୀ ପ୍ରିୟବ୍ରତ ଦାସ ଓ କୃପାମୟୀ ମାତୃଦେବୀ ଶ୍ରୀମତୀ ଶାନ୍ତା ଦେବୀ ସନ୍ଧ୍ୟା, ଅଗ୍ନିହୋତ୍ର, ଓଁକାର ଜପାଦି କ୍ରିୟାକୁ ବୈଦିକ ପରଂପରାରେ ଗ୍ରହଣ କରି ଆସୁ ଅଛନ୍ତି । ଏସବୁ ସତ୍ତ୍ୱେ ବାଲ୍ୟ କାଳରେ ପ୍ରତିମା-ପୂଜା ସପକ୍ଷରେ ମୋ ମନରେ ଅନେକ ଭାବନା ଉଠିଥିଲା । ଇଂଜିନିଏରିଂ କଲେଜର ବିଦ୍ୟାର୍ଥୀ ଥିବା ସମୟରେ ବହୁ ବୈଦିକ ଗ୍ରନ୍ଥର ପ୍ରଣେତା ବେଦଜ୍ଞ ପଣ୍ଡିତ ଅଧ୍ୟାପକ ରାଜେନ୍ଦ୍ର ଜିଜ୍ଞାସୁଙ୍କ ରଚିତ 'ଭାରତ ମେଁ ମୂର୍ତ୍ତିପୂଜା' ପୁସ୍ତକ ପଢ଼ିବାର ସୁଯୋଗ ପାଇଥିଲି । ଏହି ପୁସ୍ତକ ପାଠ କରି ମୁଁ ଅତ୍ୟନ୍ତ ଲାଭାନ୍ୱିତ ହେଲି । ପ୍ରସ୍ତୁତ ପୁସ୍ତକ ତାହାର ଓଡ଼ିଆ ଅନୁବାଦ ଅଟେ ।

ଯେଉଁ ପଦ୍ଧତି ଆମ ପ୍ରାଚୀନ ପୂର୍ବପୁରୁଷମାନଙ୍କଦ୍ୱାରା ଅନୁସୃତ ହେଉଥିଲା, ତାହାକୁ ସନାତନ ନ କହି, ମଧ୍ୟକାଳୀନ ନବୀନ ପ୍ରଥାଗୁଡ଼ିକୁ ବୈଦିକ ସନାତନ କହିବା ନିତାନ୍ତ ଅନୁଚିତ । ସଂସାରର ବହୁ ଜାତି ନିଜ ନିଜର ସାଂସ୍କୃତିକ ଓ ସାମାଜିକ ଭ୍ରାନ୍ତିଗୁଡ଼ିକୁ ସୁଧାରି ନେଇଥିବା ସ୍ଥଳେ ହିନ୍ଦୁମାନେ ମିଥ୍ୟା ଅଭିମାନ ଯୋଗୁ ବହୁ କୁରୀତି ତ୍ୟାଗ କରି ପାରି ନାହାନ୍ତି । ମହର୍ଷି ମନୁ କହିଛନ୍ତି—

'ନାସ୍ତିକୋ ବେଦନିନ୍ଦକଃ' ଅର୍ଥାତ୍ ବେଦନିନ୍ଦକ ନାସ୍ତିକ ଅଟେ । ବେଦ ନିରାକାର, ସର୍ବବ୍ୟାପୀ, ଅନ୍ତର୍ଯ୍ୟାମୀ ପ୍ରଭୁଙ୍କ ଉପାସନା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ତାହାର ବିପରୀତ ଆଚରଣ କରିବା ଆସ୍ତିକତା ନୁହେ ।

କାହାର ମନରେ ଦୁଃଖ ଦେବା ମୂଳ ଗ୍ରନ୍ଥର ପ୍ରଣେତାଙ୍କ ଉଦ୍ଦେଶ୍ୟ ନୁହେ । ସେ ପ୍ରାଚୀନ ବୈଦିକ ସାହିତ୍ୟଠାରୁ ଆରମ୍ଭ କରି ଅର୍ବାଚୀନ ପୌରାଣିକ ସାହିତ୍ୟର ପକ୍ଷବିପକ୍ଷ ସିଦ୍ଧାନ୍ତଗୁଡ଼ିକୁ ଏହି ପୁସ୍ତକରେ ବିଶ୍ଳେଷଣ କରିଛନ୍ତି । ହିନ୍ଦୀ ପୁସ୍ତକଟି ପାଠ କରି ନିଜର ସଂଶୟଗୁଡ଼ିକୁ ଦୂର କରିବା ପାଇଁ ପ୍ରଯତ୍ନଶୀଳ ହେବା ସଙ୍ଗେ ସଙ୍ଗେ ବୈଦିକ ଋଷିମାନଙ୍କ ବିଚାରଗୁଡ଼ିକୁ ପ୍ରକାଶ କରିବା ଉଚିତ ଭାବି ମୁଁ ତାହାର ଅନୁବାଦ କରିଅଛି । ସତ୍ୟର ପୁନରୁଦ୍ଧାର ଓ ପ୍ରାଚୀନ ଇତିହାସର ଯଥାର୍ଥ ଉଦ୍‌ଘାଟନ ଆମର କାମ୍ୟ ହେଉ । ଦୁଇ ତିନି ହଜାର ବର୍ଷର ଇତିହାସକୁ ପ୍ରାଚୀନ ବୋଲି କହି କୋଟି କୋଟି ବର୍ଷର ପ୍ରାଚୀନ ଆର୍ଯ୍ୟ ଇତିହାସ ଓ ବିଚାରକୁ ନବୀନ ପ୍ରତିପାଦିତ କରିବା ଅସଙ୍ଗତ । ମୋର ଆଶା ଓ ନିବେଦନ ଯେ ଶ୍ରଦ୍ଧାଳୁ ପାଠକଗଣ ପୁସ୍ତକଟିର ଗଂଭୀର ଅନୁଶୀଳନ କରି ଯଥାର୍ଥ ବୈଦିକ ଉପାସନା ପଦ୍ଧତି ପ୍ରତି ଅନୁପ୍ରାଣିତ ହେବେ ।

ରାଉରକେଲା<br>ଶ୍ରୀରାମ ନବମୀ<br>୧୯୮୭

ବିଶମ୍ବଦ<br>**ଯଜ୍ଞପ୍ରକାଶ ଦାସ**

# ସୂଚୀ

# ମୂର୍ତ୍ତି ପୂଜାର ପ୍ରାରମ୍ଭିକ କାଳ

ଐତିହାସିକ ଓ ଦାର୍ଶନିକମାନେ ମତ ଦିଅନ୍ତି ଯେ ଭାରତ-ବର୍ଷରେ ମୂର୍ତ୍ତିପୂଜା ଜୈନ-ବୌଦ୍ଧ କାଳରେ ସୂତ୍ରପାତ ହୋଇଥିଲା । ଆଜକାଲିର କେତେକ ସଂପ୍ରଦାୟଭୁକ୍ତ ବ୍ୟକ୍ତି ଏଥିରେ ସହମତ ହୋଇ ନ ପାରନ୍ତି ; ପରନ୍ତୁ ଐତିହାସିକ ଅନୁସନ୍ଧାନରୁ ସ୍ପଷ୍ଟ ହୁଏ ଯେ ପ୍ରତିମା ପୂଜା ଜୈନ-ବୌଦ୍ଧ ଯୁଗର ପୂର୍ବବର୍ତ୍ତୀ ନୁହେ ।

ଜୈନ ମତର ପ୍ରବର୍ତ୍ତକ ମହାବୀର ସ୍ୱାମୀ ଓ ବୌଦ୍ଧ ମତର ସଂସ୍ଥାପକ ମହାତ୍ମା ବୁଦ୍ଧ ପ୍ରାୟ ସମକାଳୀନ ଥିଲେ । ସେମାନଙ୍କ ସମୟ ଖ୍ରୀଷ୍ଟପୂର୍ବ ପ୍ରାୟ ଛଅ ଶହ ବର୍ଷ । ବୁଦ୍ଧଙ୍କ ଉପଦେଶରେ ମୂର୍ତ୍ତିପୂଜାର ଉଲ୍ଲେଖ ନାହିଁ । ମୃତ୍ୟୁ ପରେ ଶିଷ୍ୟମାନେ ତାହାଙ୍କ କେଶ, ଦନ୍ତ, ଅସ୍ଥି ଆଦି ନେଇ ସମାଧି ନିର୍ମାଣ କଲେ । ସମୟକ୍ରମେ ବୌଦ୍ଧମାନେ ମୋହ-ଅଜ୍ଞାନ ବଶତଃ ସେହି ସମାଧିଗୁଡ଼ିକର ପୂଜା ଆରମ୍ଭ କଲେ । ସମାଧି ସ୍ଥଳରେ ବୁଦ୍ଧମୂର୍ତ୍ତି ପୂଜିତ ହେଲା । କେତେକ ଗବେଷକ କହନ୍ତି ଯେ ସର୍ବପ୍ରଥମେ ଜୈନମାନେ ତୀର୍ଥଂକରମାନଙ୍କ ପ୍ରତିମା ତିଆରି କରି ପୂଜା କଲେ । ସେମାନଙ୍କଠାରୁ ବୌଦ୍ଧମାନେ ତଥା ଜୈନ-ବୌଦ୍ଧଙ୍କଠାରୁ ହିନ୍ଦୁମାନେ (୧) ଏହି ପଦ୍ଧତି ଅନୁସରଣ କଲେ । ଜୈନ ସଂପ୍ରଦାୟର ଶ୍ୱେତାମ୍ବର ଗୋଷ୍ଠୀ ମୂର୍ତ୍ତିପୂଜାକୁ

---

୧ । ଜୈନ-ବୌଦ୍ଧ କାଳରେ ଏହି ଦେଶବାସୀ ଆର୍ଯ୍ୟ ଅଥବା ବୈଦିକ ନାମରେ ପରିଚିତ ଥିଲେ । ମୁସଲମାନମାନେ ଏହି ଦେଶକୁ ଆସି ଆର୍ଯ୍ୟମାନଙ୍କୁ ହିନ୍ଦୁ ନାମ ଦେଲେ । ହିନ୍ଦୁ ଏକ ବୈଦେଶିକ ଶବ୍ଦ ।

ସ୍ୱୀକାର କରନ୍ତି ନାହିଁ । ଦିଗମ୍ବର ଗୋଷ୍ଠୀଦ୍ୱାରା ଏହି ପ୍ରଥା ଆରମ୍ଭ ହୋଇଥିଲା ବୋଲି କୁହାଯାଏ । ମିତ୍ରବନ୍ଧୁ ମହାଶୟ 'ଭାରତବର୍ଷର ଇତିହାସ' ଗ୍ରନ୍ଥରେ ଲେଖିଛନ୍ତି—ଚତୁର୍ଥ ଶତାବ୍ଦୀ ବେଳକୁ ଜୈନ-ମାନେ ସେବାଲ ଓ ଶ୍ରୀମାନ ନାମକ ଦୁଇ ସଂପ୍ରଦାୟରେ ବିଭକ୍ତ ହେଲେ । ସେହି ସମୟରେ ସର୍ବପ୍ରଥମେ ମହାବୀରଙ୍କ ପ୍ରତିମା ସ୍ଥାପିତ ହେଲା ।

ପାରସୀ ଭାଷାରେ 'ବୁତ୍' ଶବ୍ଦ ମୂର୍ତ୍ତି ଅର୍ଥରେ ବ୍ୟବହୃତ ହୁଏ । ଏହା ବୁଦ୍ଧ ଶବ୍ଦର ଅପଭ୍ରଂଶ । ଏଥିରୁ ଜଣାଯାଏ ଯେ ଇରାନ୍ ଆଦି ଦେଶରେ ମଧ୍ୟ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚାର ଘଟିଥିଲା । ବୌଦ୍ଧମତର ବିସ୍ତାର ସଙ୍ଗେ ସଙ୍ଗେ ବୁଦ୍ଧଙ୍କ ମୂର୍ତ୍ତିର ପୂଜା ବିଭିନ୍ନ ଦେଶରେ ପ୍ରଚଳିତ ହେଲା ।

ଚୀନ ପରିବ୍ରାଜକ ଫାହିଆନ ଓ ହୁଏନ୍‌ସାଙ୍କ ବିବରଣୀରୁ ଏ ସମ୍ବନ୍ଧରେ ଅନେକ ଐତିହାସିକ ପ୍ରମାଣ ମିଳେ । ଫାହିଆନ ଚତୁର୍ଥ ଖ୍ରୀଷ୍ଟାବ୍ଦରେ ଭାରତଭ୍ରମଣରେ ଆସିଥିଲେ । ତାଙ୍କ ବିବରଣୀ ଅନୁସାରେ ସମଗ୍ର କାବୁଲରେ ବୌଦ୍ଧମତର ପ୍ରଚାର ଥିଲା । ସେଠାରେ ପାଞ୍ଚ ଶହ ବୌଦ୍ଧ ବିହାର ସ୍ଥାପିତ ହୋଇଥିଲା । ମଥୁରାରେ ତିନି ହଜାର ବୌଦ୍ଧଭିକ୍ଷୁ ଥିଲେ । ରାଜପୁତାନାର ରାଜାମାନେ ବୌଦ୍ଧମତ ଗ୍ରହଣ କରିଥିଲେ । ବୌଦ୍ଧବିହାର ନିର୍ମାଣରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ ହେଉଥିଲା । ଭ୍ରମଣ ସମୟରେ ଫାହିଆନ ପ୍ରଥମ ଥର ପାଇଁ ଏକ ବୁଦ୍ଧମୂର୍ତ୍ତି ଦେଖିଥିଲେ । ଏହା ସମ୍ବନ୍ଧରେ ସେ ଲେଖିଛନ୍ତି—

ପ୍ରତିବର୍ଷ ଦ୍ୱିତୀୟ ମାସର ଅଷ୍ଟମ ଦିନରେ ବୌଦ୍ଧମାନେ କାଠ-ବାଉଁଶ ରଥ ତିଆରି କରନ୍ତି । ତାହା ମନ୍ଦିର ପରି ଦେଖାଯାଏ । ତାହାର ଚାରିପଟେ ଧଳା କନା ବାନ୍ଧି ଦିଆଯାଏ । ରେଶମୀ ଝୁଲୁଆ

ଟଣାଯାଏ । ତା’ ଉପରେ ବୁଦ୍ଧମୂର୍ତ୍ତିକୁ ରଖି ସୁନ୍ଦର ସାଜସଜ୍ଜା କରାଯାଏ । ଏଭଳି କୋଡ଼ିଏଟି ରଥ ତିଆରି ହୁଏ । ମୂର୍ତ୍ତିରେ ଫୁଲ ଓ ଧୂପ ଦିଆଯାଏ । ବାଜା ବଜାଯାଏ । ବୌଦ୍ଧ ଶ୍ରମଣମାନେ ପୂଜା କରନ୍ତି । ବୌଦ୍ଧ ଭିକ୍ଷୁମାନେ ସାରା ରାତି ଅନିଦ୍ରା ଜାଗନ୍ତି । ଗୀତ, ଖେଳ ହୁଏ ଇତ୍ୟାଦି ।

ଫାହିଆନ ପାଟନାରୁ ବାହାରି ରାଜଗୃହ, ଗୟା, କାଶୀ, କୌଶାମ୍ବୀ, ଚମ୍ପା ଆଦି ସ୍ଥଳ ଭ୍ରମଣ କଲେ । ସେ ଏସବୁ ତୀର୍ଥସ୍ଥଳରେ ହିନ୍ଦୁ ମନ୍ଦିର ଦେଖିଲେ ନାହିଁ । କେବଳ ବୌଦ୍ଧ ବିହାର ଓ ବୁଦ୍ଧମୂର୍ତ୍ତି ଦେଖିଲେ । ପରେ ସେ ସିଂହଳ ଯାତ୍ରା କଲେ । ଫାହିଆନଙ୍କ ଯାତ୍ରା ବେଳେ ଭାରତର ବୌଦ୍ଧଙ୍କ ମଧ୍ୟରେ ମୂର୍ତ୍ତିପୂଜା ଆରମ୍ଭ ହୋଇ ଯାଇଥିଲା ।

ଚୀନ ଯାତ୍ରୀ ହୁଏନ୍‌ସାଂ ଫାହିଆନଙ୍କ କିଛି କାଳ ପରେ ସମରକନ୍ଦ, ବୁଖାରା ଆଦି ସ୍ଥଳ ଭ୍ରମଣ କରି ଭାରତରେ ପହଞ୍ଚିଲେ । ସେ ଜଲାଲବାଦଠାରେ ବୌଦ୍ଧମତର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ହିନ୍ଦୁମାନଙ୍କ ପାଂଚୋଟି ଶିବାଳୟ ସମେତ ବହୁ ପୂଜାରୀଙ୍କୁ ଦେଖିଲେ । ଗାନ୍ଧାର ଓ ପେଶାବାରରେ ସେ ଶତାଧିକ ହିନ୍ଦୁ ମନ୍ଦିର ଦେଖିବାକୁ ପାଇଲେ ଓ ବହୁ ବୌଦ୍ଧ ବିହାର ଲୁପ୍ତ ହୋଇଥିବା ଲକ୍ଷ୍ୟ କଲେ । ପୌଲୁଷ ନଗର ନିକଟସ୍ଥ ଏକ ଉଚ୍ଚ ପର୍ବତ ଉପରେ ଏକ ଦୁର୍ଗାମୂର୍ତ୍ତି ପୂଜା ପାଉଥିବା ଦେଖିଲେ । ଝର୍ଣ୍ଣା ତଳେ ଏକ ମହେଶ୍ୱର ମନ୍ଦିରରେ ବହୁ ହିନ୍ଦୁ ସାଧୁ ରହୁଥିଲେ ।

ଫାହିଆନ କାବୁଲ ଓ ଯମନ ଅଂଚଳରେ ବୌଦ୍ଧମତର ପ୍ରସାର ଲକ୍ଷ୍ୟ କରିଥିବା ସ୍ଥଳେ ହୁଏନ୍‌ସାଂ ବହୁ ବୌଦ୍ଧବିହାର ନଷ୍ଟ ହୋଇ ପଡ଼ିଥିବା ଦେଖିଲେ । ସେହି ଅଞ୍ଚଳରେ ହିନ୍ଦୁମନ୍ଦିର ନିର୍ମିତ

ହେଉଥିଲା । ତକ୍ଷଶିଳା ଓ କାଶ୍ମୀରରେ ଜୈନମାନେ ମହାବୀରଙ୍କ ମୂର୍ତ୍ତି ପୂଜା କରୁଥିଲେ । କାଶ୍ମୀରର ରାଜା କନିଷ୍କ ବୌଦ୍ଧମତର ପୃଷ୍ଠପୋଷକ ଥିଲେ ପରନ୍ତୁ ପଞ୍ଜାବର ରାଜା ମିହିରକୁଳ ବୌଦ୍ଧ ବିହାର ଓ ବୌଦ୍ଧଭିକ୍ଷୁଙ୍କ ଉପରେ ପ୍ରବଳ ଆକ୍ରମଣ କରି ଘୋର କ୍ଷତି କରିଥିଲେ । ମଥୁରାରେ ବୌଦ୍ଧମତର ପ୍ରଚାର ଥିଲା । ଲୋକେ ହରିଦ୍ୱାରର ହରିଙ୍କ ପେଢ଼ିଠାରେ ସ୍ନାନ କରିବା ପୁଣ୍ୟ କର୍ମ ବୋଲି ବୁଝୁଥିଲେ । କନୌଜଠାରେ ବୌଦ୍ଧ ଓ ହିନ୍ଦୁ ଉଭୟଙ୍କ ପ୍ରତିଷ୍ଠା ସମାନ ଭାବରେ ରହିଥିଲା । ବୌଦ୍ଧବିହାର ଓ ହିନ୍ଦୁ ମନ୍ଦିର ଉଭୟ ପ୍ରସିଦ୍ଧ ଥିଲା । ରାଜା ଶିଳାଦିତ୍ୟ ଗଙ୍ଗା ତଟରେ ବୁଦ୍ଧଙ୍କ ସ୍ୱର୍ଣ୍ଣ ମୂର୍ତ୍ତି ନିର୍ମାଣ କରିଥିଲେ । ସେ ପ୍ରତି ବର୍ଷ ବସନ୍ତ ଋତୁରେ ବୌଦ୍ଧଭିକ୍ଷୁ ଓ ହିନ୍ଦୁ ବ୍ରାହ୍ମଣଙ୍କୁ ଆଡ଼ମ୍ବର ସହିତ ଭୋଜନ ଦେଉଥିଲେ । ବୁଦ୍ଧଙ୍କ ମୂର୍ତ୍ତିକୁ ହାତୀ ଉପରେ ରଖି ଏକ ବିଶାଳ ଶୋଭାଯାତ୍ରାର ଆୟୋଜନ କରାଯାଉଥିଲା । କନୌଜ ଓ କାମରୂପର ରାଜା ଶୋଭାଯାତ୍ରାରେ ଯୋଗ ଦେଉଥିଲେ ।

ହୁଏନ୍‌ସାଂ ଅଯୋଧ୍ୟାରେ ଉଭୟ ବୌଦ୍ଧ ଓ ହିନ୍ଦୁମାନଙ୍କ ପ୍ରାଧାନ୍ୟ ଓ ପ୍ରୟାଗରେ କେବଳ ହିନ୍ଦୁମାନଙ୍କ ପ୍ରଭାବ ଦେଖିଲେ । କାଶୀଠାରେ ହିନ୍ଦୁ ପୂଜାରୀମାନେ ଶହେ ଫୁଟ ଉଚ୍ଚର ଏକ ମହେଶ୍ୱର ମୂର୍ତ୍ତି ପୂଜା କରୁଥିଲେ । ସେଠାରେ ହୁଏନ୍‌ସାଂ ଏକ ବିଶାଳ ବୌଦ୍ଧ ମୂର୍ତ୍ତି ମଧ୍ୟ ଦେଖିଲେ । ବୈଶାଳୀଠାରେ ବୌଦ୍ଧଙ୍କ ଓ ମଗଧଠାରେ ଉଭୟ ବୌଦ୍ଧ ଓ ହିନ୍ଦୁଙ୍କ ମୂର୍ତ୍ତିପୂଜା ରହିଥିଲା । ଗୟାରେ ବୋଧିବୃକ୍ଷ ଓ ସୁନ୍ଦର ବିହାର ଦେଖି ହୁଏନ୍‌ସାଂ ମୁଗ୍ଧ ହେଲେ । ସେ ସୁନା ରୁପାର ବହୁ ବୌଦ୍ଧ ମୂର୍ତ୍ତି ଓ ବୌଦ୍ଧମାନଙ୍କ ମେଳା ବିଷୟ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ନାଳନ୍ଦାଠାରେ ସେ କାମରୂପର ରାଜାଙ୍କ ସହିତ କିଛି ଦିନ ଅତିବାହିତ କଲେ । ମୁଙ୍ଗେର ଓ ଉତ୍ତର ବଙ୍ଗରେ

ସେ ବୌଦ୍ଧବିହାର ଓ ହିନ୍ଦୁମନ୍ଦିର ଦେଖିଲେ । ପରନ୍ତୁ ଆସାମ, ମଣିପୁର, ସିଲହଟ ଅଂଚଳରେ ବୌଦ୍ଧବିହାରଗୁଡ଼ିକ ହ୍ରାସ ପାଇଥିଲା ଓ ହିନ୍ଦୁମନ୍ଦିର ନିର୍ମିତ ହୋଇଥିଲା ।

ସେତେବେଳେ ପୁରୀର ଜଗନ୍ନାଥ ମନ୍ଦିର ନିର୍ମିତ ହୋଇ ନ ଥିଲା । ବୌଦ୍ଧମାନଙ୍କ ପ୍ରାଧାନ୍ୟ ଥିଲା । ଆନ୍ଧ୍ରରେ ବୌଦ୍ଧ ଓ ମାଲବାରରେ ବୌଦ୍ଧ-ହିନ୍ଦୁ ଉଭୟେ ପ୍ରସିଦ୍ଧ ଥିଲେ । ଅଜନ୍ତା-ଠାରେ ଏକ ବିଶାଳ ବୁଦ୍ଧମୂର୍ତ୍ତି ଥିଲା । କଚ୍ଛ, ଗୁଜରାଟ ଓ ସିଂଧୁ ପ୍ରଦେଶରେ ହୀନଯାନ ବୌଦ୍ଧଙ୍କ ପତନ ଘଟିଥିଲା ଓ ମୂର୍ତ୍ତିପୂଜକ ହିନ୍ଦୁଙ୍କ ପ୍ରାଧାନ୍ୟ ରହିଥିଲା ।

ଏହି ଦୁଇ ଜଣ ଚୀନ ପରିବ୍ରାଜକଙ୍କ ଭାରତ-ଭ୍ରମଣ ବିବରଣୀରୁ ଏ ଦେଶରେ ମୂର୍ତ୍ତିପୂଜାର ଇତିହାସ ସମ୍ବନ୍ଧରେ ବହୁ ବିଷୟ ଉଦଘାଟିତ ହୁଏ । ଫାହିଆନଙ୍କ ସମୟରେ ବୌଦ୍ଧ-ଜୈନଙ୍କ ମୂର୍ତ୍ତି ଗଠନ ଓ ମୂର୍ତ୍ତିପୂଜା ଆରମ୍ଭ ହୋଇଯାଇଥିଲା । ହିନ୍ଦୁମାନେ ତାହାର ଅନୁକରଣ କରି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର—ଏହି ତିନି ପ୍ରାରମ୍ଭିକ ମୂର୍ତ୍ତିର କଳ୍ପନା କରିସାରିଥିଲେ ଓ ଆଡ଼ମ୍ବର ସହକାରେ ସେଗୁଡ଼ିକର ପୂଜାବିଧାନ କରୁଥିଲେ । ହୁଏନ୍‌ସାଁଙ୍କ ବେଳକୁ ବୌଦ୍ଧ ମତର ହ୍ରାସ ଓ ପୌରାଣିକ ହିନ୍ଦୁମତର ଉତ୍କର୍ଷ ଘଟିଥିଲା । ଏହି ସମୟକୁ ବୌଦ୍ଧ-ପୌରାଣିକ ସଂଘର୍ଷ କାଳ କୁହାଯାଇ ପାରେ ।

'ଭାରତର ଆବିଷ୍କାର' ଗ୍ରନ୍ଥରେ ପଣ୍ଡିତ ଜବାହରଲାଲ ନେହରୁ ଲେଖିଛନ୍ତି—ଏହା ଏକ ମନୋରଂଜକ ବିଷୟ ଯେ ମୂର୍ତ୍ତିପୂଜା ଗ୍ରୀସ ଦେଶରୁ ଭାରତକୁ ଆସିଛି । ବୈଦିକ କାଳରେ କୌଣସି ପ୍ରକାର ମୂର୍ତ୍ତି ଓ ତାର ପୂଜା ପାଠ ନ ଥିଲା । ମୂର୍ତ୍ତିପୂଜା ପାଇଁ ଦେବ ମନ୍ଦିର ନ ଥିଲା × × × । ପ୍ରାରମ୍ଭିକ କାଳରେ ବୌଦ୍ଧ

ମଠରେ ପ୍ରତିମା ପୂଜା ଗୃହୀତ ହୋଇ ନ ଥିଲା ଓ ବୁଦ୍ଧମୂର୍ତ୍ତି ସ୍ଥାପନ ନିଷିଦ୍ଧ ଥିଲା । ଧୀରେ ଧୀରେ ଗ୍ରୀସ୍ ଦେଶର ମୂର୍ତ୍ତିକଳା ଆଫଗାନିସ୍ଥାନ ଓ ଉତ୍ତର ପଶ୍ଚିମ ଅଞ୍ଚଳରେ ପ୍ରଭାବ ବିସ୍ତାର କଲା । ଏହାର ଅନୁକରଣରେ ବୋଧିସତ୍ତ୍ୱ (ବୁଦ୍ଧଙ୍କ ପୂର୍ବବର୍ତ୍ତୀ ଜନ୍ମ)ର ମୂର୍ତ୍ତି ଗଠିତ ହେଲା ଓ ପରେ ପରେ ବୁଦ୍ଧଙ୍କ ପ୍ରତିମା ନିର୍ମିତ ହେଲା । ହିନ୍ଦୁମାନେ ମଧ୍ୟ ମୂର୍ତ୍ତିପୂଜା ଆରମ୍ଭ କଲେ । ଏହା ସତ୍ତ୍ୱେ ସବୁ ବୈଦିକ ପଣ୍ଡିତ ଏହା ଗ୍ରହଣ କରି ନ ଥିଲେ । ପାରସୀ ଭାଷାରେ ଚିତ୍ର ବା ମୂର୍ତ୍ତିକୁ 'ବୁତ୍' କୁହାଯାଏ, ଯାହା ବୁଦ୍ଧ ଶବ୍ଦର ଅପଭ୍ରଂଶ ମାତ୍ର ।

ଫାହିଆନ ଏକ ସ୍ଥାନରେ ଲେଖିଛନ୍ତି—'ସର୍ବ ପ୍ରଥମେ ରାଜା ପ୍ରସେନଜିତ୍ ବୁଦ୍ଧଙ୍କ ଚନ୍ଦନ ପ୍ରତିମା ନିର୍ମାଣ କଲେ । ବୁଦ୍ଧ କହିଲେ— ମୋର ନିର୍ବାଣ ପରେ ଏହି ପ୍ରତିମା ସାର୍ବଭୌମ ଭିକ୍ଷୁ ସଂଘର ଆଦର୍ଶ ହେବ ।'

ଦୁଇଟି କାରଣରୁ ମୂର୍ତ୍ତି ପୂଜାର ଆରମ୍ଭ ଘଟିଥିଲା । ପ୍ରଥମତଃ ପୂର୍ବ ମହାପୁରୁଷମାନଙ୍କ ସ୍ମୃତିକୁ ଚିରସ୍ଥାୟୀ ରଖିବା ଲାଳସା ଓ ଦ୍ୱିତୀୟତଃ ଅଦୃଶ୍ୟକୁ ମୂର୍ତ୍ତିମାନ କରି ଦେଖିବା ଲାଗି ଅଜ୍ଞ ଲୋକଙ୍କ ଇଚ୍ଛା । ମହାପୁରୁଷମାନଙ୍କୁ ସମ୍ମାନ ଦେଖାଇବା ଅଥବା ସେମାନଙ୍କ ଉପଦେଶ ନ ଭୁଲିବା ପାଇଁ ବୁଦ୍ଧିମାନ୍ ଲୋକେ ସେମାନଙ୍କ ଚିତ୍ର ଅଥବା ପ୍ରତିମୂର୍ତ୍ତି ନିର୍ମାଣ କଲେ । କିନ୍ତୁ ଅଜ୍ଞାନବଶରୁ ହେଉ ଅଥବା ସ୍ୱାର୍ଥ ବୁଦ୍ଧିରୁ ହେଉ ଲୋକେ କାଳକ୍ରମେ ମୂର୍ତ୍ତିଗୁଡ଼ିକୁ ଜୀବିତ ମନୁଷ୍ୟଙ୍କ ପରି ସ୍ନାନ, ମାର୍ଜନ, ଭୋଜନ କରାଇ ପୂଜାବିଧାନ କଲେ । ମହାପୁରୁଷମାନଙ୍କ ଆଦର୍ଶ ଅନୁକରଣ କରିବା ପରିବର୍ତ୍ତେ ନିଜର ଦୁଃଖ ଯନ୍ତ୍ରଣାରୁ ମୋଚନ ପାଇଁ ମୂର୍ତ୍ତିଗୁଡ଼ିକର ପୂଜା ଆରାଧନା କରିବାକୁ ଲାଗିଲେ । ଧୀରେ ଧୀରେ ସମାଜରେ ଏହି ବିଶ୍ୱାସ ଘନୀଭୂତ ହେବାକୁ ଲାଗିଲା ।

ମନୁଷ୍ୟ ଅଲ୍ପଜ୍ଞ ଓ ଅପୂର୍ଣ୍ଣ । ଅସହାୟ ଓ ଆଶାଶୂନ୍ୟ ଅବସ୍ଥାରେ ସେ ବଳବାନ ଶକ୍ତିର ଆଶ୍ରୟର ଆବଶ୍ୟକତା ଅନୁଭବ କରେ । ବୌଦ୍ଧ, ଜୈନ ଉଭୟ ସମ୍ପ୍ରଦାୟ ଅନୀଶ୍ୱରବାଦୀ ଅଟନ୍ତି । ସେମାନଙ୍କ ଆଗରେ ନିଜର ମତପ୍ରବର୍ତ୍ତକଙ୍କ ଅତିରିକ୍ତ ଈଶ୍ୱର ବୋଲି କୌଣସି ସତ୍ତା ନାହାନ୍ତି । ସେହି କାରଣରୁ ସେମାନେ ନିଜର ଆଚାର୍ଯ୍ୟମାନଙ୍କର ସମାଧି ଓ ପ୍ରତିମୂର୍ତ୍ତି ଗଢ଼ି ସେଗୁଡ଼ିକର ପୂଜାବିଧାନ ଆରମ୍ଭ କରିଥିଲେ । ହିନ୍ଦୁମାନେ ସେମାନଙ୍କର ଅନୁସରଣରେ ବୈଦିକ ଦେବତାମାନଙ୍କୁ ମନୁଷ୍ୟାକୃତି ଦେଇ ମୂର୍ତ୍ତିପୂଜାର ସୂତ୍ରପାତ କଲେ ।

ସାଧାରଣ ଲୋକେ ଗୂଢ଼ ଦାର୍ଶନିକ ବିଷୟଗୁଡ଼ିକୁ ବୁଝିବାକୁ ଚେଷ୍ଟା ନ କରି ଅଦୃଶ୍ୟ ବସ୍ତୁକୁ ଦୃଶ୍ୟ ରୂପରେ ଦେଖିବାକୁ ଚାହାନ୍ତି । ପଣ୍ଡିତ ଶିବଶଙ୍କର ଶର୍ମା ତାହାଙ୍କ 'ତ୍ରିଦେବ ନିର୍ଣ୍ଣୟ' ଗ୍ରନ୍ଥରେ ହିନ୍ଦୁମାନଙ୍କ ପ୍ରଥମ ତିନିମୂର୍ତ୍ତି ଯଥା ବ୍ରହ୍ମା-ବିଷ୍ଣୁ-ମହେଶ୍ୱର କିପରି କଳ୍ପିତ ହେଲେ, ସେ ସମ୍ବନ୍ଧରେ ବିଶଦ୍ ଭାବରେ ଲେଖିଛନ୍ତି । (୧) ସୂର୍ଯ୍ୟ, ବିଦ୍ୟୁତ୍ ଓ ବାୟୁ—ତିନି ପଦାର୍ଥର ପ୍ରତୀକ ରୂପରେ ବିଷ୍ଣୁ, ଶିବ

---

୧ । ଉଦାହରଣ ସ୍ୱରୂପ ସୂର୍ଯ୍ୟଙ୍କୁ ପୂଜା କରିବା ପାଇଁ ବିଷ୍ଣୁମୂର୍ତ୍ତି କଳ୍ପିତ ହେଲା । ସୂର୍ଯ୍ୟ ଆକାଶରେ ପ୍ରକାଶିତ ହୁଅନ୍ତି । ତେଣେ ଆକାଶର ଏକ ନାମ ସମୁଦ୍ର । ତେଣୁ ସାଗରକୁ ବିଷ୍ଣୁଙ୍କ ନିବାସ ସ୍ଥଳ କୁହାଗଲା । ସୂର୍ଯ୍ୟ କିରଣକୁ ସୁପର୍ଣ୍ଣ କୁହାଯାଏ । ପୁଣି ଗରୁଡ଼ର ଏକ ନାମ ସୁପର୍ଣ୍ଣ । ତେଣୁ ଗରୁଡ଼ ବିଷ୍ଣୁଙ୍କ ବାହନ ବୋଲି କଳ୍ପିତ ହେଲା । ସୂର୍ଯ୍ୟଙ୍କ ଯୋଗୁଁ ପୃଥିବୀ ଶୋଭା ସମ୍ପତ୍ତି ସମ୍ଭବ ହୁଏ । ତେଣୁ ବିଷ୍ଣୁଙ୍କ ପତ୍ନୀ ହେଲେ ଲକ୍ଷ୍ମୀ । ସୂର୍ଯ୍ୟ-କମଳର ସମ୍ବନ୍ଧ ସର୍ବବିଦିତ । ତେଣୁ ବିଷ୍ଣୁଙ୍କ ପଦ୍ମ ପୁଷ୍ପରେ ପୂଜା କରାଯାଏ । ସୂର୍ଯ୍ୟକିରଣ ଚତୁର୍ଦ୍ଦିଗରେ ବିସ୍ତୃତ ହୁଏ । ତେଣୁ ବିଷ୍ଣୁଙ୍କ ଚାରି ଭୁଜ କଳ୍ପିତ ହେଲା ।

ଓ ବ୍ରହ୍ମା ନାମରେ ସର୍ବ ପ୍ରଥମେ ପୂଜିତ ହେଲେ । କାଳକ୍ରମେ ମରୁତ, ଇନ୍ଦ୍ର, ବରୁଣ, ସରସ୍ୱତୀ ଆଦି ପ୍ରାକୃତିକ ପଦାର୍ଥମାନଙ୍କ ମୂର୍ତ୍ତି କଳ୍ପିତ ହେଲା । ମେଘ, ବର୍ଷା, ମୃତ୍ୟୁ ଆଦି ନିମନ୍ତେ ପୃଥକ୍ ପୃଥକ୍ ଦେବତାଙ୍କ ଯୋଜନା କରାଗଲା । କଳ୍ପନାପଟୁ ସଂସ୍କୃତ ପଣ୍ଡିତମାନେ ପରମାତ୍ମାଙ୍କ ବିଭିନ୍ନ ଶକ୍ତି ତଥା ସୃଷ୍ଟିର ପ୍ରାକୃତିକ ବସ୍ତୁମାନଙ୍କ ସ୍ୱରୂପ ବର୍ଣ୍ଣନା କଲେ । ଚିତ୍ରକର ଓ ଶିଳ୍ପୀମାନେ ମୂର୍ତ୍ତି ଗଠନ କଲେ । ଭାରତ

---

ବିଦ୍ୟୁତ୍‌କୁ ପୂଜା କରିବା ପାଇଁ ରୁଦ୍ର ମୂର୍ତ୍ତିର ଯୋଜନା କରାଗଲା । ମେଘ ଘର୍ଷଣରୁ ବିଦ୍ୟୁତ୍ ଜାତ ହୁଏ । ଭ୍ରମମାନ ମେଘ ବିଦ୍ୟୁତ୍‌କୁ ବହନ କରେ । ତେଣେ ମେଘର ଏକ ନାମ ବୃଷଭ । ଏ ହେତୁ ବୃଷଭ ମହାଦେବଙ୍କ ବାହନ ହେଲେ । ମେଘର ଏକ ନାମ ପର୍ବତ । ପାର୍ବତୀ ଶିବପତ୍ନୀ ହେଲେ । ଆଗ୍ନେୟ ଶକ୍ତି ସବୁ ବସ୍ତୁକୁ ଦଗ୍‌ଧ କରୁଥିବାରୁ ଭସ୍ମ ରୁଦ୍ରଙ୍କ ଭୂଷଣ ହେଲା । ପୃଥିବୀ, ଅନ୍ତରୀକ୍ଷ ଓ ଦ୍ୟୁଲୋକ—ଏହି ତିନି ସ୍ଥଳରେ ଅଗ୍ନି ବିଦ୍ୟମାନ । ରୁଦ୍ର ତ୍ରିନୟନ । ସବୁ ବସ୍ତୁରେ ଅଗ୍ନି ରହିଥିବାରୁ ଶିବପାର୍ବତୀ ଏକାଠି ପୂଜା ପାଇଲେ ।

ବାୟୁ ବିନା ଜୀବନ ସମ୍ଭବ ନୁହେ । ଆଳଂକାରିକ ଭାବରେ ବାୟୁ ହିଁ ପ୍ରାଣଦାତା, ସୃଷ୍ଟିକର୍ତ୍ତା । ତେଣୁ ବାୟୁପୂଜା ପାଇଁ ବ୍ରହ୍ମା କଳ୍ପିତ ହେଲେ । ବାୟୁ ଏକ ସ୍ଥଳରେ ନ ଥିବାରୁ ବ୍ରହ୍ମାମନ୍ଦିର ସାଧାରଣତଃ ବିରଳ । ବାୟୁ ଚାରି ଦିଗରେ ପ୍ରବାହିତ ହେଉଥିବାରୁ ବ୍ରହ୍ମା ଚତୁର୍ମୁଖ । ସୂର୍ଯ୍ୟତାପର ତାରତମ୍ୟ ଯୋଗୁଁ ବାୟୁ ଇତସ୍ତତଃ ପ୍ରବାହିତ ହୁଏ । ତେଣୁ ହଂସ (ସୂର୍ଯ୍ୟଙ୍କ ଏକ ନାମ) ବ୍ରହ୍ମା (ବାୟୁ)ଙ୍କ ବାହନ କଳ୍ପିତ । ବାୟୁ ବିନା ଶବ୍ଦ ଉତ୍ପନ୍ନ ହୁଏ ନାହିଁ । ବ୍ରହ୍ମା (ବାୟୁ)ଙ୍କ ପତ୍ନୀ ହେଲେ ସରସ୍ୱତୀ (ବାଣୀ) । ଦେହସ୍ଥ ପ୍ରାଣବାୟୁରୁ ଜାତ ବାଣୀ ବହିଃସ୍ଥ ବାୟୁଦ୍ୱାରା ପ୍ରବାହିତ ହୁଏ । ତେଣୁ ବାୟୁ ନିଜ କନ୍ୟା ରୂପିଣୀ ବାୟୁକୁ ଗ୍ରହଣ କରେ । ଆଳଂକାରିକ ରୂପରେ ଏହା ବ୍ରହ୍ମା ନିଜ କନ୍ୟାଙ୍କ ସହିତ ଅନାଚାର କରିବା ଇତ୍ୟାଦି ।

ବାହାରେ ଅନ୍ୟ ଦେଶମାନଙ୍କରେ ଏଭଳି ଭାବରେ ମୂର୍ତ୍ତିପୂଜା ପଦ୍ଧତିର ସୂତ୍ରପାତ ହୋଇଥିଲା । କେତେକ ପଣ୍ଡିତଙ୍କ ମତରେ ବୌଦ୍ଧ ପ୍ରଚାରକ-ମାନେ ଚୀନ, ଗ୍ରୀସ ଆଦି ଦେଶରେ ଦେବଦେବୀଙ୍କ ମୂର୍ତ୍ତି ଦେଖି ନିଜ ମତ ପ୍ରବର୍ତ୍ତକଙ୍କ ପ୍ରତିମା ସ୍ଥାପନ କଲେ । ଚତୁର ସ୍ୱାର୍ଥୀ ଲୋକ ସବୁ କାଳରେ ସବୁ ଦେଶରେ ଜନସାଧାରଣଙ୍କ ଅଜ୍ଞତାର ସୁଯୋଗ ନିଅନ୍ତି । ସେମାନେ ମୂର୍ତ୍ତିଗୁଡ଼ିକର ଚମତ୍କାର ଓ ଦୈବୀ ଶକ୍ତି ପ୍ରଚାର କରି ଅର୍ଥୋପାର୍ଜନ କରନ୍ତି । ଗୃଣକ୍ୟ ନିଜର ଅର୍ଥଶାସ୍ତ୍ରରେ ଏଭଳି ଅନେକ ଉପାୟରେ ରାଜ୍ୟର କର ବୃଦ୍ଧି ପାଇଁ ଅନୁଚିତ ପରାମର୍ଶ ଦେଇଛନ୍ତି । ସଂସ୍କାରବାଦୀ ଆନ୍ଦୋଳନଗୁଡ଼ିକ ପୂର୍ବରୁ ଏହି ଦେଶରେ ମୂର୍ତ୍ତିମାନଙ୍କର ଚମତ୍କାର ପ୍ରଚାର କରାଯାଉଥିଲା । ମୂର୍ତ୍ତିଗୁଡ଼ିକର କ୍ରୋଧକୁ ଶାନ୍ତ କରିବା ପାଇଁ ପୂଜକମାନେ ସାଧାରଣ ଲୋକଙ୍କୁ ମଧ୍ୟ ଉପାୟ ବତାଉଥିଲେ । ଆଜିକାଲି ମଧ୍ୟ ଲୋକଙ୍କ ମଧ୍ୟରୁ ଏଭଳି ମିଥ୍ୟା ପ୍ରଚାର ଦୂର ହୋଇ ନାହିଁ ।

---

# ବୈଦିକ କାଳରେ
# ମୂର୍ତ୍ତିପୂଜା ନ ଥିଲା

ଦାର୍ଶନିକ ବିଷୟଗୁଡ଼ିକରେ ଆର୍ଯ୍ୟ ଧର୍ମର ବିଭିନ୍ନ ସମ୍ପ୍ରଦାୟ ବିଭିନ୍ନ ମତ ପୋଷଣ କରୁଥିଲେ ସୁଦ୍ଧା, ସେ ସମସ୍ତେ ଗୋଟିଏ ବିଷୟରେ ଏକମତ ଯେ ବେଦ ଅପୌରୁଷେୟ ଅର୍ଥାତ୍ ଈଶ୍ୱରୀୟ ଜ୍ଞାନ । ସୃଷ୍ଟି ପ୍ରାରମ୍ଭରେ ମନୁଷ୍ୟର ପ୍ରାଦୁର୍ଭାବ ସଙ୍ଗେ ସଙ୍ଗେ ଚାରି ଋଷିଙ୍କ ନିଷ୍ପାପ ଅନ୍ତଃକରଣରେ ଚାରି ବେଦ ପ୍ରକାଶିତ ହୋଇଥିଲା । ପାଶ୍ଚାତ୍ୟ ପଣ୍ଡିତମାନେ ଏଥିରେ ସମ୍ମତ ନ ହେଲେ ସୁଦ୍ଧା ବେଦକୁ ମନୁଷ୍ୟଜାତିର ପ୍ରାଚୀନତମ ସର୍ବଶ୍ରେଷ୍ଠ ଜ୍ଞାନ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି । ଈଶ୍ୱରୀୟ ବେଦକୁ ସ୍ପଷ୍ଟ କରିବା ପାଇଁ ଋଷିମାନେ ବ୍ରାହ୍ମଣ, ଉପନିଷଦ ଓ ଦର୍ଶନ ଶାସ୍ତ୍ର ରଚନା କଲେ । ବୈଦିକ କାଳ କହିଲେ ଏହି ସବୁ ଗ୍ରନ୍ଥଗୁଡ଼ିକର ରଚନା ସମୟ ବୁଝିବାକୁ ହୁଏ । ଏହି କାଳ ମହାଭାରତ ଓ ରାମାୟଣ କାଳର ପୂର୍ବବର୍ତ୍ତୀ । ମୂର୍ତ୍ତିପୂଜାର ପ୍ରଚଳନ ଯେ ବୌଦ୍ଧ ଜୈନ ପରବର୍ତ୍ତୀ ଘଟଣା, ତାହା ପୂର୍ବ ଅଧ୍ୟାୟରେ କୁହାଯାଇଛି । ମୂର୍ତ୍ତିପୂଜକମାନେ ବେଦ ଓ ବେଦାନୁଗାମୀ ଶାସ୍ତ୍ରମାନଙ୍କରୁ ମୂର୍ତ୍ତିପୂଜାର ସମର୍ଥନ ପାଇବା ପାଇଁ ପ୍ରଯତ୍ନ କରୁଥିବାରୁ ଏହି ଅଧ୍ୟାୟରେ ତାହାର ସମ୍ୟକ୍ ଆଲୋଚନା କରାଯାଉଛି ।

ଚାରି ବେଦରେ ମୂର୍ତ୍ତି ଶବ୍ଦ ମିଳେ ନାହିଁ । ଅମରକୋଷର ତୃତୀୟ କାଣ୍ଡରେ ଲେଖା ଅଛି—'ମୂର୍ତ୍ତିଃ କାଠିନ୍ୟ କାୟୟୋଃ'

ଅର୍ଥାତ୍—ମୂର୍ତ୍ତି କଠିନତାକୁ ତଥା ଦେହକୁ ବୁଝାଏ । ମୂର୍ତ୍ତିର ଆକାର ଅଛି । ସୁନା, ରୁପା, ପିତଳ, ଲୁହା, ପଥର, ମାଟି ଆଦି ପଦାର୍ଥରେ ମୂର୍ତ୍ତି ତିଆରି କରାଯାଏ । ହିନ୍ଦୁଙ୍କ ପ୍ରଚଳିତ ମୂର୍ତ୍ତି ପୂଜା ମଧ୍ୟରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ସେମାନଙ୍କ ଅବତାର, ପତ୍ନୀ, ସେବକ, ବାହନ, ପରିବାରବର୍ଗ, ଦେବତା, ଦେବଦୂତ, ଗୁରୁ ଅନ୍ତର୍ଭୁକ୍ତ । ଏପରିକି ଶିବଲିଙ୍ଗ ପୂଜା ମଧ୍ୟ ପ୍ରଚଳିତ ହୋଇଛି । ପରନ୍ତୁ ଏହି ସବୁ ମୂର୍ତ୍ତି ପରମାତ୍ମାଙ୍କର ନୁହେଁ । ଯଜୁର୍ବେଦ କହୁଛନ୍ତି—

ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍ୟଶଃ ।
ହିରଣ୍ୟଗର୍ଭଃ ଇତ୍ୟେଷ ମାମାହିଁସୀଦିତ୍ୟେଷା
ଯସ୍ମାନ୍ନ ଜାତ ଇତ୍ୟେଷଃ ॥ (ଯଜୁଃ ୩୨, ୩)

ଅର୍ଥାତ୍—ପ୍ରଶସ୍ତ ଯଶବାନ୍ ପରମାତ୍ମାଙ୍କ ପ୍ରତିମା ନାହିଁ । 'ହିରଣ୍ୟଗର୍ଭ' 'ମା ମା ହିଂସିତ୍' 'ଯସ୍ମାନ୍ନ ଜାତଃ' ଇତ୍ୟାଦି ପଦରେ ଆରମ୍ଭ ହେଉଥିବା ବେଦମନ୍ତ୍ରମାନଙ୍କରେ ତାହାଙ୍କର ବର୍ଣ୍ଣନା ରହିଛି । ଭାଷ୍ୟକାର ମହୀଧର ଏହି ମନ୍ତ୍ରର ଅର୍ଥରେ ଲେଖିଛନ୍ତି, ପରମାତ୍ମାଙ୍କ ପ୍ରତିମା, ପ୍ରତିମାନ, ଉପମାନ କିଛି ନାହିଁ । ଉବଟ ମଧ୍ୟ ଏହିଭଳି ଅର୍ଥ କରିଛନ୍ତି ।

ସୁତରାଂ ବର୍ତ୍ତମାନ କାଳରେ ଈଶ୍ୱର ପୂଜା ନାମରେ ଯେଉଁ ସବୁ ମୂର୍ତ୍ତି ପ୍ରଚଳିତ ଅଛି, ସେ ସମସ୍ତ ସ୍ୱୟଂ ପରମାତ୍ମାଙ୍କ ପ୍ରତିମା ନୁହନ୍ତି । ଯଜୁର୍ବେଦର ଅନ୍ୟ ଏକ ମନ୍ତ୍ରରେ କୁହାଯାଇଛି—

ସପର୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧଂ
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂର୍ଯାଥାତଥ୍ୟତୋଽର୍ଥାନ୍
ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥ (ଯଜୁଃ ୪୦, ୮)

ଅର୍ଥ—ଈଶ୍ୱର ସର୍ବବ୍ୟାପକ, ସେ ପରିଶୁଦ୍ଧ, ଶରୀରରହିତ, ଶାରୀରିକ ବିକାରରହିତ, ପବିତ୍ର, ନିଷ୍ପାପ, ସୂକ୍ଷ୍ମଦର୍ଶୀ, ସର୍ବଜ୍ଞ, ସ୍ୱୟଂସିଦ୍ଧ ଓ ଜୀବଗଣର କର୍ମଫଳଦାତା ଅଟନ୍ତି । ବେଦ-ମନ୍ତ୍ରରେ ସ୍ପଷ୍ଟ ରୂପରେ ପରମାତ୍ମାଙ୍କୁ ଶରୀର ଓ ଶାରୀରିକ ବିକାର ବନ୍ଧନରୁ ମୁକ୍ତ ବୋଲି କୁହାଯାଇଛି ।

ବେଦର କେତେକ ସ୍ଥଳରେ ରୂପକ ଅଳଂକାରଦ୍ୱାରା ପରମେଶ୍ୱରଙ୍କ ବିଶ୍ୱରୂପ ବର୍ଣ୍ଣନା କରାଯାଇଛି । କିନ୍ତୁ କୌଣସି ଭାଷ୍ୟକାର ଏଥିରୁ ତାହାଙ୍କ ସାକାରତ୍ୱ ପ୍ରତିପାଦନ ନ କରି ଅଳଂକାରର ମହତ୍ତ୍ୱ ହିଁ ସିଦ୍ଧ କରିଛନ୍ତି ।

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସ ଭୂମିଂ ସର୍ବତ ସ୍ପୃତ୍ୱାତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ (ଯଜୁ ୩୧, ୧)

ଏହି ମନ୍ତ୍ରରେ 'ସହସ୍ରଶୀର୍ଷ' 'ସହସ୍ରାକ୍ଷ'ର ଅର୍ଥ ହଜାର ମୁଣ୍ଡ, ହଜାର ଆଖି ନୁହେଁ କାରଣ ହଜାରେ ମୁଣ୍ଡରେ ଦୁଇ ହଜାର ଆଖି ରହିବା ସ୍ୱାଭାବିକ । ମନ୍ତ୍ରର ଶେଷାର୍ଦ୍ଧରେ କୁହାଯାଇଛି ସେ ପରମାତ୍ମା ଭୂଗୋଳର ସର୍ବତ୍ର ପରିବ୍ୟାପ୍ତ ।

ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖୋ
ବିଶ୍ୱତୋବାହୁରୁତ ବିଶ୍ୱତସ୍ପାତ୍ ।
ସ ବାହୁଭ୍ୟାଂ ଧମତି ସଂ ପତତ୍ରୈର୍ଦ୍ୟାବା
ଭୂମୀ ଜନୟନ୍ ଦେବ ଏକଃ ॥
(ଋଗ୍‌ବେଦ ୧୦, ୮୧, ୩)

ଅର୍ଥାତ୍ ପରମାତ୍ମାଙ୍କ ଚକ୍ଷୁ, ମୁଖ, ବାହୁ, ପାଦ ସର୍ବତ୍ର ରହିଛି । ଏଠାରେ ବିଶ୍ୱତଶ୍ଚକ୍ଷୁର ଅର୍ଥ ସର୍ବଜ୍ଞ, ବିଶ୍ୱତୋମୁଖ ଅର୍ଥ ସର୍ବବକ୍ତା,

ବିଶ୍ୱତୋମୁଖର ଅର୍ଥ ସର୍ବସହକାରିତା ଓ ବିଶ୍ୱତସ୍ପାତର ଅର୍ଥ ସର୍ବବ୍ୟାପକତା ।

ଯସ୍ୟ ଭୂମିଃ ପ୍ରମାନ୍ତରିକ୍ଷମୁତୋଦରମ୍
ଦିବଂ ଯଶ୍ଚକ୍ରେ ମୂର୍ଧାନଂ ତସ୍ମୈ ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ ॥
ଯସ୍ୟ ସୂର୍ଯ୍ୟଶ୍ଚକ୍ଷୁଶ୍ଚନ୍ଦ୍ରମାଶ୍ଚ ପୁନର୍ଣବଃ । ଅଗ୍ନି ଯଶ୍ଚକ୍ରେ ଆସ୍ୟଂ
ତସ୍ମୈ ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ ॥
(ଅଥର୍ବବେଦ ୧୦, ୭, ୩୨ ଓ ୩୩)

ଭୂମି ସେହି ପରମାତ୍ମାଙ୍କର ପାଦ, ଅନ୍ତରିକ୍ଷ ଉଦର, ଦ୍ୟୁଲୋକ ଶିର, ସୂର୍ଯ୍ୟ ଚନ୍ଦ୍ର ନେତ୍ର, ଅଗ୍ନି ମୁଖ ଅଟେ । ସେହି ମହାନ୍ ବ୍ରହ୍ମଙ୍କୁ ପ୍ରଣାମ ।

ସାଧାରଣ ଲୋକେ ମଧ୍ୟ ବୁଝି ପାରନ୍ତି ଯେ ଏସବୁ ସର୍ବବ୍ୟାପୀ ପରମାତ୍ମାଙ୍କ ଆଲଂକାରିକ ବର୍ଣ୍ଣନା । ଅନେକ ଭାଷ୍ୟକର୍ତ୍ତା ବେଦୋକ୍ତ ଈଶ୍ୱରଙ୍କ ଅନେକ ନାମରୁ ଅନେକ ଦେବଦେବୀ କଳ୍ପନା କରିଛନ୍ତି ; ପରନ୍ତୁ କେହି ହେଲେ ବେଦରୁ ମୂର୍ତ୍ତିପୂଜା ପ୍ରତିପାଦନ କରି ନାହାନ୍ତି ।

ଉପନିଷଦ ବ୍ରହ୍ମବିଦ୍ୟା ଅଟେ । ଏଥିରେ ସର୍ବତ୍ର ପରମାତ୍ମାଙ୍କ ନିରାକାରତ୍ତ୍ୱ ପ୍ରତିଷ୍ଠିତ ହୋଇଛି ।

କେନ ଉପନିଷଦରେ କୁହାଯାଇଛି—'ନ ତତ୍ର ଚକ୍ଷୁର୍ଗଚ୍ଛତି, ନ ବାଗ୍ ଗଚ୍ଛତି + +' (କେନ ୧,୩) ଅର୍ଥାତ୍ ତାହାଙ୍କଠାରେ ଆଖି ବାଣୀ ଆଦି ଇନ୍ଦ୍ରିୟ ପହଂଚି ପାରେ ନାହିଁ । × × ସେ ବାଣୀଦ୍ୱାରା ପ୍ରକାଶିତ ହୁଅନ୍ତି ନାହିଁ, ତାଂକଦ୍ୱାରା ବାଣୀ ପ୍ରକାଶିତ ହୁଏ ଇତ୍ୟାଦି ।

କଠ ଉପନିଷଦ କହୁଛନ୍ତି—'ଅଶରୀରଂ ଶରୀରେଷୁ ଅନବସ୍ଥେଷ୍ୱବସ୍ଥିତଂ । ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି

(କଠ ୨, ୨୨) ଅର୍ଥାତ୍ ପରମାତ୍ମା ଜୀବର ଦେହରେ ରହି ସୁଦ୍ଧା ସ୍ୱୟଂ ଅଶରୀରୀ । ପରିବର୍ତ୍ତନଶୀଳ ପଦାର୍ଥମାନଙ୍କରେ ବ୍ୟାପି ସୁଦ୍ଧା ଅପରିବର୍ତ୍ତନୀୟ ଇତ୍ୟାଦି । ପୁନଶ୍ଚ 'ଅଶବ୍ଦମସ୍ପର୍ଶମରୂପମବ୍ୟୟଂ ତଥାରସଂ ନିତ୍ୟମଗନ୍ଧ ବଚ୍ଚଯତ୍ ।' (କଠ ୩, ୧୫) ସେ ପରମାତ୍ମା ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରୁ ବହିର୍ଭୂତ । ପୁଣି 'ନ ସଂଦୃଶେ ତିଷ୍ଠତି ରୂପମସ୍ୟ ନ ଚକ୍ଷୁଷା ପଶ୍ୟତି କଶ୍ଚ ନୈନମ୍' (କଠ ୬, ୯) ଅର୍ଥାତ୍ ତାଂକର ରୂପ ନାହିଁ, ସେ ଚକ୍ଷୁରେ ଦେଖାଯାନ୍ତି ନାହିଁ ।

ମୁଣ୍ଡକୋପନିଷଦରେ କୁହାଯାଇଛି—'ଯତ୍ତଦଦ୍ରେଶ୍ୟମଗ୍ରାହ୍ୟ-ମଗୋତ୍ରମବର୍ଣ୍ଣମଚକ୍ଷୁଃ ଶ୍ରୋତ୍ରଂ ତଦପାଣିପାଦଂ'(ମୁ: ୧, ୧, ୬)—ସେ ଅଦୃଶ୍ୟ, ତାଙ୍କର ଗୋତ୍ର ନାହିଁ, ବର୍ଣ୍ଣ, ଚକ୍ଷୁ,କର୍ଣ୍ଣ ବା ହସ୍ତପଦ ନାହିଁ । ପୁଣି 'ଦିବ୍ୟୋ ହ୍ୟମୂର୍ତ୍ତଃ ପୁରୁଷଃ'— (ମୁ: ୨, ୨, ୨) ସେ ପ୍ରକାଶ-ମାନ, ମୂର୍ତ୍ତିରହିତ, ସର୍ବବ୍ୟାପକ । 'ତଂ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ' (ମୁ: ୩, ୧, ୮) ଅର୍ଥାତ୍ ଧ୍ୟାନଦ୍ୱାରା ସେ ଅନୁଭୂତ ହୁଅନ୍ତି ।

ଶ୍ୱେତାଶ୍ୱତର ଉପନିଷଦ କହିଛନ୍ତି—'ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ । (ଶ୍ୱେ, ୧, ୧୭) ଅର୍ଥାତ୍ ସେ ସମସ୍ତ ଇନ୍ଦ୍ରିୟ ରହିତ ପରନ୍ତୁ ଜୀବମାନଙ୍କ ଇନ୍ଦ୍ରିୟଗୁଡ଼ିକୁ ପ୍ରକାଶିତ କରନ୍ତି । (ଶ୍ୱେ: ୩, ୧୯)ରେ 'ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତି କର୍ଣ୍ଣଃ' ଅର୍ଥାତ୍ ସେ ବିନା ହାତ ପାଦରେ କାର୍ଯ୍ୟ କରନ୍ତି, ବିନା ନେତ୍ରରେ ଦେଖନ୍ତି ଓ ବିନା କାନରେ ଶୁଣନ୍ତି । 'ସର୍ବବ୍ୟାପିନମାତ୍ମାନଂ କ୍ଷୀରେ ସର୍ପିରିବାର୍ପିତମ୍ । ଆତ୍ମବିଦ୍ୟାତପୋମୂଳଂ ତଦ୍‌ବ୍ରହ୍ମୋପନିଷତ୍ ପରମ୍ ।' (ଶ୍ୱେ: ୧, ୧୬) କ୍ଷୀରରେ ଲହୁଣୀ ଥିବାପରି ସେ ସର୍ବତ୍ର ବିଦ୍ୟମାନ । ସେ ଆତ୍ମବିଦ୍ୟା ଓ ତପଦ୍ୱାରା ଲଭ୍ୟ ହୁଅନ୍ତି ।

ଏଥିରୁ ଜଣାଯାଏ ଯେ ଉପନିଷଦ ସ୍ପଷ୍ଟ ଭାବରେ ନିରାକାର ପରମାତ୍ମାଙ୍କ ବର୍ଣ୍ଣନା କରିଛନ୍ତି । ସେ ପରମାତ୍ମା ଜୀବାତ୍ମାର ଅନ୍ତଃ-କରଣରେ ଅନୁଭୂତ ହୁଅନ୍ତି । ଈଶ୍ୱରାନୁଭୂତି ବିଷୟରେ ବେଦ କହିଛନ୍ତି—

ଯୁଂଜତେ ମନ ଉତ ଯୁଂଜତେ ଧିୟୋ
ବିପ୍ରା ବିପ୍ରସ୍ୟ ବୃହତୋ ବିପଶ୍ଚିତଃ ।
ବିହୋତ୍ରାଦଧେ ବାୟୁନାବିଦେକ ଇନ୍ମହୀ
ଦେବସ୍ୟ ସବିତୁଃ ପରିଷ୍ଟୁତିଃ ॥
(ଋ ୫, ୮୧, ୧)

ଯୁକ୍ତେନ ମନସା ବୟଂ ଦେବସ୍ୟ ସବିତୁଃ ସବେ ।
ସ୍ୱର୍ଗ୍ୟାୟ ଶକ୍ତ୍ୟା ॥ (ଯଜୁଃ ୧୧, ୨)

ଯୁଜେ ବାଂ ବ୍ରହ୍ମପୂର୍ବ୍ୟଂ ନମୋଭିର୍ବିଶ୍ଳୋକଏତୁ ପଥ୍ୟେବ ସୂରେଃ
ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା ଆଯେ ଧାମାନି ଦିବ୍ୟାନି ତସ୍ଥୁଃ ॥
(ଯଜୁଃ ୧୧,୫)

ଅର୍ଥାତ୍ ବଡ଼ ବଡ଼ ବିଦ୍ୱାନ ସାଧକମାନେ ନିଜ ନିଜର ମନ ଓ ବୁଦ୍ଧି ପରମାତ୍ମାଙ୍କଠାରେ ଯୁକ୍ତ କରନ୍ତି । ସ୍ୱର୍ଗସୁଖ ପାଇଁ ଦେବତା ପରମାତ୍ମାଙ୍କଠାରେ ମନୋନିବେଶ କରିବାକୁ ହୁଏ । ଯୋଗବଳରୁ ଆମର ପୂର୍ବଜମାନେ ପ୍ରକାଶମାର୍ଗରେ ଯାତ୍ରା କରିଥିଲେ ।

ଉପନିଷଦ୍ ପରି ଦର୍ଶନଶାସ୍ତ୍ର ପରମାତ୍ମାଙ୍କୁ ନିରାକାର ସିଦ୍ଧ କରିଛନ୍ତି ଓ ଈଶ୍ୱର ଦର୍ଶନ ପାଇଁ ମନକୁ ବାହ୍ୟ ବୃତ୍ତିରୁ ନିରୋଧ କରି ନିଜ ସ୍ୱରୂପରେ ସ୍ଥିତ ହେବାପାଇଁ ଉପଦେଶ ଦେଇଛନ୍ତି ।

ବେଦାନ୍ତ ଦର୍ଶନରେ ଲେଖା ଅଛି—

ପତ୍ୟୁରସାମଂଜସ୍ୟାତ୍ ॥ ସମ୍ବନ୍ଧାନୁପପତ୍ତେଶ୍ଚ ॥ ଅଧିଷ୍ଠାନା-ନୁପପତ୍ତେଶ୍ଚ ॥ କରଣବଚ୍ଚେନ୍ନ ଭୋଗାଦିଭ୍ୟଃ ॥ ଅନ୍ତବତ୍ତ୍ୱମସର୍ବଜ୍ଞ-ତାବା ॥ ଉତ୍ପତ୍ତ୍ୟ ସଂଭବାତ୍ ॥ ନ ଚ କର୍ତ୍ତୁଃ କରଣମ୍ ॥ ବିଜ୍ଞାନାଦିଭାବେ ତଦପ୍ରତିଷେଧଃ ॥ ବିପ୍ରତିଷେଧାଚ୍ଚ ॥

(ବେଦାନ୍ତ ଦର୍ଶନ ୨, ୨, ୩୭ରୁ ୪୫)

ଅର୍ଥାତ୍ ପରମାତ୍ମାଙ୍କ ସାକାରତ୍ୱ ଯୁକ୍ତିଶୂନ୍ୟ । ପରମାତ୍ମା ସାକାର ହେଲେ ପ୍ରକୃତିରୂପକ ଉପାଦାନ କାରଣ ସହିତ ତାଂକ ସମ୍ବନ୍ଧ ରହିବ । ତେଣୁ ସାକାରବାଦ ଯଥାର୍ଥ ନୁହେ । ସାକାର ବସ୍ତୁ ଏକଦେଶୀ ; ପରମାତ୍ମା ସେପରି ନୁହନ୍ତି । ପରମାତ୍ମାଙ୍କୁ ସାକାର ଭାବିଲେ ସେ ଜୀବଙ୍କ ପରି ସୁଖ ଦୁଃଖ ଭୋଗ କରିବେ । ତେଣୁ ସେ ସାକାର ନୁହନ୍ତି । ପରମାତ୍ମା ଦେହଧାରୀ ହେଲେ ସୀମା-ବଦ୍ଧ ଓ ଅଳ୍ପଜ୍ଞ ହେବେ ଯାହା ସମ୍ଭବ ନୁହେ । ପରମାତ୍ମାଙ୍କ ଜନ୍ମାଦି ଅସମ୍ଭବ, ତେଣୁ ସେ ଦେହଧାରୀ ନୁହନ୍ତି । ସେ ଇନ୍ଦ୍ରିୟାଦି ଶୂନ୍ୟ । ସେ ସର୍ବଜ୍ଞ, ତେଣୁ ଉତ୍ପନ୍ନ ହୁଅନ୍ତି ନାହିଁ । ସାକାର ଓ ନିରାକାର ପରସ୍ପର ବିରୁଦ୍ଧ ଭାବ ହେବାରୁ ନିରାକାର ପରମାତ୍ମା ସାକାର ନୁହନ୍ତି ।

'ଯୋଗ ଦର୍ଶନ'ରେ ମହର୍ଷି ପତଂଜଳି ଈଶ୍ୱରପ୍ରାପ୍ତିର ସାଧନ ପାଇଁ କହିଛନ୍ତି—'ଯୋଗଶ୍ଚିତ୍ତବୃତ୍ତିନିରୋଧଃ ॥ ତଦା ଦ୍ରଷ୍ଟୁଃ ସ୍ୱରୂପେଽ-ବସ୍ଥାନମ୍ ॥' ଅର୍ଥାତ୍ ଚିତ୍ତର ବୃତ୍ତିଗୁଡ଼ିକର ନିରୋଧ କଲେ ଓ ଜୀବ ନିଜ ସ୍ୱରୂପରେ ଅବସ୍ଥିତ ହେଲେ ଈଶ୍ୱରପ୍ରାପ୍ତି ମିଳେ ।

ମନୁଷ୍ୟଜାତିର ପ୍ରସିଦ୍ଧ ଗ୍ରନ୍ଥ ମନୁସ୍ମୃତିରେ ସୃଷ୍ଟି-ଉତ୍ପତ୍ତି ବିଷ-ୟରେ ଆଲୋଚନା କରିବାବେଳେ ପରମାତ୍ମାଙ୍କୁ ଅଚିନ୍ତ୍ୟ, ଅପ୍ରାପ୍ୟ,

ଅନାଦି, ଇନ୍ଦ୍ରିୟାତୀତ, ପରମସୂକ୍ଷ୍ମ, ଆକାରରହିତ ଭାବରେ କୁହାଯାଇଛି । କାଳସ୍ରୋତରେ ମନୁସ୍ମୃତିରେ ଅନେକ ଶ୍ଳୋକର ମିଶ୍ରଣ ଘଟିଛି—ଏହା ସତ୍ୟ । ଏହି ମିଶ୍ରଣ ମଧ୍ୟରେ ପଶୁବଳି, ମଦ୍ୟ-ମାଂସ ଭକ୍ଷଣ, ଜନ୍ମଗତ ବର୍ଣ୍ଣବ୍ୟବସ୍ଥା, ମୃତକଶ୍ରାଦ୍ଧାଦି ଅନ୍ତର୍ଭୁକ୍ତ । ଏହା ସତ୍ତ୍ୱେ ମନୁସ୍ମୃତିରେ ମୂର୍ତ୍ତିପୂଜା ବା ଅବତାରବାଦ ବିଷୟକ ଗୋଟିଏ ମାତ୍ର ଶ୍ଳୋକ ମିଳେ ନାହିଁ । ଅନ୍ୟ ପକ୍ଷରେ ଈଶ୍ୱରୋପାସନା ପାଇଁ ସନ୍ଧ୍ୟା-ଉପାସନା, ଅଗ୍ନିହୋତ୍ର, ଗାୟତ୍ରୀଜପର ଉପଦେଶ ରହିଛି । ବ୍ରହ୍ମଯଜ୍ଞ, ଦେବଯଜ୍ଞ, ପିତୃଯଜ୍ଞ, ଅତିଥିଯଜ୍ଞ ଓ ଭୂତଯଜ୍ଞ ଆଦି ପଞ୍ଚକର୍ତ୍ତବ୍ୟ ବୁଝାଇବାବେଳେ ମନୁ କେଉଁ ସ୍ଥଳରେ ମୂର୍ତ୍ତିପୂଜା ପାଇଁ ନିର୍ଦ୍ଦେଶ ଦେଇ ନାହାନ୍ତି ।

ଋଷିଯଜ୍ଞଂ ଦେବଯଜ୍ଞଂ ଭୂତଯଜ୍ଞଂ ଚ ସର୍ବଦା ।
ନୃଯଜ୍ଞଂ ପିତୃଯଜ୍ଞଂ ଚ ଯଥାଶକ୍ତି ନ ହାପୟେତ୍ ॥
(ମନୁ ୪, ୨୧)

—ସଂଧ୍ୟା-ସ୍ୱାଧ୍ୟାୟ, ହୋମ (ଦେବଯଜ୍ଞ), ବଳିବୈଶ୍ୱଦେବ, ଅତିଥି ସତ୍କାର ଓ ପିତାମାତାଙ୍କ ସେବା କଦାପି ତ୍ୟାଗ କରିବା ଉଚିତ ନୁହେ । ଏଗୁଡ଼ିକ ଦୈନନ୍ଦିନ କର୍ତ୍ତବ୍ୟ ।

ଉତ୍ଥାୟାବଶ୍ୟକଂ କୃତ୍ୱା କୃତଶୌଚଂ ସମାହିତଃ ।
ପୂର୍ବାଂ ସଂଧ୍ୟାଂ ଜପଂସ୍ତିଷ୍ଠେତ୍ ସ୍ୱକାଳେ ଗୃହସ୍ଥଂଚରମ୍ ॥
(ମନୁ ୪,୯୩)

—ବ୍ରହ୍ମମୁହୂର୍ତ୍ତରେ ଉଠି ଶୌଚାଦି କ୍ରିୟା ସମାପନ କରି ଏକାଗ୍ରଚିତ୍ତରେ ପର୍ଯ୍ୟାପ୍ତ ସମୟ ପର୍ଯ୍ୟନ୍ତ ସଂଧ୍ୟା-ଉପାସନା କରିବା ଉଚିତ ।

ଅଗ୍ନିହୋତ୍ରଂ ଚ ଜୁହୁଯାଦାଦ୍ୟନ୍ତେ ଦ୍ୟୁନିଶୋଃ ସଦା ।
ଦର୍ଶେନ ଗୃର୍ଦ୍ଧ ମାସାନ୍ତେ ପୌର୍ଣ୍ଣମାସେନ ଚୈବ ହି ॥
(ମନୁ ୪, ୨୫)

—ଗୃହସ୍ଥ ପ୍ରତ୍ୟହ ଦିନର—ଓ ରାତ୍ରିର ଆରମ୍ଭରେ ଅଗ୍ନିହୋତ୍ର କରିବା ବିଧେୟ । ଅର୍ଦ୍ଧ ମାସ ଅନ୍ତରେ ଦର୍ଶଯଜ୍ଞ, ମାସ ପୂର୍ଣ୍ଣ ହେବା ପରେ ପୌର୍ଣ୍ଣମାସ ଯଜ୍ଞ କରିବେ ।

ପୂର୍ବାଂ ସଂଧ୍ୟାଂ ଜପଂ ସ୍ତିଷ୍ଠେତ୍ ସାବିତ୍ରୀମାର୍କଦର୍ଶନାତ୍ ।
ପଶ୍ଚିମାଂତୁ ସମାସୀନଃ ସମ୍ୟଗୃକ୍ଷ ବିଭାବନାତ୍ ॥
(ମନୁ ୨,୧୦୧)

—ପ୍ରାତଃକାଳରେ ସୂର୍ଯ୍ୟଦର୍ଶନ ପର୍ଯ୍ୟନ୍ତ ଓ ସାୟଂକାଳରେ ନକ୍ଷତ୍ରଦର୍ଶନ ପର୍ଯ୍ୟନ୍ତ ଶାନ୍ତ ଭାବରେ ବସି ସଂଧ୍ୟା ଉପାସନା ଓ ଗାୟତ୍ରୀ ଜପ କରିବା ଉଚିତ ।

ଯୋଽଧୀତେଽହନ୍ୟହନ୍ୟେତାଂସ୍ତ୍ରୀଣି ବର୍ଷାଣ୍ୟତନ୍ଦ୍ରିତଃ ।
ସ ବ୍ରହ୍ମ ପରମଭ୍ୟେତି ବାୟୁଭୂତଃ ଖମୂର୍ତ୍ତିମାନ୍ ॥
(ମନୁ ୨, ୮୨)

ଯେଉଁ ବ୍ୟକ୍ତି ପ୍ରତ୍ୟହ ଆଳସ୍ୟଶୂନ୍ୟ ହୋଇ ତିନି ବର୍ଷ ପର୍ଯ୍ୟନ୍ତ ବ୍ୟାହୃତି ଓ ଗାୟତ୍ରୀ ଜପ କରିବେ, ସେ ପରବ୍ରହ୍ମ ପ୍ରାପ୍ତ ହେବେ । ସେ ବାୟୁପରି ଦେହବଂଧନରୁ ମୁକ୍ତ ହେବେ ।

ଏହି ରୂପେ ବେଦ, ଉପନିଷଦ ଓ ସ୍ମୃତିଶାସ୍ତ୍ରରେ କୁହାଯାଇଛି ଯେ ଈଶ୍ୱର ନିରାକାର ଓ ଇନ୍ଦ୍ରିୟାତୀତ ଅଟନ୍ତି । ବୈଦିକ ସାହିତ୍ୟମାନଙ୍କରେ କୁହାପି ଈଶ୍ୱରପ୍ରାପ୍ତି ପାଇଁ ମୂର୍ତ୍ତିପୂଜାକୁ

ସାଧନ ସ୍ୱରୂପରେ କୁହାଯାଇ ନାହିଁ । ସୁତରାଂ ମୂର୍ତ୍ତିପୂଜା ବୈଦିକ ବିଧାନ ବୋଲି ଯେଉଁମାନେ କହନ୍ତି, ସେମାନେ ହୁଏତ ବେଦର ଅନୁଶୀଳନ କରି ନାହାନ୍ତି ଅଥବା ପକ୍ଷପାତ ବଶତଃ ସତ୍ୟର ଅପଳାପ କରୁଅଛନ୍ତି ।

---

# ମୂର୍ତ୍ତିପୂଜାରୁ ଅବତାରକଳ୍ପନା ଓ ବହୁଦେବପୂଜା

ପ୍ରତିମା ପୂଜାର କଳ୍ପନା ସମ୍ଭବତ ପରମାତ୍ମାଙ୍କୁ ସାକାର ସିଦ୍ଧ କରିବା ଆବଶ୍ୟକ ପଡ଼ିଲା । ପ୍ରଥମେ ବ୍ରହ୍ମା-ବିଷ୍ଣୁ-ମହେଶ ତିନି ରୂପର ଯୋଜନା କରାଗଲା । ପ୍ରକୃତରେ ଏହି ତିନି ପୃଥକ୍ ଶରୀରଧାରୀ ଈଶ୍ୱର ନୁହନ୍ତି । ଏକ ପରମାତ୍ମା ତିନୋଟି ଗୁଣ ଯଥା: ସୃଷ୍ଟି, ସ୍ଥିତି ଓ ପ୍ରଳୟର ଆଧାରରେ ତିନି ଈଶ୍ୱର କଳ୍ପିତ ହେଲେ । କବିମାନେ ସେମାନଙ୍କ ଗୁଣଗାନ କଲେ—ଚିତ୍ରକାରମାନେ ଚିତ୍ର ଆଙ୍କିଲେ ଓ ଶେଷରେ ମୂର୍ତ୍ତିକାରମାନେ ମୂର୍ତ୍ତି ଗଢ଼ିଲେ । କଳା ଦୃଷ୍ଟିରୁ ଏ ସବୁ ପ୍ରଶଂସନୀୟ ଥିଲା ; କିନ୍ତୁ ଯେତେବେଳେ ମୂର୍ତ୍ତିଗୁଡ଼ିକ ପ୍ରାଣପ୍ରତିଷ୍ଠା କରାଯାଇ ସେମାନଙ୍କୁ ପରମାତ୍ମା ବୋଲି ପୂଜା କରାଗଲା ସେତେବେଳେ କଳାର ଘୋର ଦୁରୁପଯୋଗ ଆରମ୍ଭ ହେଲା ।

ନିରାକାର ପରମାତ୍ମାଙ୍କୁ ଆକାରଯୁକ୍ତ ଓ ଦେହଯୁକ୍ତ ବୋଲି ବର୍ଣ୍ଣନା କରିବା ପାଇଁ ମୂର୍ତ୍ତିପୂଜା ଓ ଅବତାରବାଦ ଦୁଇଟି କଳ୍ପନା ପରସ୍ପର ଉପରେ ନିର୍ଭର କରେ । ମୂର୍ତ୍ତିପୂଜକମାନେ ପରମାତ୍ମାଙ୍କ ଅବତାରରେ ବିଶ୍ୱାସ କରନ୍ତି ଓ ସେହି ଅବତାରମାନଙ୍କ ପ୍ରତିମୂର୍ତ୍ତି ଗଢ଼ି ପୂଜା କରନ୍ତି ।

ତିନି ଚାରି ହଜାର ବର୍ଷ ପୂର୍ବେ ରଚିତ ହୋଇଥିବା ପୁରାଣ-ଗୁଡ଼ିକ ମୂର୍ତ୍ତିପୂଜାର ଜନ୍ମଦାତା ଅଟନ୍ତି । ଈଶ୍ୱର ପୃଥିବୀ ଉପରେ କାହିଁକି ଅବତରିତ ହୁଅନ୍ତି, ଏ ସମ୍ବନ୍ଧରେ ପୁରାଣ ବିଭିନ୍ନ ରୋଚକ

କଥା ଓ ଉପାଖ୍ୟାନ କଳ୍ପନା କରିଛନ୍ତି । ପୁରାଣବର୍ଣ୍ଣିତ ଚବଶ ଅବତାର ମଧ୍ୟରୁ ମୁଖ୍ୟ ଅବତାର ସଂଖ୍ୟା ଦଶ । ଅଧିକାଂଶ ବିଷ୍ଣୁଙ୍କ ପୂର୍ଣ୍ଣ ଅଥବା ଆଂଶିକ ଅବତାର । କେତେକ ଅବତାର ରାମ, କୃଷ୍ଣ, ବୁଦ୍ଧ, ଶଂକର ଇତ୍ୟାଦି ନରରୂପ ଓ କେତେକ କଚ୍ଛପ, ମତ୍ସ୍ୟ, ଶୂକର ଆଦି ପଶୁରୂପ । ଅବତାରବାଦ ମୁଖ୍ୟତଃ ବୈଷ୍ଣବମାନଙ୍କର ଅବଦାନ ।

ଈଶ୍ୱର କାହିଁକି ଶରୀର ଧାରଣ କରନ୍ତି, ସେ ସମ୍ବନ୍ଧରେ ଗୀତାର ଚତୁର୍ଥ ଅଧ୍ୟାୟର 'ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ । ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍' ଏବଂ ବୈଷ୍ଣବ ସଂପ୍ରଦାୟର ଶ୍ରୀମଦ୍ ଭାଗବତ ଅଷ୍ଟମ ଅଧ୍ୟାୟର 'ଯଦା ଯଦାହି ଧର୍ମସ୍ୟ କ୍ଷୟୋବୃଦ୍ଧିଶ୍ଚ ପାପ୍ମନ୍ । ତଦାତୁ ଭଗବାନୀଶ ଆତ୍ମାନଂ ସୃଜତେ ହରି' ଏହି ଦୁଇ ଶ୍ଳୋକ ହିନ୍ଦୁମାନଙ୍କ ମଧ୍ୟରେ ଲୋକୋକ୍ତି ହୋଇ ଯାଇଛି । ଗୀତା ସହିତ ମହାଭାରତରେ ମିଶ୍ରଣ ବିଷୟ ପରବର୍ତ୍ତୀ ଅଧ୍ୟାୟରେ ଆଲୋଚିତ ହେବ । ବୈଷ୍ଣବଙ୍କ ପୁରାଣରେ ଅବତାରବାଦ ସୃଷ୍ଟି କରାଇଛି ; ତେଣୁ ସେ ସମ୍ବନ୍ଧରେ ଆଲୋଚନା ଆବଶ୍ୟକ ନାହିଁ ।

ଶାକ୍ତ ସଂପ୍ରଦାୟର ପ୍ରସିଦ୍ଧ ପୁରାଣ ଦେବୀ ଭାଗବତରେ ଉଲ୍ଲେଖ ଅଛି—

ମାୟା ବିମୋହିତା ମନ୍ଦାଃ ପ୍ରବଦନ୍ତି ମନୀଷିଣଃ ।
କରୋତି ସ୍ୱେଚ୍ଛୟା ବିଷ୍ଣୁରବତାରାନନେକଶଃ ॥
ମନ୍ଦୋଽପି ଦୁଃଖଗହନେ ଗର୍ଭବାସେଽତିସଂକଟେ ।
ନ କରୋତି ମତି ବିଦ୍ୱାନ୍ କଥଂ କୁର୍ଯ୍ୟାତ୍ ସ ଚକ୍ରଭୃତ୍ ॥
କୌଶଲ୍ୟା ଦେବକୀଗର୍ଭେ ବିଷ୍ଠାମଳ ସମାକୁଳେ ।
ସ୍ୱେଚ୍ଛୟା ପ୍ରବଦଂତ୍ୟେଭାଗତେ ହି ମଧୁସୂଦନଃ ॥

ବୈକୁଣ୍ଠସଦନଂ ତ୍ୟକ୍ତ୍ୱା ଗର୍ଭବାସେ ସୁଖଂ ନୁ କମ୍ ।
ଚନ୍ଦ୍ରାକୋଟିସମ୍ଭୂତ୍ଥାନେ ଦୁଃଖଦେ ବପସଂମିତେ ॥

(ଦେବୀ ଭାଗବତ)

—ମାୟାଗ୍ରସ୍ତ ଲୋକେ କହନ୍ତି ଯେ ବିଷ୍ଣୁ ନିଜ ଇଚ୍ଛାରେ ଅବତାର ନିଅନ୍ତି । ମୂର୍ଖ ମଧ୍ୟ ଗର୍ଭବାସର କଷ୍ଟ ସହିବାକୁ ଇଚ୍ଛା କରେ ନାହିଁ ; ଚକ୍ରଧର ବିଷ୍ଣୁ କିପରି ସେଭଳି ଇଚ୍ଛା କରିବେ ? ଲୋକେ କହନ୍ତି ମଳମୂତ୍ର ପୂର୍ଣ୍ଣ କୌଶଲ୍ୟା ଓ ଦେବକୀଙ୍କ ଗର୍ଭରେ ବିଷ୍ଣୁ ସ୍ୱେଚ୍ଛାରେ ପ୍ରବେଶ କଲେ । ଭଲ, ବୈକୁଣ୍ଠ ଛାଡ଼ି କୋଟିଚନ୍ଦ୍ରା-ଯୁକ୍ତ, କଷ୍ଟଦାୟକ ବିଷତୁଲ୍ୟ ଗର୍ଭବାସରେ କି ସୁଖ ରହିଛି ?

ମହାମୁନି ପତଂଜଳି ଯୋଗଦର୍ଶନରେ ଲେଖିଛନ୍ତି—

କ୍ଲେଶକର୍ମବିପାକାଶୟୈରପରାମୃଷ୍ଟଃ ପୁରୁଷବିଶେଷ ଈଶ୍ୱରଃ ॥

(ଯୋ: ଦ: ୧,୨୪)

ଅର୍ଥାତ୍ ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ, ଅଭିନିବେଶ—ଏହି ପାଞ୍ଚ କ୍ଲେଶରୁ ଉତ୍ପନ୍ନ ହେଉଥିବା କର୍ମ, କର୍ମଫଳ ଓ ବାସନା ଯାହାଙ୍କଠାରେ ନାହିଁ, ସେ ଈଶ୍ୱର ।

ଯେଉଁ ସବୁ କାରଣରୁ ଦେହର ଉତ୍ପତ୍ତି ହୁଏ, ତାହା ପରମାତ୍ମାଙ୍କ-ଠାରେ ଘଟେ ନାହିଁ । ଆତ୍ମା, ଦେହ, ଇନ୍ଦ୍ରିୟ ଓ ମନର ସମ୍ବନ୍ଧକୁ ଜନ୍ମ କୁହାଯାଏ । ଜନ୍ମରୁ ସୁଖ ଦୁଃଖ ମିଳେ । ଜନ୍ମପାଇଁ ଧର୍ମା-ଧର୍ମ, ଧର୍ମାଧର୍ମ ପାଇଁ ପ୍ରବୃତ୍ତି, ପ୍ରବୃତ୍ତି ପାଇଁ ରାଗଦ୍ୱେଷ ଓ ରାଗଦ୍ୱେଷ ପାଇଁ ମିଥ୍ୟାଜ୍ଞାନ ହେଉଛି କାରଣ ବା ହେତୁ । ପରମାତ୍ମାଙ୍କ ମିଥ୍ୟାଜ୍ଞାନ ହେବା ଅସମ୍ଭବ । ତେଣୁ ତାଙ୍କର ଅବତାର କଳ୍ପନା ଅଯୌକ୍ତିକ । କେତେକେ କହନ୍ତି ଯେ ବିନା ଦେହରେ ଜୀବାତ୍ମା ଯେପରି କାର୍ଯ୍ୟ

କରିବାରେ ଅସମର୍ଥ, ସେହିପରି ସୃଷ୍ଟି ରଚନା ପାଇଁ ପରମାତ୍ମା ଦେହ ଧାରଣ କରନ୍ତି । ସେମାନେ ଭୁଲି ଯାଆନ୍ତି ଯେ ସୃଷ୍ଟି ଅନନ୍ତ ଓ ଅସୀମ। ଦେହଧାରୀ ଜୀବାତ୍ମା ମହାଶକ୍ତିଶାଳୀ ହୋଇ ପାରନ୍ତି ; ପରନ୍ତୁ ଅନନ୍ତ ସୃଷ୍ଟି ସର୍ବଶକ୍ତିମାନ ପରମାତ୍ମାଙ୍କ କାର୍ଯ୍ୟ । ସେ ସର୍ବଶକ୍ତିମାନ ଓ ସର୍ବବ୍ୟାପୀ ସେ ନିରାକାର ।

ସାଧୁଙ୍କ ରକ୍ଷା ଓ ଦୁଷ୍ଟଙ୍କ ବିନାଶ ପାଇଁ ପରମାତ୍ମାଙ୍କୁ ଜନ୍ମ-ମରଣ ବନ୍ଧନରେ ଆସିବାକୁ ପଡ଼େ ନାହିଁ । ଯେଉଁ ପ୍ରଭୁ ରାବଣ, କଂସାଦି ଦୁଷ୍ଟରାକ୍ଷସଙ୍କୁ ଜନ୍ମ ଦେଇଛନ୍ତି ଓ ସେମାନଙ୍କ ଅନ୍ତରରେ ବିଦ୍ୟମାନ, ସେମାନଙ୍କୁ ନାଶ କରିବା ପାଇଁ ସେ କାହିଁକି ବନ୍ଧନରେ ପଡ଼ିବେ ? ଇତିହାସ ସାକ୍ଷୀ ଯେ ଭାରତ ଓ ଭାରତ ବାହାରେ ସର୍ବଦା ଦୁଷ୍ଟ ରାଜା ଓ ଦୁର୍ଦ୍ଧର୍ଷ ବ୍ୟକ୍ତି ବୀର ପୁରୁଷଙ୍କଦ୍ୱାରା ବିନଷ୍ଟ ହୁଅନ୍ତି । ସେଥିପାଇଁ ଈଶ୍ୱରାବତାରର ଆବଶ୍ୟକତା କ'ଣ ? ଏପରି କୌଣସି କାର୍ଯ୍ୟ ନାହିଁ ଯାହା ପରମାତ୍ମା ଦେହଧାରଣ ନ କରି ସାଧନ କରି ପାରନ୍ତି ନାହିଁ ।

ଯେଉଁମାନେ ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ଐତିହାସିକ ପୁରୁଷଙ୍କୁ ଈଶ୍ୱରା-ବତାର କହନ୍ତି ସେମାନେ ମହାପୁରୁଷମାନଙ୍କ ପରାକ୍ରମ ବିଷୟରେ ଜନସାଧାରଣଙ୍କ ଆଗରେ ଭ୍ରାନ୍ତି ସୃଷ୍ଟି କରନ୍ତି । ସେମାନେ ମହାପୁରୁଷମାନଙ୍କର ଇତିହାସକୁ ନଷ୍ଟ କରି ଦିଅନ୍ତି ଓ ସେମାନଙ୍କ ମହତ୍ତ୍ୱର ଗୁଣଗୁଡ଼ିକ ଅନୁକରଣୀୟ ରୂପରେ ରଖନ୍ତି ନାହିଁ ; କାରଣ ଅବତାରୀ ପୁରୁଷ ସ୍ୱୟଂ ପରମେଶ୍ୱର ହୋଇଥିବାରୁ ତାଙ୍କର ଆଦର୍ଶ ଗ୍ରହଣ କରିବା ସମ୍ଭବ ନୁହେ । ପରମେଶ୍ୱରଙ୍କ ପରାକ୍ରମ ଓ କାର୍ଯ୍ୟକୁ ଅନୁ-କରଣ କରିବା ପାଇଁ ମନୁଷ୍ୟର ସାହସ ହୁଏ ନାହିଁ । ଠିକ୍ ଏ ଅସାଧାରଣ କାର୍ଯ୍ୟକୁ ଦେଖି ମନୁଷ୍ୟ ହତାଶ ହୋଇ ପଡ଼େ ; କାରଣ

ଯେ ସବୁ ଈଶ୍ୱରଙ୍କ ଅବତାରଙ୍କ ପକ୍ଷରେ ହିଁ ଅଛି । ମୂର୍ତ୍ତିପୂଜା ପର ଅବତାର କଳ୍ପନା ହିନ୍ଦୁମାନଙ୍କୁ ଭୀରୁ ଓ ନପୁଂସକ କରିବାରେ ସହାୟକ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବେଦର ବହୁ ସ୍ଥଳରେ ସର୍ବବ୍ୟାପୀ, ନିରାକାର ପରମାତ୍ମାଙ୍କୁ 'ଅଜ' ବା ଅଜନ୍ମା କୁହାଯାଇଛି ; ଯେପରି 'ଅଜୋ ନ କ୍ଷାଂ ଦାଧାର ପୃଥିବୀଂ ତସ୍ତମ୍ଭ ଦ୍ୟାଂ ମଂତ୍ରେଭିଃ ସତ୍ୟୈଃ' (ଋ: ବେଦ ୧, ୬୭, ୩), 'ଶନ୍ନୋ ଅଜ ଏକ ପଦ୍ ଦେବୋଽସ୍ତୁ ଶନ୍ନୋଽହିର୍ବୁଧ୍ନ୍ୟଃ ଶଂ ସମୁଦ୍ରଃ' (ଋ: ବେଦ ୭, ୩୫, ୧୩) ଇତ୍ୟାଦି । ଶତପଥ ବ୍ରାହ୍ମଣରେ କୁହା-ଯାଉଛି—ବ୍ରହ୍ମ ବା ଅଜଃ ॥ (ଶତପଥ ୬, ୪, ୪, ୧୫) ଅର୍ଥାତ୍ ବ୍ରହ୍ମ ଅଜନ୍ମା । ଉପନିଷଦ ମଧ୍ୟ ବ୍ରହ୍ମଙ୍କୁ ଅଜନ୍ମା କହିଛନ୍ତି—

ବେଦାହମେତମଜରଂ ପୁରାଣଂ
ସର୍ବାତ୍ମାନଂ ସର୍ବଗତଂ ବିଭୁତ୍ୱାତ୍ ।
ଜନ୍ମ ନିରୋଧଂ ପ୍ରବଦନ୍ତି ଯସ୍ୟ
ବ୍ରହ୍ମବାଦିନୋ ହି ପ୍ରବଦନ୍ତି ନିତ୍ୟମ୍ ॥
(ଶ୍ୱେ: ଉପ: ୩, ୨୧)

ଅର୍ଥାତ୍—ମୁଁ ସେହି ବ୍ରହ୍ମଙ୍କୁ ପୁରାତନ, ଅଜର, ସର୍ବାତ୍ମା ଓ ବିଭୁ ଭାବରେ ଜାଣେ । ବ୍ରହ୍ମବାଦୀ ତାହାଙ୍କୁ ଜନ୍ମରହିତ ବୋଲି ଜାଣନ୍ତି ; କାରଣ ସେ ନିତ୍ୟ ।

ଏକଧୈବାନୁଦ୍ରଷ୍ଟବ୍ୟମେତଦପ୍ରମେୟଂ ଧ୍ରୁବଂ ।
ବିରଜଃ ପର ଆକାଶାଦଜ ଆତ୍ମା ମହାନ୍ ଧ୍ରୁବଃ ॥
(ବୃ: ଉ: ୪, ୪, ୨୦)

ଅର୍ଥାତ୍—ଅବିନାଶୀ ଅପ୍ରମେୟ ବ୍ରହ୍ମ ମଳରହିତ, ଆକାଶଠାରୁ ମହାନ୍, ଜନ୍ମରହିତ ଓ ଅବିଚଳ ।

ଦିବ୍ୟୋହ୍ୟମୂର୍ତ୍ତଃ ପୁରୁଷଃ
ସ ବାହ୍ୟାଭ୍ୟନ୍ତରୋହ୍ୟଜଃ ।
ଅପ୍ରାଣୋହ୍ୟମନାଃ ଶୁଭ୍ରୋ
ହ୍ୟକ୍ଷରାତ୍ ପରତଃ ପରଃ ॥
(ମୁ: ଉପ: ୨, ୧)

ଅର୍ଥାତ୍—ସେ ଦିବ୍ୟପୁରୁଷ ଅମୂର୍ତ୍ତ, ବାହାରେ ଓ ଭିତରେ ବିଦ୍ୟମାନ । ସେ ପ୍ରାଣରହିତ ଓ ମନରହିତ । ସେ ଶୁଭ୍ର ଓ ଅବ୍ୟକ୍ତ ପ୍ରକୃତିର ଅତୀତ ।

ସ ବା ଏଷ ମହାନଜ ଆତ୍ମାଽଜରୋଽମରୋଽମୃତୋଽଭୟୋ ବ୍ରହ୍ମ ॥ (ବୃ: ଉ: ୪, ୪, ୨୫)

ଅର୍ଥାତ୍—ପରମାତ୍ମା ମହାନ୍, ଅଜନ୍ମା, ଅଜର, ଅମର, ଅଭୟ ଓ ଅମୃତ ।

ବେଦାନ୍ତ ଦର୍ଶନରେ କୁହାଯାଇଛି—

ଉତ୍ପତ୍ୟସମ୍ଭବାତ୍ ॥ ବେଦାନ୍ତ ଦର୍ଶନ ୨, ୨, ୩୧

ଅର୍ଥାତ୍—ପରମାତ୍ମାଙ୍କ ଜନ୍ମ ଅସମ୍ଭବ ହେତୁ ତାହାଙ୍କ କର୍ତ୍ତା ବୋଲି କେହି ନାହିଁ । ପୁଣି କୁହାଯାଇଛି—'ନ ଚ କର୍ତ୍ତୁଃ କରଣଂ' (ବେଦାନ୍ତ ଦର୍ଶନ ୨, ୨, ୪୦) ଅର୍ଥାତ୍ ସେହି ପରମାତ୍ମାଙ୍କ ଇନ୍ଦ୍ରିୟାଦି ସାଧନର ଆବଶ୍ୟକତା ନାହିଁ । ପୁଣି 'କରଣବଚ୍ଚେନ୍ନ ଭୋଗାଦିଭ୍ୟଃ' (ବେ:ଦ ୨୨) ଏହି ଶେଷୋକ୍ତ ସୂତ୍ର ଉପରେ ସ୍ୱାମୀ ଶଙ୍କରାଚାର୍ଯ୍ୟ ଲେଖିଛନ୍ତି—'ଲୋକଦୃଷ୍ଟ୍ୟନୁସାରେଣ ଈଶ୍ୱରସ୍ୟାପି କିଂଚିତ୍ କରଣଂ ନାମାୟତନଂ ଶରୀରଂ କାମେନ କଲ୍ପ୍ୟତେ । ଏବମପି ନୋପପଦ୍ୟତେ । ସ ଶରୀରତ୍ୱେ ହି ସତି ସଂସାରୀବଦ୍ ଭୋଗାଦିପ୍ରସଂଗାଦୀଶ୍ୱରସ୍ୟାପ୍ୟନୀଶ୍ୱରତ୍ୱଂ ପ୍ରସଜ୍ୟେତ୍ ॥'

ଶଂକରଭାଷ୍ୟର ଅର୍ଥ ହେଉଛି—ଲୋକଦୃଷ୍ଟି ଅନୁସାରେ ପରମାତ୍ମାଙ୍କ ଇନ୍ଦ୍ରିୟାଦିର ଅଧିଷ୍ଠାତା ଅର୍ଥାତ୍ ଦେହଧାରୀ ମାନଲେ ସେ ଜୀବମାନଙ୍କ ପରି ସୁଖଦୁଃଖର ଭୋକ୍ତା ଓ ଅନୀଶ୍ୱର ହେବେ ଯାହା ସମ୍ଭବ ନୁହେ ।

ସମସ୍ତ ପ୍ରାଚୀନ ବୈଦିକ ସାହିତ୍ୟରେ ମୂର୍ତ୍ତିପୂଜା ଓ ଅବତାର କଳ୍ପନା ମିଳେ ନାହିଁ । ଅନେକେ ଯୁକ୍ତି କରନ୍ତି ଯେ ଏହି ଦୁଇ ବିଷୟରେ କୌଣସି ବେଦମନ୍ତ୍ରରେ ନିଷେଧ ତ ନାହିଁ । ସେମାନେ ଭୁଲି ଯାଆନ୍ତି ଯେ ବୈଦିକକାଳରେ ବହୁ ସମୟ ପରେ ଏସବୁ ବିଷୟର ଜନ୍ମଲାଭ କରିଥିଲା ; ତେଣୁ ସେସବୁର ନିଷେଧ ବେଦରେ ଖୋଜିବା ଅଯୌକ୍ତିକ ।

ଅବତାରବାଦ ପରି ବହୁ ଦେବତାବାଦ ସହିତ ମୂର୍ତ୍ତିପୂଜାର ସମ୍ପର୍କ ନିବିଡ଼ । ବେଦରେ ଈଶ୍ୱରଙ୍କ ବହୁ ଗୁଣବାଚୀ ନାମ ରହିଛି । ଲୋକେ ସେହି ନାମଗୁଡ଼ିକୁ ପୃଥକ୍ ପୃଥକ୍ ଈଶ୍ୱର ଭାବି ସେଗୁଡ଼ିକର ମୂର୍ତ୍ତି ତିଆରି କରି ପୂଜା ଆରମ୍ଭ କଲେ । ଭାରତବର୍ଷର ଧାର୍ମିକ ସାହିତ୍ୟରେ ଦେବ ଶବ୍ଦର ପ୍ରକୃତ ଅର୍ଥ ବିକୃତ ହେବାରୁ ବହୁ ଅନର୍ଥ ଘଟିଅଛି । ଦେବ ଶବ୍ଦ 'ଦିବୁ' ଧାତୁରୁ ନିଷ୍ପନ୍ନ ଯାହାର ଅର୍ଥ କ୍ରୀଡ଼ା, ବ୍ୟବହାର, ଦ୍ୟୁତି, କାନ୍ତି, ଗତି ଇତ୍ୟାଦି । ଦ୍ୟୁତି ବା ପ୍ରକାଶ ଅର୍ଥରେ ପରମାତ୍ମା, ଜୀବାତ୍ମା, ବିଦ୍ୱାନ୍ ଆଦି ଦେବ ଅଟନ୍ତି । ସେହିପରି ସୂର୍ଯ୍ୟ ଚନ୍ଦ୍ରାଦି ପ୍ରକାଶଯୁକ୍ତ ଜଡ଼ ପଦାର୍ଥ ମଧ୍ୟ ଦେବ ଅଟନ୍ତି । ଯାସ୍କାଚାର୍ଯ୍ୟ ନିରୁକ୍ତରେ 'ଦେବ' ଶବ୍ଦର ଅର୍ଥ କରିଛନ୍ତି—'ଦେବୋ ଦାନାଦ୍ ବା, ଦୀପନାଦ୍ ବା, ଦ୍ୟୋତନାଦ୍ ବା, ଦ୍ୟୁସ୍ଥାନୋଭବତୀତିବା । (ନିରୁକ୍ତ ୭, ୧୫) ଯେ ଦାନ କରନ୍ତି, ପ୍ରକାଶ କରନ୍ତି, ପ୍ରକଟ କରନ୍ତି ବା ପ୍ରକାଶପୁଞ୍ଜ ; ସେ ଦେବ ।

ମହର୍ଷି ଦୟାନନ୍ଦ 'ଋଗ୍‌ବେଦାଦି ଭାଷ୍ୟଭୂମିକା' ଗ୍ରନ୍ଥର ବେଦ ବିଷୟ ବିଚାର କରିବା ବେଳେ ଲେଖିଛନ୍ତି—ଗାୟତ୍ର୍ୟାଦି ଛନ୍ଦଯୁକ୍ତ ମଂତ୍ର, ଈଶ୍ୱର, ରାଜା, ଯଜ୍ଞ, ପରମାତ୍ମା, ମନୁଷ୍ୟ, ବିଦ୍ୱାନ୍, ଅତିଥି, ମାତାପିତା, ଆଚାର୍ଯ୍ୟାଦି ଦେବ ଅଟନ୍ତି । ଯଜୁର୍ବେଦର ଏକ ସ୍ଥଳରେ ଅଛି—

ନୈନଦ୍ ଦେବା ଆପ୍ନୁବନ୍ ॥ (ଯଜୁଃ ୪୦, ୪)

ଅର୍ଥାତ୍ ଦେବ ବା ଇନ୍ଦ୍ରିୟଗଣ ପରମେଶ୍ୱରଙ୍କୁ ପାଆନ୍ତି ନାହିଁ । ଏହିପରି ଦେବ ଶବ୍ଦର ଅନେକ ଅର୍ଥ ଅଛି । ବେଦରେ 'ଦେବାଃ' ବା ଦେବଗଣ ଅର୍ଥାତ୍ ଦେବ ଶବ୍ଦର ବହୁବଚନ ଦେଖି ଲୋକେ ବହୁଦେବତାବାଦ ବେଦବର୍ଣ୍ଣିତ ବୋଲି କହିଲେ । ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍, ପୃଥିବୀ ଆଦି ଜଡ଼ ପଦାର୍ଥ ଦେବ ନାମରେ କଥିତ ଥିବାରୁ ସେଗୁଡ଼ିକର ପୂଜାବିଧାନ ବେଦରେ ଅଛି ବୋଲି ପ୍ରଚାର କଲେ । ବିଭିନ୍ନ ଅଧିଷ୍ଠାତା ଦେବ, ଯଥା: ମେଘର ବଜ୍ର, ଜଳର ବରୁଣ ଇତ୍ୟାଦି କଳ୍ପନା କରାଗଲା । ପରବର୍ତ୍ତୀ କାଳରେ ସେମାନଙ୍କ ମୂର୍ତ୍ତି ଗଠିତ ହେଲା । ଏହିପରି ବିଭିନ୍ନ ପ୍ରାକୃତିକ ପ୍ରକାଶମୟ ପଦାର୍ଥର ଅଧିଷ୍ଠାତା ଦେବଙ୍କ ମୂର୍ତ୍ତିପୂଜା ପ୍ରଚଳିତ ହେଲା । ପୁରାଣ ଗୁଡ଼ିକରେ ଏଗୁଡ଼ିକର ଘୋର ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରଶ୍ନ ହୁଏ, ଏହି ସବୁ ଇଷ୍ଟଦେବତା କ'ଣ ପରମେଶ୍ୱରଙ୍କ ପରି ସଚ୍ଚିଦାନନ୍ଦ ସ୍ୱରୂପ ? ସେମାନେ ଯଦି ସର୍ବଜ୍ଞ, ସର୍ବଶକ୍ତିମାନ ଓ କର୍ମଫଳଦାତା, ତେବେ ପରମେଶ୍ୱରଙ୍କଠାରୁ ସେମାନେ କି ପ୍ରକାରରେ ଭିନ୍ନ ଅଟନ୍ତି ? ସେମାନେ ଅଜର, ଅମର କି ? ଏସବୁର ଉତ୍ତର ଦିଆଯାଏ ନାହିଁ ।

ପୁରାଣମାନଙ୍କରେ ସାଧାରଣ ମନୁଷ୍ୟଙ୍କ ପରି ଦେବତାମାନଙ୍କ ମଧ୍ୟରେ ପାରସ୍ପରିକ ଯୁଦ୍ଧ, ଈର୍ଷା, ଦ୍ୱେଷର ବର୍ଣ୍ଣନା ମିଳେ ।

ଦେବତାଙ୍କୁ ନେଇ ଗଢ଼ି ଉଠିଥିବା ସଂପ୍ରଦାୟ ନିଜ ଦେବତାଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିବା ସ୍ୱାଭାବିକ । ସେଥିପାଇଁ ଅନ୍ୟ ଦେବତାଙ୍କୁ ଘୃଣା କରିବା ଏପରିକ ଭର୍ତ୍ସନା କରିବା ବହୁ ଦେବତା କଳ୍ପନାର ପରିଣାମ ଅଟେ । ରାଜ୍ୟଶାସନ ପାଇଁ ରାଜା ଯେପରି କର୍ମଚାରୀ ନିଯୁକ୍ତ କରନ୍ତି, ସେହିପରି ପରମେଶ୍ୱର ସୃଷ୍ଟିର ନିୟମଗୁଡିକୁ ସୁରକ୍ଷିତ ରଖିବା ପାଇଁ ଅନେକ ଦେବତା ଆବଶ୍ୟକ କରନ୍ତି— ଏଭଳି ଅଜ୍ଞତା ଓ ଅନ୍ଧବିଶ୍ୱାସରୁ ବହୁଦେବ ପୂଜା ସୂତ୍ରପାତ ହେଲା । ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ପରମାତ୍ମା ସୃଷ୍ଟି ଓ ପ୍ରଳୟ ପାଇଁ କାହାର ସହାୟତା ନିଅନ୍ତି ନାହିଁ । ମନୁଷ୍ୟଙ୍କ ରାଜା ସହିତ ବିଶ୍ୱସମ୍ରାଟଙ୍କୁ ତୁଳନା କରିବା ଅଯୌକ୍ତିକ ।

ବହୁଦେବ ଭ୍ରାନ୍ତିର ସଂଦେହ ଦୂର କରିବାପାଇଁ ଋଗ୍‌ବେଦରେ କୁହାଯାଇଛି--ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁରଥୋ ଦିବ୍ୟଃ ସୁପର୍ଣ୍ଣୋ ଗରୁତ୍ମାନ୍ । ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁଃ ॥ (ଋଗ୍ ୧, ୧୬୪, ୪୬) ଅର୍ଥାତ୍ ବିଦ୍ୱାନମାନେ ଏକ ସଦ୍‌ବସ୍ତୁ ପରମାତ୍ମାଙ୍କୁ ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି, ଦିବ୍ୟ, ସୁପର୍ଣ୍ଣ, ଗୁରୁତ୍ମାନ୍, ଯମ ତଥା ମାତରିଶ୍ୱା ଆଦି ବିଭିନ୍ନ ନାମରେ ଡାକନ୍ତି । ସେହିପରି—

> ତଦେବାଗ୍ନିସ୍ତଦାଦିତ୍ୟସ୍ତଦ୍ୱାୟୁସ୍ତଦୁ ଚନ୍ଦ୍ରମାଃ ।
> ତଦେବ ଶୁକ୍ରଂ ତଦ୍ ବ୍ରହ୍ମ ତା ଆପଃ ସ ପ୍ରଜାପତିଃ ॥
> (ଯଜୁଃ ୩୨, ୧)

ଅର୍ଥାତ୍ ଅଗ୍ନି, ଆଦିତ୍ୟ, ବାୟୁ, ଚନ୍ଦ୍ରମା, ଶୁକ୍ର, ବ୍ରହ୍ମା, ଆପଃ, ପ୍ରଜାପତି—ଏହି ଶବ୍ଦ ପରମାତ୍ମଶକ୍ତିର ବୋଧକ । ପ୍ରକାଶସ୍ୱରୂପ ହେବାରୁ ପରମାତ୍ମାଙ୍କ ନାମ ଅଗ୍ନି, ଜଗତର ଜୀବନ ହେବାରୁ ବାୟୁ,

ଆନନ୍ଦସ୍ୱରୂପ ଯୋଗୁଁ ଚନ୍ଦ୍ରମା, ଅତ୍ୟନ୍ତ ପବିତ୍ର ଯୋଗୁଁ ଶୁଦ୍ଧ, ସର୍ବବୃହତ୍ ହେବାରୁ ବ୍ରହ୍ମ, ପ୍ରଜାପାଳକ ହେବାରୁ ପ୍ରଜାପତି ଇତ୍ୟାଦି ।

ଆଜିକାଲି ମନୁଷ୍ୟଙ୍କୁ ଦିଆଯାଉଥିବା ଅନେକ ନାମ ତଥା ପ୍ରାକୃତିକ ପଦାର୍ଥର ନାମ ଈଶ୍ୱରଙ୍କ ପାଇଁ ବେଦରେ ବ୍ୟବହୃତ ହୋଇଛି । ପ୍ରକୃତ ପକ୍ଷରେ ବେଦରୁ ନାମ ନେଇ ମନୁଷ୍ୟ, ନଦୀ, ପର୍ବତ, ସୂର୍ଯ୍ୟାଦି ପଦାର୍ଥର ନାମ ଦିଆଯାଇଛି । ଏମାନଙ୍କୁ ଈଶ୍ୱର ଭାବି ପୂଜା କରିବା ଅନୁଚିତ । ଈଶ୍ୱରଙ୍କୁ ମାତା, ପିତା, ବନ୍ଧୁ, ସଖା ଅନେକ ନାମରେ ସମ୍ବୋଧନ କରାଯାଏ । ଏହିଦ୍ୱାରା ମାତାପିତା, ବନ୍ଧୁସଖାଙ୍କୁ ସ୍ତୁତି ପ୍ରାର୍ଥନା କରାଯାଏ ନାହିଁ । ସେହିପରି ସୂର୍ଯ୍ୟ, ଚନ୍ଦ୍ର, ବରୁଣ, ଇନ୍ଦ୍ର, ଅଗ୍ନି, ବାୟୁ, ଆଦି ଶବ୍ଦ ଯେଉଁ ପ୍ରସଙ୍ଗରେ ଈଶ୍ୱର ଅର୍ଥରେ ପ୍ରଯୁକ୍ତ ସେଠାରେ ଈଶ୍ୱରଙ୍କ ସ୍ତୁତିପ୍ରାର୍ଥନା ବୁଝିବାକୁ ହେବ—ଜଡ଼ ପଦାର୍ଥର ନୁହେଁ ।

ମଧ୍ୟକାଳୀନ ଭାରତୀୟ ବେଦଭାଷ୍ୟକର୍ତ୍ତାମାନେ ବେଦମନ୍ତ୍ର ଭାଷ୍ୟ କରିବା ବେଳେ ନିଜ ନିଜ ସମୟର ଅପଭ୍ରଷ୍ଟ ବିଚାରଗୁଡ଼ିକୁ ବର୍ଣ୍ଣନା କରିଛନ୍ତି । ମିଷ୍ଟର୍ ରଥ୍ ନିଜର ପ୍ରସିଦ୍ଧ କୋଷରେ ଲେଖିଛନ୍ତି— ବୈଦିକ ଋଷିମାନଙ୍କ ମତରେ ବେଦମନ୍ତ୍ରଗୁଡ଼ିକର ଯେଉଁ ବିଷୟ ଥିଲା, ତାହାହିଁ ଯଥାର୍ଥ । ସାୟଣାଚାର୍ଯ୍ୟ ଆଦି ପଣ୍ଡିତମାନେ ଯେଉଁ ବେଦାର୍ଥ କରିଛନ୍ତି ସେଥିରେ ନିଜ ସମୟର ବିଚାର ପ୍ରତିବିମ୍ବିତ ହୋଇଛି ଓ ସେ ସବୁ ଗ୍ରହଣଯୋଗ୍ୟ ନୁହେଁ । ହିଟନୀ, ମ୍ୟୁର୍, ବେବର ପ୍ରମୁଖ ଗବେଷକମାନେ ରଥ୍‌ଙ୍କ ମତର ସମର୍ଥନ କରିଛନ୍ତି ଓ ବେଦରେ ବହୁ ଦେବଦେବୀ ପୂଜାର ଆରୋପକୁ ଖଣ୍ଡନ କରିଛନ୍ତି । ଆଧୁନିକ ଯୁଗର ପ୍ରସିଦ୍ଧ ବେଦଜ୍ଞ ମହର୍ଷି ଦୟାନନ୍ଦ ବେଦରେ ଏକେଶ୍ୱର ସିଦ୍ଧାନ୍ତର ଦୃଢ଼ ପ୍ରତିପାଦନ କରିଛନ୍ତି ଓ ଯୋଗୀ ଅରବିନ୍ଦ ମହର୍ଷିଙ୍କ ବିଚାରକୁ ପୂର୍ଣ୍ଣ ସମର୍ଥନ କରିଛନ୍ତି ।

ବେଦରେ କୁହାଯାଇଛି—

ନ ଦ୍ୱିତୀୟୋ ନ ତୃତୀୟଶ୍ଚତୁର୍ଥୋ ନାପ୍ୟୁଚ୍ୟତେ ।
ନ ପଞ୍ଚମୋ ନ ଷଷ୍ଠଃ ସପ୍ତମୋ ନାପ୍ୟୁଚ୍ୟତେ ।
ନାଷ୍ଟମୋ ନ ନବମୋ ଦଶମୋ ନାପ୍ୟୁଚ୍ୟତେ ।
(ଅଥର୍ବ ବେଦ ୧୩, ୪, ୧୬ରୁ ୧୮)

ଅର୍ଥାତ୍—ଈଶ୍ୱର ଦୁଇ, ତିନ, ଚାରି ନୁହନ୍ତି । ସେ ପାଞ୍ଚ, ଛଅ, ସାତ, ନୁହନ୍ତି । ସେ ଆଠ, ନଅ କିମ୍ବା ଦଶ ନୁହନ୍ତି । ଅର୍ଥାତ୍ ସେ ଅଦ୍ୱିତୀୟ ।

ତମିଦଂ ନିଗତଂ ସହଃ ସ ଏଷ
ଏକ ଏକ ବୃଦେକ ଏବ ।
(ଅଥର୍ବ ୧୩, ୪, ୨୦)

ଅର୍ଥାତ୍—ସେ ପରମେଶ୍ୱର ସର୍ବଶକ୍ତିମାନ, ଏକ, ଏକବୃତ ଓ ଅଦ୍ୱିତୀୟ ।



# ରାମାୟଣ-ମହାଭାରତ କାଳ ଓ ମୂର୍ତ୍ତିପୂଜା

ରାମାୟଣ କେଉଁ କାଳର—ଏ ବିଷୟରେ ନାନା ମତ ଥିଲେ ସୁଦ୍ଧା, ତାହାକୁ ସମସ୍ତେ ମହାଭାରତ କାଳର ପୂର୍ବବର୍ତ୍ତୀ ବୋଲି ମାନନ୍ତି । ସେହି କାଳରେ ବୈଦିକ ମର୍ଯ୍ୟାଦା ଲୋପ ପାଇ ନ ଥିଲା, ତଥାପି ସମାଜରେ ମାଂସାହାର, ସୁରାପାନ ଆଦି ଆସୁରି ସ୍ୱଭାବର ସୂତ୍ରପାତ ହୋଇସାରିଥିଲା । ଦୁଷ୍ଟ ଲୋକେ ଋଷିମୁନିମାନଙ୍କ ଯଜ୍ଞ ସ୍ଥଳରେ ମାଂସାଦି ଅପବିତ୍ର ବସ୍ତୁ ନେଇ ବିଘ୍ନ ସୃଷ୍ଟି କରୁଥିଲେ । ବୈଦିକ ଯଜ୍ଞ ଓ ସଂସ୍କୃତି ରକ୍ଷା କରିବା ରାମାୟଣର ମୁଖ୍ୟ ବିଷୟବସ୍ତୁ ।

ରାମାୟଣ ବିଷୟକ ଉପଲବ୍ଧ ସମସ୍ତ ଗ୍ରନ୍ଥର ମୂଳ ହେଉଛି ଋଷି ବାଲ୍ମୀକିକୃତ ରାମାୟଣ । କିନ୍ତୁ ସେଥିରେ ମଧ୍ୟ ନାନା ଅପ୍ରାସଙ୍ଗିକ କଥା, ଅସମ୍ଭବ ଘଟଣା ଦେଖିବାକୁ ମିଳେ । ପୁନଶ୍ଚ ବମ୍ବେ ପ୍ରକାଶିତ ବାଲ୍ମୀକି ରାମାୟଣରେ ବଙ୍ଗ ପ୍ରକାଶିତ ଗ୍ରନ୍ଥଠାରୁ ଗୋଟିଏ କାଣ୍ଡ (ଉତ୍ତରକାଣ୍ଡ), ୯୩ ସର୍ଗ ଓ ୪୭୩୫ ଶ୍ଳୋକ ଅଧିକ ମୁଦ୍ରିତ ହୋଇଛି । ପ୍ରସିଦ୍ଧ ଇଟାଲିୟ ପଣ୍ଡିତ ଗୋରସିଓ ଉତ୍ତରକାଣ୍ଡକୁ ଅନୁବାଦ କରି ନାହାନ୍ତି । ରାଜା ଭୋଜଙ୍କ ସମୟରେ ଲିଖିତ ଚଂପୂ ରାମାୟଣରେ ମଧ୍ୟ ଉତ୍ତରକାଣ୍ଡ ନାହିଁ । ବିଭିନ୍ନ ପ୍ରମାଣରୁ ଜଣାଯାଏ ଯେ ଉତ୍ତରକାଣ୍ଡ ପରବର୍ତ୍ତୀ ମିଶ୍ରଣ ।

ମନୁସ୍ମୃତି ପରି ରାମାୟଣରେ ମଧ୍ୟ ମାଂସାହାର ଓ ପଶୁବଳି ବିଷୟରେ ଅନେକ ଶ୍ଳୋକ ବାମମାର୍ଗୀ ତାନ୍ତ୍ରିକମାନେ ପ୍ରକ୍ଷେପ

କରିଛନ୍ତି । ଏହା ସତ୍ତ୍ୱେ ରାମାୟଣରେ ମୂର୍ତ୍ତିପୂଜା ସମ୍ବନ୍ଧରେ ବର୍ଣ୍ଣନା ନାହିଁ । ତେଣୁ ବୌଦ୍ଧ-ଜୈନ କାଳ ପରେ ଭାରତରେ ପ୍ରତିମା ପୂଜାର ସୂତ୍ରପାତ ହୋଇଥିବା ଯୁକ୍ତି ନିରାଧାର ନୁହେ । ପରବର୍ତ୍ତୀ ସମୟରେ ମିଶ୍ରଣ କରାଯାଇଥିବା ଉତ୍ତରାକାଣ୍ଡର କେତୋଟି ସ୍ଥଳରେ ମୂର୍ତ୍ତିପୂଜାର ସଂକେତ ରହିଛି । ଯେପରି –

ଯତ୍ର ଯତ୍ର ସ୍ମ ଯାତିସ୍ମ ରାବଣୋ ରାକ୍ଷେଶ୍ୱରଃ ।
ଜାଂବୂନଦମୟଂ ଲିଙ୍ଗ ତତ୍ର ତତ୍ରସ୍ମ ନୀୟତେ ॥

ଅର୍ଥାତ୍—ରାବଣ ଯେଉଁଆଡ଼େ ଯାଉଥିଲେ, ନିଜ ସାଥିରେ ସୁବର୍ଣ୍ଣମୟ ଲିଙ୍ଗ ନେଇ ଯାଉଥିଲେ । ପୁଣି 'ବାଲୁକା ବେଦୀମଧ୍ୟେ ତୁ ତଲ୍ଲିଂଗଂ ସ୍ଥାପ୍ୟ ରାବଣଃ' ଅର୍ଥାତ୍ ବାଲୁକା ବେଦୀରେ ରାବଣ ଲିଙ୍ଗ ସ୍ଥାପନ କଲେ । ଏହି ଉଦ୍ଧରଣ ଉତ୍ତରକାଣ୍ଡରେ ଗୃହୀତ ଯାହା ମୂଳ ରାମାୟଣରେ ପରବର୍ତ୍ତୀ କାଳରେ ମିଶ୍ରଣ କରାଯାଇଛି । ରାବଣ ଋଷିଙ୍କ ସନ୍ତାନ ହୋଇ ସୁଦ୍ଧା ବେଦମାର୍ଗୀ ଥିବାରୁ ପରେ ବାମମାର୍ଗୀମାନେ ନିଜର ଶିବଲିଙ୍ଗ ପୂଜା ସହିତ ରାବଣକୁ ଯୋଡ଼ି ଦେଇଛନ୍ତି ।

ସେହି ସମୟରେ ଆର୍ଯ୍ୟମାନଙ୍କ ଅନୁସୃତ ବୈଦିକ ସନ୍ଧ୍ୟାବନ୍ଦନ ଓ ଅଗ୍ନିହୋତ୍ର (ହୋମ) ପ୍ରଚଳିତ ଥିଲା । ଏହି ବିଷୟରେ ବାଲ୍ମୀକି କୃତ ରାମାୟଣରେ ବହୁ ଦୃଷ୍ଟାନ୍ତ ମିଳେ—

ସ୍ନାତାଶ୍ଚ କୃତଜପ୍ୟାଶ୍ଚ ହୁତହବ୍ୟା ନରୋତ୍ତମ ॥
(ବାଳକାଣ୍ଡ, ସର୍ଗ ୧୮)

ଅର୍ଥାତ୍—ବିଶ୍ୱାମିତ୍ର ରାମଲକ୍ଷ୍ମଣଙ୍କୁ କହନ୍ତି—ଆମେ ସ୍ନାନ କରି ଜପ ଓ ହୋମ କରିବା ।

ତଥୈବ ଗଚ୍ଛତସ୍ତସ୍ୟ ବ୍ୟାପାଦ୍ରଜନୀ ଶିବା
ଉପାସ୍ୟ ତୁ ଶିବାଂ ସନ୍ଧ୍ୟା ବିଷୟ୍ମାନତ୍ୟ ଗାହତ ॥
(ଅଯୋଧ୍ୟା କାଣ୍ଡ, ସର୍ଗ ୪୯)

ଅର୍ଥାତ୍—ଶ୍ରୀରାମ ଆନନ୍ଦପୂର୍ବକ ରାତିଯାପନ କରି ପ୍ରାତଃ କାଳରେ ସଂଧ୍ୟାବନ୍ଦନ କଲେ ଓ ଅନ୍ୟ ଦେଶକୁ ପ୍ରସ୍ଥାନ କଲେ ।

ତତସ୍ତୀର୍ତ୍ତେ ପ୍ରସଙ୍ଗଃ ସନ୍ଧ୍ୟାମନ୍ୱାସ୍ୟ ପଶ୍ଚିମାମ୍ ।
ଜଳମେବାଦଦେ ଭୋଜ୍ୟଂ ଲକ୍ଷ୍ମଣେନାହୃତଂ ସ୍ୱୟମ୍ ॥

ଅର୍ଥାତ୍—ଶ୍ରୀରାମ ସାୟଂକାଳୀନ ସନ୍ଧ୍ୟା-ଉପାସନା କଲେ ଓ ଲକ୍ଷ୍ମଣ ଆଣିଥିବା ଜଳ ଗ୍ରହଣ କଲେ ।

ପ୍ରୟାମଭିତଃ ପଶ୍ୟ ସୌମିତ୍ରେ ଧୂମମୁତ୍ତମମ୍ ।
ଅଗ୍ନେର୍ଭଗବତଃ କେତୁଂ ମନ୍ୟେ ସଂନ୍ନିହିତୋ ମୁନିଃ ॥
(ଅଯୋଧ୍ୟା କାଣ୍ଡ, ସର୍ଗ ୫୪)

—ରାମ ଲକ୍ଷ୍ମଣଙ୍କୁ କହୁଛନ୍ତି—ପ୍ରୟାଗ ନିକଟରେ ଭଗବାନ ଅଗ୍ନିଙ୍କ ଧ୍ୱଜା, ସୁଗନ୍ଧିତ ଧୂମ—ଏଥିରୁ ପ୍ରଣୀତ ହେଉଛି ଯେ ମୁନି ଘରେ ଅଛନ୍ତି ।

ରଜନ୍ୟାଂ ସୁପ୍ରଭାତାୟାଂ ଭ୍ରାତରସ୍ତେ ସୁହୃଦ୍ୱୃତାଃ ।
ମନ୍ଦାକିନ୍ୟାଂ ହୁତଂ ଜପ୍ୟଂ କୃତ୍ୱା ରାମମୁପାଗମନ୍ ॥
(ଅଯୋଧ୍ୟା କାଣ୍ଡ, ସର୍ଗ ୧୦୫)

—(ଭରତ ଓ ଶତ୍ରୁଘ୍ନ) ରାତି ସାଉନ ପରେ ଦୁଇ ମିତ୍ରଙ୍କ ସହିତ ମନ୍ଦାକିନୀ ପାର ହୋଇ ସ୍ନାନ, ହୋମ ଓ ଜପ କରି ଶ୍ରୀରାମଙ୍କ ପାଖକୁ ଗଲେ ।

ବାସଂ ଚକ୍ରୁର୍ମୁନିଗଣାଃ ଶ୍ରୋଣାକୂଳେ ସମାହିତାଃ ।
ତେଽସ୍ତଂ ଗତେ ଦିନକରେ ସ୍ନାତ୍ୱା ହୁତ ହୁତାଶନାଃ ॥
(ବାଳ କାଣ୍ଡ, ସର୍ଗ ୩୧)

—ସୂର୍ଯ୍ୟାସ୍ତ ପରେ ମୁନିଗଣ ଅଗ୍ନିହୋତ୍ର କଲେ ।

ସଂଧ୍ୟାକାଳମନାଃ ଶ୍ୟାମା ଧ୍ରୁବମେଷ୍ୟତି ଜାନକୀ ।
ନଦୀଂ ଚେମାଂ ଶୁଭଜଲାଂ ସନ୍ଧ୍ୟାର୍ଥେ ବରବର୍ଣ୍ଣିନୀ ।
ଯଦି ଜୀବତି ସା ଦେବୀ ତାରାଧିପନିଭାନନା ।
ଆଗମିଷ୍ୟତି ସାଽବଶ୍ୟମିମାଂଶୀତଜଳାଂ ନଦୀମ୍ ॥
(ସୁନ୍ଦର କାଣ୍ଡ, ସର୍ଗ ୧୪)

—ହନୁମାନ ଅଶୋକବାଟିକାର ସରୋବର ନିକଟରେ ଭାବୁଛନ୍ତି—

—ସନ୍ଧ୍ୟା ସମୟରେ ସୀତାଦେବୀ ସନ୍ଧ୍ୟା ଉପାସନା ପାଇଁ ଶୁଭଜଳପୂର୍ଣ୍ଣ ନଦୀତଟକୁ ଆସିବେ । ଯଦି ସେ ଜୀବିତ ଅଛନ୍ତି, ତାହା ହେଲେ ଏହି ସୁରମ୍ୟ ସରୋବର ନିକଟକୁ ନିଶ୍ଚୟ ଆସିବେ ।

ଉପର୍ଯ୍ୟୁକ୍ତ ଉଦ୍ଧରଣରୁ ସ୍ପଷ୍ଟ ଜଣାଯାଏ ଯେ, ରାମାୟଣ କାଳରେ ପୂଜାପଦ୍ଧତିରେ ମୂର୍ତ୍ତିପୂଜା ସ୍ଥାନ ପାଇ ନ ଥିଲା ; ଲୋକେ ବୈଦିକ ସନ୍ଧ୍ୟା ଓ ଯଜ୍ଞ ଅନୁଷ୍ଠାନ କରୁଥିଲେ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ ସ୍ୱୟଂ ଶ୍ରୀରାମ ସଂଧ୍ୟା ଓ ଅଗ୍ନିହୋତ୍ରଦ୍ୱାରା ପୂଜାବିଧାନ କରୁଥିଲେ ଓ ତାଙ୍କର ଭକ୍ତମାନେ ଶ୍ରୀରାମଙ୍କ ପ୍ରତିମା ନିର୍ମାଣ କରି ପୂଜା କରୁଛନ୍ତି । ଏହା ଶ୍ରୀରାମଙ୍କ ଉପଦେଶର ବିପରୀତ ଅଟେ । ବୌଦ୍ଧମାନେ ନାସ୍ତିକ ; ତେଣୁ ସେମାନେ ବୁଦ୍ଧମୂର୍ତ୍ତି ନିର୍ମାଣ କରି ପ୍ରତିମା ପୂଜାର ସୂତ୍ରପାତ କଲେ । ପରନ୍ତୁ ଆସ୍ତିକ ସମାଜରେ ଏହି ଘଟଣା ଶୋଭନୀୟ ନୁହେଁ ।

ତୁଳସୀ ରାମାୟଣର କେତେକ ସ୍ଥଳରେ ମୂର୍ତ୍ତିପୂଜାର ବର୍ଣ୍ଣନା ତୁଳସୀଦାସଙ୍କ ନିଜ ଚରିତ୍ରର ପ୍ରତିବିମ୍ବ । ତାହା ସମ୍ଭବତ ବାଲ୍ମୀକି ରାମାୟଣର ସମ୍ବନ୍ଧ ନାହିଁ । ପୌରାଣିକ କାଳରେ ଏକ ପରମାତ୍ମାଙ୍କ ବିଭିନ୍ନ ନାମକୁ ନେଇ ବିଭିନ୍ନ ପରମାତ୍ମାଙ୍କ କଳ୍ପନା କରାଗଲା । ତୁଳସୀଦାସ ସ୍ୱୟଂ ବୈଷ୍ଣବ ଓ ମୂର୍ତ୍ତିପୂଜକ ଥିଲେ । ତୁଳସୀଙ୍କ ବର୍ଣ୍ଣିତ ସ୍ୱୟଂବର ପୂର୍ବରୁ ସୀତାଙ୍କ ଦେବୀ ଆରାଧନା, ସେତୁବନ୍ଧ ନିର୍ମାଣ ସମୟରେ ଶ୍ରୀରାମଙ୍କଦ୍ୱାରା ରାମେଶ୍ୱରଠାରେ ଶିବଲିଙ୍ଗସ୍ଥାପନା ବାଲ୍ମୀକି ରାମାୟଣରେ ନାହିଁ । ବାଲ୍ମୀକି ରାମାୟଣରେ ଉଲ୍ଲେଖ ଅଛି ଯେ ବିମାନ ଯୋଗେ ଲଙ୍କା ବିଜୟ ସାରି ଫେରିବା ସମୟରେ ସେତୁବଂଧ ନିକଟରେ ଶ୍ରୀରାମ ମାତା ସୀତାଙ୍କୁ ସଂକେତ କରି କହିଥିଲେ ଯେ ମହାଦେବଙ୍କ କୃପାରୁ ସମସ୍ତ କାର୍ଯ୍ୟ ସମ୍ପାଦନ କଲେ । ମହାନ୍ ଦେବ ପରମାତ୍ମା ହିଁ ମହାଦେବ । ସମ୍ଭବତଃ ତୁଳସୀଦାସ ଏଥିରୁ ଶିବଲିଙ୍ଗ ସ୍ଥାପନ କଳ୍ପନା କରିଥିଲେ ।

ମୂର୍ତ୍ତିପୂଜା ହିଁ ଅବତାର କଳ୍ପନାର ସମ୍ବନ୍ଧ ରହିଛି । ବାଲ୍ମୀକି ରାମାୟଣରେ ଶ୍ରୀରାମଙ୍କୁ ଈଶ୍ୱରଙ୍କ ଅବତାର ଭାବରେ ବର୍ଣ୍ଣନା କରା ଯାଇନାହିଁ । ସେ ଉତ୍ତମ ପୁରୁଷ ପୁରୁଷୋତ୍ତମ । ସ୍ୱୟଂ ଶ୍ରୀରାମ ଅନେକ ସ୍ଥଳରେ ନିଜକୁ ମନୁଷ୍ୟ ବୋଲି ଉଦ୍‌ଘୋଷିତ କରିଛନ୍ତି—

> ଯା ତ୍ୱଂ ବିରହିତା ନୀତା ଚଳଚିତ୍ତେନ ରକ୍ଷସା ।
> ଦୈବୋ ସଂପାଦିତୋ ଦୋଷୋ ମାନୁଷେଣ ମୟା ଜିତଃ ।
> (ଯୁଦ୍ଧକାଣ୍ଡ)

—ହେ ସୀତେ ! ଚଞ୍ଚଳଚିତ୍ତ ରାବଣ ତୁମକୁ ହରଣ କରିଥିଲା । ଏହା ଦୈବକୃତ ଦୋଷ । ମନୁଷ୍ୟ ଭାବରେ ଯାହା କର୍ତ୍ତବ୍ୟ, ତାହା କରି ମୁଁ ତୁମକୁ ଉଦ୍ଧାର କଲି ।

ଯତ୍ କର୍ତ୍ତବ୍ୟଂ ମନୁଷ୍ୟେଣ ଧର୍ଷଣା ପ୍ରତିମାର୍ଜିତା ।
ତତ୍ କୃତଂ ରାବଣଂ ହତ୍ୱା ମୟେଦଂ ମାନକାଂକ୍ଷିଣା ॥
(ଯୁଦ୍ଧକାଣ୍ଡ, ସର୍ଗ ୧୧୫)

—ଶତ୍ରୁଦ୍ୱାରା ଅପମାନିତ ହୋଇ ମନୁଷ୍ୟ ଯେଉଁ ପ୍ରତିକାର କରେ, ରାବଣକୁ ହତ୍ୟା କରି ମୁଁ ସେ ସମ୍ମାନ ରକ୍ଷା କଲି ।

ଆତ୍ମାନଂ ମାନୁଷଂ ମନ୍ୟେ ରାମଂ ଦଶରଥାତ୍ମଜମ୍ ॥
(ଯୁଦ୍ଧକାଣ୍ଡ, ସର୍ଗ ୧୧୭)

—ମୁଁ ନିଜକୁ ମନୁଷ୍ୟ ବିଚାରେ । ମୁଁ ଦଶରଥ ପୁତ୍ର ରାମ ।

ନାରଦ ମୁନି ଶ୍ରୀରାମଙ୍କ ଗୁଣ ବର୍ଣ୍ଣନା କରି କହିଥିଲେ—

ଆର୍ଯ୍ୟଃ ସର୍ବସମଶ୍ଚୈବ ସଦୈକ ପ୍ରିୟଦର୍ଶନଃ ।
ସ ଚ ସର୍ବଗୁଣୋପେତଃ କୌଶଲ୍ୟାନନ୍ଦବର୍ଦ୍ଧନଃ ॥
ସମୁଦ୍ର ଇବ ଗାଂଭୀର୍ଯ୍ୟେ ଧୈର୍ଯ୍ୟେଣ ହିମବାନିବ ।
ବିଷ୍ଣୁନା ସଦୃଶୋ ବୀର୍ଯ୍ୟେ ସୋମବତ୍ ପ୍ରିୟଦର୍ଶନଃ ॥
(ବାଳକାଣ୍ଡ, ସର୍ଗ ୧)

—ଶ୍ରୀରାମ ଆର୍ଯ୍ୟ (ଶ୍ରେଷ୍ଠ), ସମଦର୍ଶୀ, ମାତା କୌଶଲ୍ୟାଙ୍କ ଆନନ୍ଦବର୍ଦ୍ଧକ, ଗମ୍ଭୀରତାରେ ସମୁଦ୍ରସଦୃଶ, ଧୈର୍ଯ୍ୟରେ ହିମାଳୟ ସଦୃଶ, ପରାକ୍ରମରେ ବିଷ୍ଣୁସଦୃଶ, ସୌନ୍ଦର୍ଯ୍ୟରେ ଚନ୍ଦ୍ରସଦୃଶ ।

ସୀତାହରଣ ପରେ ଶ୍ରୀରାମ ଯେପରି ବିଳାପ କରୁଥିଲେ ଓ ବେଳେବେଳେ ବ୍ୟାକୁଳ ହୋଇ ଉଠୁଥିଲେ, ସେଥିରୁ ତାହାଙ୍କ ମନୁଷ୍ୟୋଚିତ ଗୁଣ ପ୍ରତିଫଳିତ ହୁଏ । ବାଲ୍ମୀକି ରାମାୟଣରେ ଅତ୍ୟନ୍ତ କରୁଣାଜନକ ବର୍ଣ୍ଣନା ଦେଖିବାକୁ ମିଳେ—

ଏବଂ ସ ବିଳପନ୍ ରାମଃ ସୀତାହରଣକର୍ଷିତଃ ।
ଦୀନଃ ଶୋକସମାବିଷ୍ଟୋ ମୁହୂର୍ତ୍ତଂ ବିହ୍ୱଳୋଽଭବତ୍ ॥
ସନ୍ତପ୍ତୋ ହ୍ୟବସନ୍ନାଙ୍ଗୋ ଗତବୁଦ୍ଧିର୍ବିଚେଷ୍ଟିତଃ ।
ନିଷସାଦାତୁରୋ ଦୀନୋ ନିଃଶ୍ୱସ୍ୟାଶୀତମାୟତମ୍ ॥
(ଆ: କାଣ୍ଡ, ସର୍ଗ ୫୯)

—ଏହିପ୍ରକାରେ ବିଳାପ କରି ସୀତାହରଣରେ ଦୁଃଖୀ ରାମ କିଛି ସମୟ ବ୍ୟାକୁଳ ହେଲେ । ଆତୁର ହୋଇ ଦୀର୍ଘଶ୍ୱାସ ନେଇ ବସି ପଡ଼ିଲେ ।

ଏଠାରେ ବିସ୍ତାର ଭୟରେ ଅଧିକ ବର୍ଣ୍ଣନା କରାଯାଉ ନାହିଁ । ପରେ ପରେ କୁହାଯାଇଛି—କାମ ଓ ମୋହରେ ପୀଡ଼ିତ ଶ୍ରୀରାମ ଲକ୍ଷ୍ମଣଙ୍କୁ ଦୁଃଖୀ କରି ସ୍ୱୟଂ ଦୁଃଖରେ ମଗ୍ନ ହେଲେ । ପୃଥିବୀରେ ମୋ ସମାନ ଅଶୁଭକର୍ମା କେହି ନାହିଁ ବୋଲି ମୁହ୍ୟମାନ ହେଲେ । ମୋତେ ଦୁଃଖ ପରେ ଦୁଃଖ ମାଡ଼ି ଆସୁଛି ବୋଲି ପ୍ରଳାପ କରି କହିଲେ—ଏହା ମୋର କର୍ମଫଳ ; ହେ ଲକ୍ଷ୍ମଣ ! ରାଜ୍ୟନାଶ, ଗୃହତ୍ୟାଗ, ପିତାଙ୍କ ମରଣ, ମାତାଙ୍କ ବିୟୋଗ—ଏ ସବୁ ମୋର ଶୋକର ପାରାବାର ନାହିଁ ।

ଏହାପରେ ଶ୍ରୀରାମ ସୀତାଙ୍କ ସମ୍ବନ୍ଧରେ ନାନା ଆଶଂକା ପ୍ରକାଶ କରୁଛନ୍ତି—ସମ୍ଭବତଃ ରାକ୍ଷସଗଣ ସୀତାଙ୍କୁ ବଧ କରିଛନ୍ତି । ମୃତ ଜଟାୟୁକୁ ଦେଖି କହୁଛନ୍ତି, ହୁଏତ ସେ ସୀତାଙ୍କୁ ଭକ୍ଷଣ କରି ସୁଖପୂର୍ବକ ପଡ଼ି ରହିଛି—ଏସବୁ ବିଷୟରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ଶ୍ରୀରାମ ମନୁଷ୍ୟ ଥିଲେ । ବିଳାପ, ଆଶଂକା, ଦୁଃଖ, ସନ୍ଦେହ ଇତ୍ୟାଦି ଭାବନା ଶ୍ରୀରାମଙ୍କୁ ଈଶ୍ୱରଙ୍କ ଅବତାର ସିଦ୍ଧ କରେ ନାହିଁ । ଋଷି ବାଲ୍ମୀକିଙ୍କ ସମୟରେ ଶ୍ରୀରାମଙ୍କୁ କେହି ଈଶ୍ୱରଙ୍କ ଅବତାର ମାନୁ ନ ଥିଲେ । ତା' ହୋଇ ଥିଲେ ଏଭଳି ବର୍ଣ୍ଣନା ରାମାୟଣରେ କିଭଳି ଦେଖାଯାନ୍ତା ।

ପ୍ରକୃତ ପକ୍ଷରେ 'ଈଶ୍ୱର ଅବତାର ନଅନ୍ତି'—ଏହି କଳ୍ପନା ବହୁ କାଳ ପରେ ପୌରାଣିକ ଯୁଗରେ କଳ୍ପିତ ଓ ପ୍ରଚାରିତ ହେଲା । ବୈଷ୍ଣବ ସଂପ୍ରଦାୟର ଉତ୍ପତ୍ତି ଓ ପ୍ରସାର ଫଳରେ ଅବତାରବାଦ ଜନ୍ମଲାଭ କଲା । ଈଶ୍ୱରଙ୍କ ମନୁଷ୍ୟ ସ୍ତରକୁ ଆଣି ତାଙ୍କ ପାଇଁ ପୁତ୍ର କନ୍ୟା, ବାହନ ଆଦି ଯୋଜନା କରାଗଲା । ଏହା ଈଶ୍ୱର ପୂଜା ତ ନୁହେଁ ବରଂ ଈଶ୍ୱରଙ୍କ ପ୍ରତି ଅପମାନ । ଅନ୍ୟ ପକ୍ଷରେ ଶ୍ରୀରାମଙ୍କ ପରି ଐତିହାସିକ ମହାପୁରୁଷଙ୍କ ଆଦର୍ଶ ଗ୍ରହଣ କରିବା ପାଇଁ ସାଧାରଣ ଲୋକଙ୍କୁ ସୁଯୋଗ ମିଳିଲା ନାହିଁ ; କାରଣ ସେମାନେ ଭାବିଲେ ଯେ ଶ୍ରୀରାମ ଆଦି ସ୍ୱୟଂ ଈଶ୍ୱର ; ତାହାଙ୍କ ଅନୁକରଣ ଅସମ୍ଭବ । ଏହି ବିଚାର ଫଳରେ ଆମର ଯେଉଁ ନୈତିକ ହାନି ଘଟିଲା, ତାହା କଳ୍ପନା କରାଯାଇ ନ ପାରେ ।

ରାମାୟଣର ବହୁ କାଳ ଅତୀତ ହେବା ପରେ ମହାଭାରତ ଯୁଦ୍ଧ ଘଟିଥିଲା । ମହାଭାରତ କାଳ ଆଜଠାରୁ ପ୍ରାୟ ପାଞ୍ଚ ସହସ୍ର ବର୍ଷ ପୂର୍ବବର୍ତ୍ତୀ ବୋଲି ଗଣନା କରାଯାଏ । ରାମାୟଣ କାଳରେ ଲୋକେ ବୈଦିକ ମର୍ଯ୍ୟାଦା ପାଳନ କରୁଥିବା ବେଳେ ମହାଭାରତ ବେଳକୁ ସେ ସବୁର ଅବହେଳା ଆରମ୍ଭ ହୋଇ ଯାଇଥିଲା । ତପ, ତ୍ୟାଗ ତଥା ଧ୍ୟାନ ବଦଳରେ ଭୋଗବିଳାସ ବୃଦ୍ଧି ପାଇଲା । ଧର୍ମରାଜ କୁହା ଯାଉଥିବା ଯୁଧିଷ୍ଠିରଙ୍କ ପରି ରାଷ୍ଟ୍ରର ନେତୃସ୍ଥାନୀୟ ବ୍ୟକ୍ତିମାନେ ମଧ୍ୟ ଜୁଆ ଖେଳକୁ ପ୍ରଶ୍ରୟ ଦେଉଥିଲେ ।

ମହାଭାରତ ଗ୍ରନ୍ଥରେ ରାମାୟଣଠାରୁ ଅଧିକ ମାତ୍ରାରେ ମିଶ୍ରଣ ଦେଖିବାକୁ ମିଳେ । ମହର୍ଷି ବେଦବ୍ୟାସ ରଚନା କରିଥିବା ଗ୍ରନ୍ଥ ଆଜିକାଲି ବହୁଗୁଣିତ ହୋଇ ଯାଇଛି । ମହାଭାରତର ଆଦି ପର୍ବରେ କୁହାଯାଇଛି—

ଚତୁର୍ବିଂଶତି ସାହସ୍ରୀଂ ଚକ୍ରେ ଭାରତସଂହିତାମ୍ ।
ଉପାଖ୍ୟାନୈର୍ବିନା ତାବଦ୍ ଭାରତଂ ପ୍ରୋଚ୍ୟତେ ବୁଧୈଃ ॥
(ଆଦିପର୍ବ ୧, ୧୦୧)

ଅର୍ଥାତ୍ —ମହର୍ଷି ବ୍ୟାସ ଚବିଶ ହଜାର ଶ୍ଲୋକବିଶିଷ୍ଟ ଭାରତସଂହିତା ରଚନା କରିଥିଲେ । ଉପାଖ୍ୟାନଗୁଡ଼ିକୁ ଛାଡ଼ି ଏହାକୁ ଜ୍ଞାନୀ ଜନ ଭାରତ ବୋଲି କହନ୍ତି ।

ଆଦିପର୍ବର ଆଉ ଏକ ଶ୍ଲୋକରେ ସଂପୂର୍ଣ୍ଣ ଶ୍ଲୋକସଂଖ୍ୟାକୁ ୮୮୦୦ ବୋଲି କୁହାଯାଇଛି—'ଅଷ୍ଟୌ ଶ୍ଲୋକସହସ୍ରାଣି ଅଷ୍ଟୌ ଶ୍ଲୋକଶତାନି ଚ । ଅହଂ ବେଦ୍ମି ଶୁକୋ ବେତ୍ତି ସଂଜୟୋ ବେତ୍ତି ବା ନ ବା ॥' (ଆଦିପର୍ବ ୧, ୮୧) । ତେଣେ ସୂତ ଉଗ୍ରଶ୍ରବା କହୁଛନ୍ତି—ଏକଶତ ସହସ୍ରନ୍ତୁ ମୟୋକ୍ତାଂ ବୈ ନିବୋଧତ' (ଆଦିପର୍ବ ୧,୧୦୭) ଅର୍ଥାତ୍ ଏକ ଲକ୍ଷ ଶ୍ଲୋକ ମୋ ଦ୍ୱାରା ରଚିତ ବୋଲି ଭାବ । ସୂତରାଂ ବ୍ୟାସଙ୍କ ପ୍ରଶିଷ୍ୟଙ୍କ ବେଳକୁ ଗ୍ରନ୍ଥରେ ଏତେ ମିଶ୍ରଣ ଘଟିଥିଲା । ସ୍ୱାମୀ ଦୟାନନ୍ଦଙ୍କ କୃତ 'ସତ୍ୟାର୍ଥପ୍ରକାଶ'ରେ ଉଲ୍ଲେଖ ଅଛି ଯେ ରାଜା ଭୋଜଙ୍କ ଲିଖିତ ସଂଜୀବନୀ ଇତିହାସ ଅନୁସାରେ ମହାଭାରତ ଶ୍ଲୋକ ସଂଖ୍ୟା ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଥିଲା । ସେଥିରେ ଲେଖାଅଛି ଯେ ବ୍ୟାସ ୪୪୦୦ ଶ୍ଲୋକ ତଥା ତାଙ୍କର ଶିଷ୍ୟମାନେ ୫୬୦୦ ଶ୍ଲୋକ ଏହିପରି ଦଶହଜାର ଶ୍ଲୋକରେ ଭାରତ ରଚନା କରିଥିଲେ । ତାହା ମହାରାଜ ବିକ୍ରମାଦିତ୍ୟଙ୍କ ସମୟରେ ୨୦,୦୦୦; ରାଜା ଭୋଜଙ୍କ ପିତାଙ୍କ ସମୟରେ ୨୫୦୦୦; ତଥା ରାଜା ଭୋଜଙ୍କ ସମୟରେ ୩୦,୦୦୦ ଶ୍ଲୋକରେ ପହଞ୍ଚି ଥିଲା । ଗରୁଡ଼ ପୁରାଣରେ ମଧ୍ୟ ମୂଳ ମହାଭାରତର ଶ୍ଲୋକ ସଂଖ୍ୟା ଛଅ ହଜାର ବୋଲି ଉଲ୍ଲେଖ ଅଛି ।

ଉପର୍ଯ୍ୟୁକ୍ତ ପ୍ରମାଣରୁ ସିଦ୍ଧ ହୁଏ ଯେ ବ୍ୟାସଙ୍କଦ୍ୱାରା ରଚିତ 'ଜୟ' କାବ୍ୟ କ୍ରମଶଃ 'ଭାରତ' ଓ ପରେ 'ମହାଭାରତ' ନାମରେ ଖ୍ୟାତ

ହେଲା ଓ ମୂଳ କାବ୍ୟରେ ଧୀରେ ଧୀରେ ବହୁ ବିଷୟ ମିଶ୍ରିତ ହେଲା । ଶ୍ରୀମଦ୍ ଭଗବଦ୍‌ଗୀତା ମହାଭାରତର ଏକ ଅଂଶ ବିଶେଷ । ଶଙ୍କରା-ଚାର୍ଯ୍ୟଙ୍କ ଭାଷ୍ୟ ପୂର୍ବରୁ ଏହା ମହାଭାରତଠାରୁ ପୃଥକ୍ ରୂପରେ ଖ୍ୟାତି ଲାଭ କରି ନ ଥିଲା । ଗୀତାରେ ମଧ୍ୟ ଅନେକ ଶ୍ଳୋକ ପ୍ରକ୍ଷିପ୍ତ ହୋଇଛି ବୋଲି କୁହାଯାଏ । ପଣ୍ଡିତମାନେ ମତ ଦିଅନ୍ତି ଯେ ଯୁଦ୍ଧକ୍ଷେତ୍ରରେ ଏତେ ଗୁଡ଼ିଏ ଶ୍ଳୋକ କହିବା ସମ୍ଭବ ନ ଥିଲା ।

ଏସବୁ ଲେଖିବାର ତାତ୍ପର୍ଯ୍ୟ ହେଉଛି ଯେ ନାନା ମିଶ୍ରଣ ସତ୍ତ୍ୱେ ମହାଭାରତ ଓ ଗୀତାରେ ମୂର୍ତ୍ତିପୂଜା ବିଷୟରେ କିଛି ଉଲ୍ଲେଖ ନାହିଁ । ଅଧିକନ୍ତୁ ମହାଭାରତରେ ଲେଖା ଅଛି —

ମୃଚ୍ଛିଲା ଧାତୁଦାର୍ବାଦି ମୂର୍ତ୍ତାବୀଶ୍ୱର ବୁଦ୍ଧୟଃ ।
କ୍ଲିଶ୍ୟନ୍ତି ତପସା ମୂଢ଼ାଃ ପରାଂ ଶାନ୍ତି ନ ଯାଂନ୍ତି ତେ ॥

ଅର୍ଥାତ୍ ମୂର୍ଖ ଲୋକେ ମାଟି, ପଥର, ଧାତୁ ଅଥବା କାଷ୍ଠର ମୂର୍ତ୍ତିକୁ ଈଶ୍ୱର ମଣନ୍ତି । ଏଭଳି ଲୋକେ ଶାନ୍ତି ଲାଭ କରନ୍ତି ନାହିଁ ।

ପ୍ରସିଦ୍ଧ ଐତିହାସିକ ରାୟବାହାଦୁର ଚିନ୍ତାମଣି ବିନାୟକ ବୈଦ୍ୟ ନିଜ ପ୍ରଣୀତ 'ଭରତ ମୀମାଂସା'ରେ ଲେଖିଛନ୍ତି ଯେ ମହାଭାରତ କାଳ ସୁଦ୍ଧା ମୂର୍ତ୍ତିପୂଜା ଆରମ୍ଭ ହୋଇନଥିଲା । ସେ ଲେଖିଛନ୍ତି— ମହାଭାରତରୁ ସ୍ପଷ୍ଟ ଜଣାଯାଏ ଯେ ରାମାୟଣ କାଳରେ ଈଶ୍ୱର-ଉପାସନା ପାଇଁ ଶ୍ରୀରାମ, ଲକ୍ଷ୍ମଣ ଆଦି ଯେପରି ସନ୍ଧ୍ୟା-ବନ୍ଦନ କରୁଥିଲେ ଶ୍ରୀକୃଷ୍ଣାଦି ମହାପୁରୁଷ ମହାଭାରତ କାଳରେ ସେହି ବୈଦିକ ପ୍ରଥା ଅନୁସରଣ କରିଥିଲେ—

ପ୍ରାତରୁତ୍ଥାୟ କୃଷ୍ଣସ୍ତୁ କୃତବାନ୍ ସର୍ବମାହ୍ନିକମ୍ ।
ବ୍ରାହ୍ମଣୈରଭ୍ୟନୁଜ୍ଞାତୋ ପ୍ରଯଯୌ ନଗରଂ ପ୍ରତି ॥
(ଉଦ୍ୟୋଗ ପର୍ବ, ଅଧ୍ୟାୟ ୧୩)

—ଯୁଦ୍ଧ ସମୟରେ ଯୋଦ୍ଧାମାନେ ମଧ୍ୟ ପ୍ରାତଃକାଳ ଓ ସାୟଂକାଳରେ ସୂର୍ଯ୍ୟଉପାସନା ତଥା ସନ୍ଧ୍ୟା-ବନ୍ଦନା କରୁଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଥରେ ରାତ୍ରି କାଳରେ ମଧ୍ୟ ଯୁଦ୍ଧ ହେଲା । ପ୍ରାତଃକାଳ ହେବା ପରେ ପରେ ଯୁଦ୍ଧ-ବିରାମ ଘୋଷିତ ହେଲା ଓ ସମସ୍ତ ଯୋଦ୍ଧା ରଣାଙ୍ଗନରେ ସୂର୍ଯ୍ୟ-ଉପାସନା ଓ ସନ୍ଧ୍ୟା-ଉପାସନା କଲେ । ସେହିପରି ସାୟଂ କାଳରେ ମଧ୍ୟ ସମସ୍ତେ ସନ୍ଧ୍ୟା-ବନ୍ଦନା କରୁଥିଲେ ।

ସେହି କାଳରେ ଅଗ୍ନିହୋତ୍ର ବା ହୋମ ଆହ୍ନିକ ବିଧାନ ଥିଲା । ଯୁଧିଷ୍ଠିର ପ୍ରାତଃକାଳୀନ ସନ୍ଧ୍ୟା ସାରି ଯଜ୍ଞଶାଳାରେ ଅଗ୍ନିପ୍ରଜ୍ୱଳନ କରି ଆହୁତି ଦେବା ବର୍ଣ୍ଣିତ ହୋଇଛି—

ସମିଦ୍ଭିଷ୍ଟ ପବିତ୍ରାଭିରଗ୍ନିମାହୁତିଭିସ୍ତଦା ।
ମଂତ୍ରପୂତାଭିରର୍ଚ୍ଚିତ୍ୱା ନିଶ୍ଚକ୍ରାମ ତତୋ ଗୃହାତ୍ ॥

ସେହିପରି ଉଦ୍ୟୋଗ ପର୍ବ ଅଶୀତମ ଅଧ୍ୟାୟରେ କୁହାଯାଇଛି—

କୃତ୍ୱା ପୌର୍ବାହ୍ଣିକଂ କୃତ୍ୟଂ ସ୍ନାତଃ ଶୁଚିରଲଂକୃତଃ ।
ଉପତସ୍ଥେ ବିବସ୍ୱତଂ ପାବକଂ ଚ ଜନାର୍ଦ୍ଦନଃ ॥

—ଅର୍ଥାତ୍ ଶ୍ରୀକୃଷ୍ଣ ହସ୍ତିନାପୁର ମାର୍ଗରେ ସନ୍ଧ୍ୟା-ଉପାସନା ଓ ଅଗ୍ନିହୋତ୍ର ଅନୁଷ୍ଠାନ କଲେ ।

ମୂର୍ତ୍ତିପୂଜା ସମ୍ବନ୍ଧରେ ବୈଦ୍ୟ ମହାଶୟ ଲେଖିଛନ୍ତି —'ସନ୍ଧ୍ୟା ଓ ଅଗ୍ନିହୋତ୍ର ଛଡ଼ା ଶ୍ରୀକୃଷ୍ଣ, ଯୁଧିଷ୍ଠିର ଆଦି ବୀରମାନେ କୌଣସି ଦେବତାଙ୍କ ଧାତୁମୟୀ ବା ପାଷାଣମୟୀ ମୂର୍ତ୍ତିର ପୂଜା କରିବା ବିଷୟ ମହାଭାରତରେ ବର୍ଣ୍ଣିତ ନାହିଁ । ଏଥିରୁ ସ୍ପଷ୍ଟ ହୁଏ ଯେ ମହାଭାରତ କାଳ ସୁଦ୍ଧା ମୂର୍ତ୍ତିପୂଜା ବୈଦିକ ଆରାଧନାରେ ସମାବିଷ୍ଟ ହୋଇ ନ ଥିଲା । ଗୃହ୍ୟସୂତ୍ର ଗ୍ରନ୍ଥମାନଙ୍କରେ ମଧ୍ୟ ଦେବତାଙ୍କ ପ୍ରତିମା କଳ୍ପନା କରି ପୂଜାର ବିଧାନ ସଂକେତ ହୋଇ ନାହିଁ । ମୂର୍ତ୍ତିପୂଜା ମହାଭାରତର ବହୁ

ବର୍ଷ ପରେ ପ୍ରଚଳିତ ହେଲା ।' ଏହା ପରେ ସେ ଲେଖିଛନ୍ତି—'ମହାଭାରତ ଗ୍ରନ୍ଥରେ ସୌର ଆଦି ଯେଉଁ ମିଶ୍ରଣ କଲେ, ସେଥିରେ ମୂର୍ତ୍ତିର ବର୍ଣ୍ଣନା ମିଳେ । ସେ କାଳରେ ମନ୍ଦିର ଓ ମୂର୍ତ୍ତି ଥିଲେ ସୁଦ୍ଧା ବୈଦିକ ଉପାସନା ବିଧିରେ ତାହାର ଅସ୍ତିତ୍ୱ ନ ଥିଲା ।' ଉପସଂହାରରେ ବୈଦ୍ୟ ମହାଶୟ ଲେଖିଛନ୍ତି—'ବୈଦିକ ଈଶ୍ୱର-ଭକ୍ତିର ମୁଖ୍ୟ କ୍ରିୟା ଥିଲା ସନ୍ଧ୍ୟା ଓ ଯଜ୍ଞ । ଭାରତ ଯୁଦ୍ଧର ପ୍ରାୟ ଦୁଇ ତିନି ହଜାର ବର୍ଷ ମଧ୍ୟରେ ଶିବ, ବିଷ୍ଣୁ ,ସ୍କନ୍ଦ ଓ ଦୁର୍ଗାଙ୍କ ପ୍ରତିମା ପୂଜା ପ୍ରଚଳିତ ହେଲା । ବୌଦ୍ଧ ସ୍ତୂପଗୁଡ଼ିକର ପୂଜା ଯାହା ମହାଭାରତରେ ନିଷିଦ୍ଧ କରାଯାଇଛି, ତାହା ପରବର୍ତ୍ତୀ ବୌଦ୍ଧକାଳର ମିଶ୍ରଣ ।'

କବିମାନଙ୍କର ଆଳଂକାରିକ ରଚନା ପରି ଶିଳ୍ପୀମାନଙ୍କ ଭାସ୍କର୍ଯ୍ୟ-ସ୍ଥାପତ୍ୟ ପ୍ରଶଂସନୀୟ । ପ୍ରାଚୀନ କାଳର ସରସ୍ୱତୀ, ଲକ୍ଷ୍ମୀ ଆଦି ଅଳଂକୃତ ରଚନା, ଅଧୁନିକ କାଳରେ ଭାରତମାତାଙ୍କ କଳ୍ପିତ ଚିତ୍ର ଏପରିକି ଦୈନିକରେ ପ୍ରକାଶିତ ବ୍ୟଙ୍ଗ ଚିତ୍ର କଳାକାରଙ୍କ କଳ୍ପନାର ପରିଣାମ । ଏଥିରେ ଦୋଷ ବା ହାନି ନାହିଁ । ପାଶ୍ଚାତ୍ୟ ଦେଶମାନଙ୍କରେ ମହାପୁରୁଷଙ୍କ ପ୍ରତିମୂର୍ତ୍ତି ଦେଖିବାକୁ ମିଳେ । କିନ୍ତୁ କେହି ସେଗୁଡ଼ିକର ପୂଜା, ମାର୍ଜନା ଓ ଅର୍ଚ୍ଚନା କରନ୍ତି ନାହିଁ । ମୂର୍ତ୍ତିର ପ୍ରାଣପ୍ରତିଷ୍ଠା କରି ତାକୁ ପରମାତ୍ମା ବିଗ୍ରହବାଦୀଙ୍କ ମୂର୍ତ୍ତିପୂଜା ଆରମ୍ଭ ହେଲା । ତଦ୍ୱାରା ଆତ୍ମୋନ୍ନତି ହେବା ପରିବର୍ତ୍ତେ ବିବିଧ ସାମାଜିକ ଓ ଧାର୍ମିକ ଅବନତି ଦେଖାଗଲା ।

ମହାଭାରତରେ କୁହାଯାଇଛି—

ଅଦୃଶ୍ୟଂ ସର୍ବରୂପଂ ତଦରସାଗନ୍ଧମବ୍ୟୟମ୍ ।
ଅଶରୀରଂ ଶରୀରେଷୁ ନିରୀକ୍ଷେତ ନିରିନ୍ଦ୍ରିୟମ୍ ॥
(ଶାନ୍ତିପର୍ବ ୨୩୯, ୧୭)

—ପରମାତ୍ମା ଶବ୍ଦ-ସ୍ପର୍ଶ-ରୂପ-ରସ-ଗନ୍ଧ ରହିତ, ଅବ୍ୟୟ, ସେହି ଅଶରୀରୀ ଓ ନିରବୟବଙ୍କୁ ଅନୁଭବ କର ।

ଶ୍ରୀମଦ୍ ଭଗବଦ୍‌ଗୀତାରେ ମୂର୍ତ୍ତିପୂଜା ଆଦି ଜଡ଼ ଉପାସନାର ଉଲ୍ଲେଖ ନାହିଁ । ଅପର ପକ୍ଷରେ ଅଗ୍ନିହୋତ୍ର, ତପ, ଯୋଗ, ସ୍ୱାଧ୍ୟାୟ ଆଦି କ୍ରିୟାର ବର୍ଣ୍ଣନା ରହିଛି । ସେଥିରେ କୁହାଯାଇଛି—

ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନତପଃ କ୍ରିୟାଃ ।
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାମ୍ ॥
(ଗୀତା ୧୭, ୨୪)

ବୈଦିକମାନେ ବିଧିପୂର୍ବକ ଓଁକାର ଉଚ୍ଚାରଣ କରି ଯଜ୍ଞ, ଦାନ, ତପ ଓ ଅନୁଷ୍ଠାନ କରନ୍ତି । ଏଠାରେ ଯଜ୍ଞ କହିଲେ ଅଗ୍ନି-ହୋତ୍ରକୁ ବୁଝାଏ, ଯେପରି

ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍ ।
ଅସଦିତ୍ୟୁଚ୍ୟତେ ପାର୍ଥ ନ ଚ ତତ୍ ପ୍ରେତ୍ୟ ନୋ ଇହ ॥
(ଗୀତା ୧୭, ୨୮)

ହେ ପାର୍ଥ ! ଅଶ୍ରଦ୍ଧାରେ ହୋମ, ଦାନ ଓ ତପ କରିବା ଅସତ୍ ଅଟେ ।

ସେହିପରି କୁହାଯାଇଛି—ଯଜ୍ଞ, ଦାନ ଓ ତପ କଦାପି ତ୍ୟାଜ୍ୟ ନୁହେଁ । ଏଗୁଡ଼ିକଦ୍ୱାରା ହିଁ ମନୁଷ୍ୟ ପବିତ୍ରତା ଲାଭ କରେ ।
(ଗୀତା ୧୮, ୫)

ପୁଣି ପରବର୍ତ୍ତୀ ସ୍ଥଳରେ ଏହି ଅଧ୍ୟାୟରେ କୁହାଯାଇଛି—

ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ ତଥାପ୍ନୋତି ନିବୋଧ ମେ
ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା ॥ ୫୦ ॥
ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟ ଚ ।
ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ ॥ ୫୧ ॥

ବିବିକ୍ତ ସେବୀ ଲଘ୍ୱାଶୀ ଯତ ବାକ୍‌କାୟ ମାନସଃ ।
ଧ୍ୟାନଯୋଗପରୋ ନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ ॥ ୫୨ ॥

ହେ ଅର୍ଜ୍ଜୁନ ! ଶୁଦ୍ଧ ଅନ୍ତଃକରଣଯୁକ୍ତ ବ୍ୟକ୍ତି ବ୍ରହ୍ମ ପ୍ରାପ୍ତ ହୁଏ । ସେହି ଜ୍ଞାନ-ନିଷ୍ଠା ସମ୍ବନ୍ଧରେ ମୋଠାରୁ ଶୁଣ । ଶୁଦ୍ଧ ବୁଦ୍ଧି ଲାଭ କରି ଆତ୍ମବଳଦ୍ୱାରା ବିଷୟଭୋଗ ଓ ରାଗଦ୍ୱେଷକୁ ତ୍ୟାଗ ପୂର୍ବକ ମନୁଷ୍ୟ ବ୍ରହ୍ମ ପ୍ରାପ୍ତ ହୁଏ । ଏକାନ୍ତ ସେବୀ,ମିତାହାରୀ, ଦେହ-ବାଣୀ ଓ ମନକୁ ସଂଯତ କରିଥିବା ବୈରାଗୀ ବ୍ରହ୍ମ ଲାଭ କରେ ।

କେତେକ ଭାଷ୍ୟକାର ଉଲ୍ଲିଖିତ 'ସିଦ୍ଧିଂପ୍ରାପ୍ତୋ' ଇତ୍ୟାଦି ଶ୍ଳୋକରୁ ମୂର୍ତ୍ତିପୂଜା ପ୍ରଥାକୁ ପ୍ରସ୍ତୁତ କରିଥିବାରୁ ଶଙ୍କରାଚାର୍ଯ୍ୟ ସେହି ଯୁକ୍ତିକୁ ଖଣ୍ଡନ କରି ଲେଖିଛନ୍ତି—'କେତେକ ପଣ୍ଡିତାଭିମାନୀ କହନ୍ତି ଯେ ନିରାକାର ଈଶ୍ୱର ବୁଦ୍ଧିଗମ୍ୟ ନୁହନ୍ତି । ଏଭଳି ଲୋକେ ଗୁରୁ ପରମ୍ପରା ରହିତ ଅଟନ୍ତି । ଏମାନେ ବେଦାନ୍ତ ଶୁଣି ନାହାନ୍ତି, ଏମାନଙ୍କର ବୁଦ୍ଧି ବାହ୍ୟ ବିଷୟରେ ଆସକ୍ତ ଏବଂ ନ୍ୟାୟାଦି ପ୍ରମାଣ ବିଷୟରେ ଏମାନେ କିଛି ସ୍ୱାଧ୍ୟାୟ କରି ନାହାନ୍ତି ।

ଏହି ପ୍ରକାରେ ନାନା ପ୍ରମାଣ ଓ ଉଦାହରଣ ମାଧ୍ୟମରେ ସିଦ୍ଧ ହୁଏ ଯେ ମହାଭାରତ କାଳ ପର୍ଯ୍ୟନ୍ତ ଯଜ୍ଞ-ତପ-ସ୍ୱାଧ୍ୟାୟ ଆଦି ବୈଦିକ ରୀତି ସମାଜରେ ପ୍ରଚଳିତ ଥିଲା ଓ ଭାରତବାସୀଙ୍କ ପୂଜା-ବିଧାନରେ ମୂର୍ତ୍ତିପୂଜା ସମାବିଷ୍ଟ ହୋଇ ନ ଥିଲା ।

—o—

# ମୂର୍ତ୍ତିପୂଜା ଓ
# ପୌରାଣିକ କାଳ

ମହାଭାରତ ଯୁଦ୍ଧ ପରେ ଆମ ଦେଶରେ ଘୋର ପତନ ଆରମ୍ଭ ହେଲା । ରାମାୟଣ କାଳରେ ଯଜ୍ଞାଗ୍ନିରେ ମାଂସ-ମଦିରା ପଡ଼ିଲେ, ଋଷିମାନେ ଯଜ୍ଞ ଭ୍ରଷ୍ଟ ହେଲା ବୋଲି କୁହାଯାଉଥିଲା । ପରବର୍ତ୍ତୀ ମହାଭାରତ କାଳରେ ପରବର୍ତ୍ତୀ ଯଜ୍ଞରେ ଗାଈ ଘୋଡ଼ା ଏପରିକି ମନୁଷ୍ୟମାନଙ୍କୁ ବଳି ଦେବାର ଘୃଣିତ ପ୍ରଥା ପ୍ରଚଳିତ ହେଲା । ଏହା ପରେ ତନ୍ତ୍ର, ପୁରାଣ ଆଦି ଗ୍ରନ୍ଥ ରଚିତ ହେଲା । ନରମୁଣ୍ଡଧାରୀ କାପାଳିକମାନେ ଲୋକଙ୍କୁ ଭୟଭୀତ କଲେ । ସର୍ବତ୍ର ବାମମାର୍ଗ ବ୍ୟାପିଗଲା । ତଥାପି ସେତେବେଳେ ମୂର୍ତ୍ତିପୂଜା ଆରମ୍ଭ ହୋଇ ନ ଥିଲା । ଯଜ୍ଞର ବିକୃତ ରୂପ ହିଁ ଦୃଷ୍ଟିଗୋଚର ହେଉଥିଲା । ସାମାଜିକ ଦୁରବସ୍ଥାର ପ୍ରତିକ୍ରିୟା ସ୍ୱରୂପ ଜୈନମତ ଓ ବୌଦ୍ଧମତ ପ୍ରଚଳିତ ହେଲା । ବୁଦ୍ଧଦେବଙ୍କ ନିର୍ବାଣରେ କିଛି କାଳ ପରେ ବିଦେଶୀମାନଙ୍କ ପ୍ରଭାବରୁ ବୌଦ୍ଧ ମୂର୍ତ୍ତି ନିର୍ମିତ ହେଲା । ପରେ ଆଦିଶଂକରାଚାର୍ଯ୍ୟ ବୈଦିକ ଧର୍ମର ପୁନଃପ୍ରଚାର ପାଇଁ କଠିନ ପ୍ରୟାସ କଲେ । ସେ ଉପନିଷଦ୍, ବେଦାନ୍ତଦର୍ଶନ ଓ ଗୀତା ଗ୍ରନ୍ଥର ଆଧାରରେ ମୂର୍ତ୍ତିପୂଜାକୁ ଖଣ୍ଡନ କଲେ । ବୌଦ୍ଧମତ ସହିତ ଏହି ପ୍ରଥାକୁ ଆମ ଦେଶରୁ ନିର୍ବାସନ କରିବା ପାଇଁ ଉଦ୍ୟମ କଲେ । ପରନ୍ତୁ ତାହା ବିଶେଷ ଫଳପ୍ରଦ ହେଲାନାହିଁ । ସ୍ୱରଚିତ 'ପରାପୂଜା' ପୁସ୍ତକରେ ଶଂକରାଚାର୍ଯ୍ୟ ମୂର୍ତ୍ତିପୂଜା ବିଷୟରେ ବିଶଦ୍ ଆଲୋଚନା କରିଛନ୍ତି—

ପୂର୍ଣ୍ଣସ୍ୟାବାହନଂ କୁତ୍ର ବା ସର୍ବାଧାରସ୍ୟ ବାସନମ୍ ।
ସ୍ୱଚ୍ଛସ୍ୟ ପାଦ୍ୟମର୍ଘ୍ୟଂଚ ଶୁଦ୍ଧସ୍ୟାଚମନଂ କୁତଃ ॥
ସର୍ବାଧାରୋ ନିରାଧାରଃ ସର୍ବବ୍ୟାପକ ଈଶ୍ୱରଃ ।
ପ୍ରାଣାଦି ପ୍ରେରକଶ୍ଚୈବ ଜୀବନେ ହେତୁରେବ ଚ ॥

ପୂରାଣବାକ୍ୟମ୍—

ଅଧମା ପ୍ରତିମା ପୂଜା ସ୍ତୋତ୍ରଜାପ୍ୟଂ ଚ ମଧ୍ୟମା ।
ଉତ୍ତମା ନିଗମା ପୂଜା ସୋଽହଂ ପୂଜା ମହାତ୍ମନଃ ॥
ତୀର୍ଥେଷୁ ପଶୁଯଜ୍ଞେଷୁ କାଷ୍ଠପାଷାଣ ମୃଣ୍ମୟେ ।
ପ୍ରତିମାୟାଂ ମନୋଯେଷାଂ ତେ ନରା ମୂଢ଼ଚେତସଃ ॥
ପାଷାଣୈର୍ନିଜସ୍ୱଂ ବଧ୍ୱା ଦେବଃ ପାଷାଣ ଏବ ଚ ।
ବ୍ରୂହି ପଣ୍ଡିତ ! ଦେବସ୍ତୁ କସ୍ମିନ୍ ସ୍ଥାନେ ସ ତିଷ୍ଠତି ॥
ସ୍ୱଗୃହେ ପାୟସଂ ତ୍ୟକ୍ତ୍ୱା ଭିକ୍ଷାମିଚ୍ଛତି ଦୁର୍ମତିଃ ।
ଶିଳାମୃତ୍‌ଦାରୁଚିତ୍ରେଷୁ ଦେବତା ବୁଦ୍ଧିକଳ୍ପିତା ॥
ନିର୍ମଳସ୍ୟ କୁତଃ ସ୍ନାନଂ ବସ୍ତ୍ରଂ ବିଶ୍ୱୋଦରସ୍ୟ ଚ ।
ନିରାଲମ୍ବସ୍ୟୋପବୀତଂ ଚ ରମ୍ୟସ୍ୟାଭରଣଂ କୁତଃ ॥
ନିର୍ଲେପସ୍ୟ କୁତୋ ଗନ୍ଧଂ ପୁଷ୍ପଂ ନିର୍ବାସନସ୍ୟ ଚ ।
ନିର୍ଗନ୍ଧସ୍ୟ କୁତୋ ଧୂପଂ ସ୍ୱପ୍ରକାଶସ୍ୟ ଦୀପକମ୍ ॥
ନିତ୍ୟତୃପ୍ତସ୍ୟ ନୈବେଦ୍ୟଂ ନିଷ୍କାମସ୍ୟ ଫଳଂ କୁତଃ ।
ତାମ୍ବୂଳଂ ଚ ବିଭୋଃ କୁତ୍ର ନିତ୍ୟାନନ୍ଦସ୍ୟ ଦକ୍ଷିଣା ॥
ସ୍ୱୟଂ ପ୍ରକାଶମାନସ୍ୟ କୁତୋ ନୀରାଜନଂ ବିଧିଃ ।
ପ୍ରଦକ୍ଷିଣୋହ୍ୟନନ୍ତସ୍ୟ ହ୍ୟଦ୍ୱିତୀୟସ୍ୟ କା ନତିଃ ॥
ଅନ୍ତର୍ବହିଶ୍ଚ ପୂର୍ଣ୍ଣସ୍ୟ କଥମୁଦ୍‌ବାସନଂ ଭବେତ୍ ।
ଇତ୍ୟେତମେବ ପରାପୂଜା ଶଂଭୋଃ ସତ୍ୟପରାୟଣଃ ॥

ଦେହୋ ଦେବାଳୟଃ ପ୍ରୋକ୍ତୋ ଜୀବୋ ଦେବଃ ସନାତନଃ ।
ତ୍ୟଜେଦଜ୍ଞାନନିର୍ମାଲ୍ୟଂ ସୋଽହଂଭାବେନ ପୂଜୟେତ୍ ॥

ଅର୍ଥ — ଯେ ପୂର୍ଣ୍ଣ, ତାହାଙ୍କୁ କେଉଁଠାକୁ ଆବାହନ କରିବ ? ସର୍ବାଧାରଙ୍କ ପାଇଁ ଆସନ କ'ଣ ? ସ୍ୱଚ୍ଛ ପାଇଁ ପାଦ୍ୟ ଓ ଅର୍ଘ୍ୟ କାହିଁକି ? ଶୁଦ୍ଧପାଇଁ ଆଚମନର କି ପ୍ରୟୋଜନ ?

ପରମେଶ୍ୱର ସର୍ବାଧାର, ନିରାଧାର ଓ ସର୍ବବ୍ୟାପକ ଅଟନ୍ତି । ସେ ପ୍ରାଣର ପ୍ରେରକ ଓ ଜୀବନର ହେତୁ ଅଟନ୍ତି ।

ପୁରାଣବାକ୍ୟ—ପ୍ରତିମାପୂଜା ଅଧମ ଅଟେ, ସ୍ତୋତ୍ରଜପ ମଧ୍ୟମ, ଦେବପୂଜା ସର୍ବୋତ୍ତମ ଓ ମହାତ୍ମାଙ୍କ ପୂଜା 'ସୋଽହଂ' ଅଟେ ।

ତୀର୍ଥ, ପଶୁପକ୍ଷୀ, କାଠ-ପଥର ମାଟିର ମୂର୍ତ୍ତିରେ ଯେଉଁମାନେ ବିଶ୍ୱାସ କରନ୍ତି, ସେମାନେ ମୂଢ଼ ଅଜ୍ଞାନୀ ଅଟନ୍ତି ।

ପଥରକୁ ଗୋଟିଏ ସ୍ଥାନରେ ବାନ୍ଧି ରଖି ଓ ଦେବତାଙ୍କୁ ପାଷାଣରୂପ କରି ହେ ପଣ୍ଡିତ ! କୁହ, ସେହି ଦେବତା କେଉଁଠାରେ ରହନ୍ତି ?

ହେ ଦୁର୍ମତି ! ନିଜ ଘରେ ଦୁଗ୍ଧାନ୍ନ ଛାଡ଼ି କାହିଁକି ଭିକ୍ଷାବୃତ୍ତି ଧାରଣ କରୁଅଛ ? ପଥର ଓ ମାଟି ଶିଳରେ କପରି ଦେବତାଙ୍କ କଳ୍ପନା କରୁଅଛ ?

ନିର୍ମଳ ପାଇଁ ସ୍ନାନ କ'ଣ ? ବିଶ୍ୱୋଦରଙ୍କ ପାଇଁ ବସ୍ତ୍ରର କି ପ୍ରୟୋଜନ ? ନିରାଲମ୍ବ ପାଇଁ ଯଜ୍ଞୋପବୀତ କାହିଁକି ? ରମ୍ୟ ପାଇଁ ଆଭୂଷଣ କ'ଣ ?

ନିର୍ଲେପ ପାଇଁ ଗନ୍ଧ କ'ଣ ? ନିର୍ବାସନ ପାଇଁ ପୁଷ୍ପ କ'ଣ ? ନିର୍ଗନ୍ଧ ପାଇଁ ଧୂପ କାହିଁକି ? ସ୍ୱପ୍ରକାଶ ପାଇଁ ଦୀପର କି ପ୍ରୟୋଜନ ?

ନିତ୍ୟତୃପ୍ତ ପାଇଁ କି ନୈବେଦ୍ୟ ? ନିଷ୍କାମ ପାଇଁ ଫଳ କ'ଣ ? ବିଭୁଙ୍କ ପାଇଁ ତାମ୍ବୁଳ କାହିଁକି ? ନିତ୍ୟାନନ୍ଦ ପାଇଁ ଦକ୍ଷିଣାର ଆବଶ୍ୟକତା କ'ଣ ?

ସ୍ୱୟଂପ୍ରକାଶ ପାଇଁ ଦୀପର କି ପ୍ରୟୋଜନ ? ଯେ ଅନନ୍ତ, ତାଙ୍କର ପ୍ରଦକ୍ଷିଣା ସମ୍ଭବ କି ? ଅଦ୍ୱିତୀୟଙ୍କ ପାଇଁ ନମସ୍କାର କ'ଣ ?

ଯେ ଭିତରେ ବାହାରେ ପୂରିଆଛନ୍ତି ପରିପୂର୍ଣ୍ଣ, ତାହାଙ୍କୁ କିପରି ବିସର୍ଜନ କରିବା ?

ପରମାତ୍ମାଙ୍କ ପ୍ରକୃତ ପୂଜାବିଧି ହେଉଛି—

ଦେହକୁ ଦେବାଳୟ କର ଓ ସନାତନ ଜୀବକୁ ଦେବତା ମନେ କର । ଅଜ୍ଞାନରୂପ ନିର୍ମାଲ୍ୟ ତ୍ୟାଗ କର । 'ସୋଽହଂ' ଭାବରେ ପୂଜା କର ।

ଆଦ୍ୟ ଶଂକରାଚାର୍ଯ୍ୟ ବହୁ ସ୍ଥଳରେ ଈଶ୍ୱରଙ୍କ ସାକାରତ୍ୱ ଖଣ୍ଡନ କରିଛନ୍ତି । ତାହାଙ୍କ ରଚିତ ବେଦାନ୍ତ ଭାଷ୍ୟରୁ କିଛି ଉଦ୍ଧରଣ ଏଠାରେ ଦିଆଯାଉଅଛି—

ନୈକସ୍ମିନ୍ନସମ୍ଭବାତ୍ । ବେଦାନ୍ତ ସୂତ୍ର ୨,୨,୩୩

ଶଂକରାଚାର୍ଯ୍ୟ ଏହାର ଭାଷ୍ୟ କରିଛନ୍ତି—

'ନ ହି ଏକସ୍ମିନ୍ ଧାର୍ମୀଣୀ ଯୁଗପତ୍ ସଦସତ୍ତ୍ୱାଦି ବିରୁଦ୍ଧ ଧର୍ମ ସମାବେଶଃ ସମ୍ଭବତି ଶୀତୋଷ୍ଣବତ୍ ।' ଅର୍ଥାତ୍ ଗୋଟିଏ ବସ୍ତୁରେ ଏକ ସମୟରେ ଶୈତ୍ୟ ଓ ଉଷ୍ଣତା ସମାନ ଦୁଇ ବିରୋଧୀ ଗୁଣ ରହି ନ ପାରେ

ନାହିଁ । ଅର୍ଥାତ୍ ବ୍ରହ୍ମଠାରେ ନିରାକାରତା ଓ ସାକାରତା ପରସ୍ପର ବିରୋଧୀ ଗୁଣ ରହି ପାରେ ନାହିଁ ।

ପୁଣି ବେଦାନ୍ତ (୩,୨,୧୧) ସୂତ୍ରର ଭାଷ୍ୟରେ ସେ ଲେଖିଛନ୍ତି— ତସ୍ମୋଭୟଲିଙ୍ଗଂ ଶ୍ରୁତ୍ୟନୁଗ୍ରହାଦୁଭୟଲିଙ୍ଗ ଭାବେ ବ୍ରହ୍ମତ୍ୟେବ ପ୍ରାପ୍ତେ ବ୍ରୂମଃ । ଇତ୍ୟାଦି

ଏହାର ଭାଷ୍ୟ କରି ସେ ଲେଖିଛନ୍ତି—'ସାକାର ଓ ନିରାକାର ପରସ୍ପର ବିପରୀତ ଗୁଣ ହେବାରୁ ଏକାଠି ରହି ପାରିବେ ନାହିଁ ।

କରଣବଚ୍ଚେନ୍ନ ଭୋଗାଦିଭ୍ୟଃ । (ବେଦାନ୍ତ ୨,୨,୪୦) ।

ଏହାର ବ୍ୟାଖ୍ୟାରେ ସେ ଲେଖିଛନ୍ତି—'ଶରୀରେ ଚେତ୍ ସତି ସ ସାରିବଦ୍ ଭୋଗାଦିପ୍ରସଙ୍ଗାଦୀଶ୍ୱରସ୍ୟାପି ଅନୀଶ୍ୱରତ୍ୱ ପ୍ରସଜ୍ୟେତ' । ଯଦି ଈଶ୍ୱରଙ୍କୁ ସାକାର ବୋଲି ଧରାଯାଏ, ତାହାହେଲେ ସଂସାରୀ ପୁରୁଷମାନଙ୍କ ପରି ଭୋଗାଦି ବିଷୟରେ ଜଡ଼ିତ ହେବାଦ୍ୱାରା ଈଶ୍ୱରଙ୍କଠାରେ ଅନୀଶ୍ୱରତ୍ୱ ଆରୋପ କରାଯିବ ।

ଗଣେଶ ପୂଜା ସମ୍ବନ୍ଧରେ ଆଲୋଚନା କରି ଶଙ୍କର କହିଛନ୍ତି— 'ଭୋଗାଣପତ୍ୟା ସତ୍ୟମୁକ୍ତଂ ଭବତା ଗଣପତେଃ + + + ଇତ୍ୟାଦି' ଅର୍ଥାତ୍ ହେ ଗଣପତିଙ୍କ ପୂଜକ ! ତୁମେ ଗଣପତିଙ୍କୁ ସବୁଠାରୁ ଉତ୍ତମ ବୋଲି ମନେ କରୁଅଛ । କିନ୍ତୁ ତାହା ସତ୍ୟ ନୁହେ । ଗଜମୁଖଯୁକ୍ତ, ଯେ ରୁଦ୍ରଗଣଙ୍କ ସହିତ ଉତ୍ପନ୍ନ ଓ ନଷ୍ଟ ହୁଅନ୍ତି, ସେ ବିକାରଯୁକ୍ତ ଗଣେଶ କିପରି ବା ଜଗତ୍‌ର କାରଣ ହେବେ ? ତେଣୁ ବ୍ରହ୍ମ ହିଁ ରୁଦ୍ରାଦିଙ୍କ ସମସ୍ତର କାରଣ । ସେହି ସତ୍ୟରୂପ ହିଁ ସୃଷ୍ଟିର ପୂର୍ବରୁ ବିଦ୍ୟମାନ ଥିଲେ । ଏହା ଉପନିଷଦର ପ୍ରମାଣ ଅଟେ ।

(ଶଙ୍କର ଦିଗ୍‌ବିଜୟ ପୃ ୮୪)

ଏହାପରେ ଶଙ୍କର ସ୍ୱାମୀ ମୂର୍ତ୍ତିପୂଜାର ଖଣ୍ଡନ ପାଇଁ ମହାନ୍ ପ୍ରୟାସ କରିଥିଲେ। କିନ୍ତୁ ତାହା ଫଳପ୍ରଦ ହେଲ ନାହିଁ। ବୌଦ୍ଧମତର ହ୍ରାସ ପରେ ଭାରତରେ ଅନେକ ଦେବଦେବୀଙ୍କ ମୂର୍ତ୍ତିର କଳ୍ପନା କରାଗଲା। ସେଗୁଡ଼ିକ ବୁଦ୍ଧମୂର୍ତ୍ତି ଓ ତୀର୍ଥଙ୍କରମାନଙ୍କ ପ୍ରତିମାଗୁଡ଼ିକର ସ୍ଥାନ ଅଧିକାର କଲା। ସେତେବେଳେ ପୁରାଣଗ୍ରନ୍ଥ ରଚିତ ହୋଇଥିଲା। ବର୍ତ୍ତମାନ ହିନ୍ଦୁଧର୍ମରେ ଥିବା ମୂର୍ତ୍ତିପୂଜା, ଅବତାର ବିଗ୍ରହ, ପର୍ବ, ତୀର୍ଥ, ଜନ୍ମଗତ ଜାତିପ୍ରଥା ଇତ୍ୟାଦି ରୂପରେଖ ସେହି ସମୟରେ କଳ୍ପିତ ହୋଇଥିଲା। ସେତେବେଳେ ଶୈବ, ଶାକ୍ତ ଓ ବୈଷ୍ଣବ ନାମକ ତିନୋଟି ମୁଖ୍ୟ ସଂପ୍ରଦାୟ ମଧ୍ୟ ସୃଷ୍ଟି ହେଲ। ଅଠରଟି ମହାପୁରାଣ ଏହି ତିନି ସଂପ୍ରଦାୟର ଆଧାର ଗ୍ରନ୍ଥ ଅଟେ। ବୈଷ୍ଣବ ସଂପ୍ରଦାୟର ପୁରାଣଗୁଡ଼ିକରେ ଅନ୍ୟ ସଂପ୍ରଦାୟମାନଙ୍କ ଅପେକ୍ଷା ବିଶେଷତଃ ମୂର୍ତ୍ତିପୂଜା, ଅବତାରବାଦ ଓ ତୀର୍ଥ ସମ୍ବନ୍ଧରେ ପ୍ରାଧାନ୍ୟ ଦିଆଗଲା।

ପୁରାଣଗୁଡ଼ିକୁ ଅଧ୍ୟୟନ କଲେ ଜଣାଯାଏ ଯେ ତତ୍କାଳୀନ ବିଦ୍ୱାନ୍‌ମାନେ ମଧ୍ୟ ମୂର୍ତ୍ତିପୂଜାର ବିରୋଧ କରିଥିଲେ। ସେମାନେ ମୂର୍ତ୍ତିପୂଜାର ଖଣ୍ଡନ କରୁଥିଲେ। ତାହାକୁ ଅଜ୍ଞାନ, ମୂର୍ଖ ତଥା ନିମ୍ନ ଶ୍ରେଣୀର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ବୋଲି କହି ବିଜ୍ଞ ଲୋକଙ୍କ ପାଇଁ ନିଷିଦ୍ଧ କରିଥିଲେ। ମନ୍ଦିରମାନଙ୍କରେ ପୂଜାକର୍ମ କରିବା ବ୍ରାହ୍ମଣମାନଙ୍କ ପାଇଁ ନିଷିଦ୍ଧ ଥିଲା। ଯଦି କେହି ଉତ୍କୋଚର ବଶବର୍ତ୍ତୀ ହୋଇ ପୂଜାକର୍ମ କରୁଥିଲେ, ତେବେ ତାହାକୁ ଜାତିଚ୍ୟୁତ ଘୋଷଣା କରାଯାଉଥିଲା। ଉଦାହରଣସ୍ୱରୂପ—

ପ୍ରାପ୍ତେ କଳାବହହ ଦୁଷ୍ଟତରେ ଚ କାଳେ
ନ ତ୍ୱାଂ ଭଜନ୍ତି ମନୁଜା ନନୁ ବଂଚିତାସ୍ତେ।

ଧୂର୍ତ୍ତୈଃ ପୁରାଣଚତୁରୈର୍ହରଶଙ୍କରାଣାମ୍ ।
ସେବାପରାଶ୍ଚବହୁଧାତ୍ରବ ନିର୍ମିତାନାମ୍ ॥
(ଦେବୀ ଭାଗବତ ୫,୧୬)

ଅର୍ଥାତ୍—ପୁରାଣ ରଚନା କରିବାରେ ଧୂର୍ତ୍ତ, ଚତୁର ଲୋକମାନେ ଏହି ଘୋର କଳି ଯୁଗରେ ନିଜ ନିଜ ଉଦର ପୂର୍ତ୍ତି ପାଇଁ ବିଷ୍ଣୁ, ଶିବ ଆଦି କଳ୍ପିତ ଦେବମାନଙ୍କ ପୂଜାବିଧି ପ୍ରଚଳନ କଲେ ।

ପୁଣି,—

ନାମ୍ମୁମୟାନି ତୀର୍ଥାନି ନ ଦେବାଃ ମୃଚ୍ଛିଳାମୟାଃ ।
ତେ ପୁନନ୍ତ୍ୟୁରୁକାଳେନ ଦର୍ଶନାଦେବ ସାଧବଃ ॥
ନାଗ୍ନିର୍ନ ସୂର୍ଯ୍ୟୋ ନ ଚ ଚନ୍ଦ୍ରତାରକାଃ
ନ ଭୂର୍ଜଳଂ ଖଂ ଶ୍ୱସନୋଽଥ ବାଙ୍ମନଃ ।
ଉପାସିତା ଭେଦକୃତାଂ ହରନ୍ତ୍ୟଘଂ
ବିପଶ୍ଚିତୋଘ୍ନନ୍ତି ମୁହୂର୍ତ୍ତସେବୟା ॥
ଯସ୍ୟାତ୍ମବୁଦ୍ଧିଃ କୁଣପେ ତ୍ରିଧାତୁକେ
ସ୍ୱଧୀଃ କଳତ୍ରାଦିଷୁ ଭୌମ ଇଜ୍ୟଧୀଃ ।
ଯତ୍ତୀର୍ଥ ବୁଦ୍ଧିଃ ସଲିଳେ ନ କର୍ହିଚିତ୍
ଜନେଷ୍ୱଭିଜ୍ଞେଷୁ ସ ଏବ ଗୋଖରଃ ॥
(ଶ୍ରୀମଦ୍ ଭାଗବତ ୧୦, ୮୪)

ଅର୍ଥାତ୍—ଜଳଧାରା ତୀର୍ଥ ନୁହେଁ । ମୃତ୍ତିକା ଓ ପାଷାଣର ମୂର୍ତ୍ତି ଦେବତା ନୁହନ୍ତି । ସେମାନଙ୍କଦ୍ୱାରା କେବେ ହେଲେ ପବିତ୍ରତା ମିଳେ ନାହିଁ । ସାଧୁ ମହାତ୍ମାମାନଙ୍କ ଦର୍ଶନଦ୍ୱାରା ତାହା ମିଳେ । ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ତାରା, ଭୂମି, ଜଳ, ଆକାଶ, ବାୟୁ, ବାଣୀ, ମନ ଆଦି ପଦାର୍ଥ-

ଗୁଡ଼ିକର ପୂଜାଦ୍ୱାରା ପାପ ଦୂର ହୁଏ ନାହିଁ । ଏମାନଙ୍କୁ ପୂଜା କରିବା ପରମାତ୍ମାଙ୍କ ପୂଜା ନୁହେ । ବିଦ୍ୱାନମାନଙ୍କୁ କିଂଚିତ ମାତ୍ର ପୂଜା କଲେ ସୁଦ୍ଧା ପାପ ଦୂର ହୁଏ । ଯେଉଁ ମନୁଷ୍ୟ ବାତ-ପିତ-କଫ ଏହି ତିନି ମଳଦ୍ୱାରା ଗଠିତ ଶରୀରରେ ଆତ୍ମବୁଦ୍ଧିର ଜ୍ଞାନ କରେ, ସ୍ତ୍ରୀଠାରେ ସ୍ୱବୁଦ୍ଧିର ଚିନ୍ତା କରେ, ମୃତ୍ତିକାନିର୍ମିତ ମୂର୍ତ୍ତିରେ ପୂଜାବିଧି କରେ ଜଳକୁ ତୀର୍ଥର ଜ୍ଞାନ କରେ—ସେ ଗୋଖର୍-ଗାଈ ଆଦି ପଶୁଗୁଡ଼ିକ କରୁଥିବା ମୂର୍ଖ ଗୋପାଳକ ଅଟେ ।

ଏହି ସ୍କନ୍ଦର ଅନ୍ୟ ସ୍ଥଳରେ ଲେଖା ଅଛି—

ନହ୍ୟମ୍ମୟାନି ତୀର୍ଥାନି ନ ଦେବା ମୃଚ୍ଛିଳାମୟାଃ ।
ତେ ପୁନନ୍ତ୍ୟପି କାଳେନ ବିଷ୍ଣୁଭକ୍ତା କ୍ଷଣାଦହୋ ॥

ଅର୍ଥାତ୍ ଜଳ ତୀର୍ଥ ନୁହେ, ମାଟି ପଥରରେ ଦେବତା ଥାଆନ୍ତି ନାହିଁ । ସେମାନେ କେବେ ପବିତ୍ର କରନ୍ତି ନାହିଁ ।
ଶିବପୁରାଣରେ କୁହାଯାଇଅଛି—

ତୀର୍ଥାନି ତୋୟପୂର୍ଣ୍ଣାନି ଦେବାନ୍ ପାଷାଣମୃନ୍ମୟାନ୍ ।
ଯୋଗିନୋ ନ ପ୍ରପଦ୍ୟନ୍ତେ ସ୍ୱାତ୍ମପ୍ରତ୍ୟୟ କାରଣାତ୍ ॥
(ଶିବପୁରାଣ ୩୯, ୨୯)

ଜଳପୂର୍ଣ୍ଣ ତୀର୍ଥ, ମୃତ୍ତିକା-ପ୍ରସ୍ତର ନିର୍ମିତ ମୂର୍ତ୍ତିକୁ ଯୋଗୀମାନେ ଆତ୍ମବିଶ୍ୱାସପୂର୍ବକ ସ୍ୱୀକାର କରନ୍ତି ନାହିଁ ।

ଏହି ପୁରାଣରେ କୁହାଯାଇଛି 'ଶିବଲିଙ୍ଗ ତୁ ଶୂଦ୍ରାଣାଂ ମହାଶୁଦ୍ଧିକରଂ ଶୁଭଂ' (୧, ୧୮) । ଅର୍ଥାତ୍ ଶିବଲିଙ୍ଗ ପୂଜା ଶୂଦ୍ରମାନଙ୍କ ପାଇଁ ବ୍ୟବସ୍ଥା କରାଯାଇଥିଲା ।

ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ସୁପ୍ରସିଦ୍ଧ ମନ୍ତ୍ରୀ ଓ ନୀତିକାର ଚାଣକ୍ୟ ମଧ୍ୟ ମୂର୍ତ୍ତିପୂଜାକୁ ନିର୍ବୋଧମାନଙ୍କ ପୂଜାପଦ୍ଧତି ବୋଲି ଅଭିହିତ କରିଛନ୍ତି—

ଅଗ୍ନିର୍ଦେବୋ ଦ୍ୱିଜାତିନାଂ ମୁନୀନାଂ ହୃଦି ଦେବତମ୍ ।
ପ୍ରତିମା ସ୍ୱଳ୍ପବୁଦ୍ଧୀନାଂ ସର୍ବତ୍ର ସମଦର୍ଶିନାମ୍ ॥

(ଚାଣକ୍ୟ ନୀତି ୪ର୍ଥ ଅଧ୍ୟାୟ)

ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ଦେବତା ଅଗ୍ନିହୋତ୍ର ବା ହୋମ ଅଟେ । ମୁନିମାନଙ୍କ ପାଇଁ ଧ୍ୟାନ, ଅଳ୍ପବୁଦ୍ଧିଯୁକ୍ତ ମନୁଷ୍ୟଙ୍କ ପାଇଁ ମୂର୍ତ୍ତିପୂଜା ତଥା ସମଦର୍ଶୀମାନଙ୍କ ପାଇଁ ଦେବ ସର୍ବତ୍ର ବିଦ୍ୟମାନ ।

ବରାହ ପୁରାଣରେ ଲେଖାଅଛି—

ବୃଷଳୀ ସୂତିପୋଷ୍ୟଶ୍ଚ ବୃଷଳୀପତିରେବ ଚ ।
ତଥା ଦେବଳକଶ୍ଚୈବ ଶ୍ରାଦ୍ଧେ ନାର୍ହନ୍ତି କେତନମ୍ । (୧୪,୭)

ଅର୍ଥାତ୍ ଦୁରାଚାରିଣୀ, ନବପ୍ରସୂତା, ଦୁରାଚାରୀ ଓ ପ୍ରତିମା ପୂଜକ— ଏମାନେ ଶ୍ରାଦ୍ଧଭୋଜନରେ ସ୍ଥାନ ପାଇବା ପାଇଁ ଯୋଗ୍ୟ ନୁହନ୍ତି ।

ପଦ୍ମପୁରାଣରେ ବିଷ୍ଣୁଙ୍କ ଛଡ଼ା ଅନ୍ୟ ଦେବମୂର୍ତ୍ତିଗୁଡ଼ିକର ଦର୍ଶନ, ସ୍ପର୍ଶ, ପୂଜା ଓ ଭୋଗ ନ କରିବା ପାଇଁ କଠୋର ଶବ୍ଦରେ କୁହାଯାଇଛି । ଯେଉଁ ମୂର୍ଖ ବ୍ରାହ୍ମଣ ଅନ୍ୟ ଦେବଦେବୀଙ୍କ ନିର୍ମାଲ୍ୟ ସେବନ କରେ, ସେ ବିଷ୍ଠା ଭକ୍ଷଣ କରେ—

'ଇତରେଷାଂ ତୁ ଦେବାନାଂ ନିର୍ମାଲ୍ୟଂ ଗର୍ହିତଂ ଭବେତ୍ ।
ସକୃଦେବ ହି ଯୋଽଶ୍ନାତି ବ୍ରାହ୍ମଣୋ ଜ୍ଞାନଦୁର୍ବଳଃ ॥'

(ପଦ୍ମପୁରାଣ)

ପୁରାଣମାନଙ୍କ ମଧ୍ୟରେ ଭବିଷ୍ୟପୁରାଣର ରଚନାକାଳ ନବୀନତମ ବୋଲି କୁହାଯାଏ; କାରଣ ଏଥିରେ ମୁସଲମାନ ଓ ଖ୍ରୀଷ୍ଟିଆନମାନଙ୍କ ଭାରତ ଆଗମନ ଘଟଣା ଆଦି ନବୀନ ବିଷୟ ଭବିଷ୍ୟବାଣୀ ରୂପେ ଉଲ୍ଲେଖ କରାଯାଇଛି । ଏହି ପୁରାଣରେ ଥିବା ଏକ ମନୋରଞ୍ଜନ କଥାରୁ ଜଣାଯାଏ ଯେ କିଛି ଶତାବ୍ଦୀ ପୂର୍ବେ ବ୍ରାହ୍ମଣମାନେ ମନ୍ଦିରରେ ପୂଜକ ହେବା ନିନ୍ଦନୀୟ କାର୍ଯ୍ୟ ବୋଲି ଭାବୁଥିଲେ । ଏଥିରେ ଲେଖାଅଛି ଯେ ଶ୍ରୀକୃଷ୍ଣଙ୍କ ପୁତ୍ର ସାମ୍ବ ନିଜ ପିତାଙ୍କ ଶାପରୁ ମୁକ୍ତି ପାଇବା ପାଇଁ ନାରଦଙ୍କ ନିର୍ଦ୍ଦେଶାନୁସାରେ ଏକ ବୃହତ୍ ସୂର୍ଯ୍ୟମନ୍ଦିର ନିର୍ମାଣ କରି ସେଥିରେ ସୂର୍ଯ୍ୟଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ସେଠାରେ ପୂଜକର ନିଯୁକ୍ତି ପାଇଁ ନାରଦଙ୍କ ପରାମର୍ଶ ଲୋଡ଼ିବାରୁ ନାରଦ ଉତ୍ତର ଦେଲେ ଯେ କୌଣସି ବ୍ରାହ୍ମଣ ପୂଜା କାର୍ଯ୍ୟ କରିବା ପାଇଁ କିମ୍ବା ଦେବଧନ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେବେ ନାହିଁ । ଏହାର କାରଣ ଯେ ସେମାନେ ଏପରି କଲେ ଜାତିଚ୍ୟୁତ ହେବେ ଓ ନରକରେ ପଡ଼ି ଗୃଧ୍ର ପାଇଁ ଥିବା ଉଚ୍ଛିଷ୍ଟ ଭୋଜନ ଗ୍ରହଣ କରିବେ । ତେଣୁ ହେ ସାମ୍ବ ! ରାଜା ଉଗ୍ରସେନଙ୍କ ପୁରୋହିତଙ୍କୁ ଏହି କାର୍ଯ୍ୟ ପାଇଁ ଅନୁରୋଧ କର । ସାମ୍ବ ଏହା ଶୁଣି ପୁରୋହିତ ଗୌରମୁଖଙ୍କ ନିକଟକୁ ଯାଇ ନିବେଦନ ଜଣାଇଲେ । ଗୌରମୁଖ କହିଲେ, 'ହେ ରାଜନ୍ ! ଆପଣଙ୍କ ପ୍ରତିଗ୍ରହ ପାଇଲେ ଆମର ବ୍ରାହ୍ମଣତ୍ୱ ନଷ୍ଟ ହେବ । ଆମେ ଶୂଦ୍ରତୁଲ୍ୟ ପାପ ଅର୍ଜନ କରିବୁ । ମନ୍ଦିରରେ ପୂଜା କରୁଥିବା ବ୍ରାହ୍ମଣ ଦେବଳକ (ପ୍ରତିମାପୂଜକ) ଅଟେ । ସେ ଯେଉଁ ପଂକ୍ତିରେ ଭୋଜନ କରେ, ସେହି ପଂକ୍ତି ଅପବିତ୍ର ହୋଇଯାଏ । ଦେବଳକ ଯାହାର ଯଜ୍ଞୋପବୀତ ସଂସ୍କାର କରେ, ତାହାର ପିତାଙ୍କ ଅଧୋଗତି ହୁଏ । ବ୍ରାହ୍ମଣମାନେ ଦେବପଜାର ପ୍ରତିଗ୍ରହ ଛଡ଼ା ଅନ୍ୟ ସବୁ ପ୍ରତିଗ୍ରହ ସ୍ୱୀକାର କରନ୍ତି ।' ଇତ୍ୟାଦି ।

ଏଗାର ଶହ ବର୍ଷ ପୂର୍ବେ ଭାରତକୁ ଆସିଥିବା ପ୍ରସିଦ୍ଧ ଆରବପାର୍ଶୀ ଆଲବରୁଣି ଏ ଦେଶରେ ତିରଶ ଚାଳିଶ ବର୍ଷ କାଳ ରହି ଭାରତୀୟ ସଂସ୍କୃତି ବିଷୟରେ ଅନୁଧ୍ୟାନ କରିଥିଲେ । ସେ ନିଜ ରଚିତ 'କିତାବୁଲ ହିନ୍ଦ' ପୁସ୍ତକର ଏକାଦଶ ଅଧ୍ୟାୟରେ ତତ୍‌କାଳୀନ ଦେବଦେବୀଙ୍କ ଆକୃତି ବିଷୟରେ ବିସ୍ତାର ପୂର୍ବକ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି 'ମୂର୍ତ୍ତିପୂଜା ହିନ୍ଦୁସ୍ଥାନର ଅଜ୍ଞ ଜନସାଧାରଣଙ୍କ ଧର୍ମ ଅଟେ । ଶିକ୍ଷିତ ହିନ୍ଦୁ ଏଥିରେ ବିଶ୍ୱାସ କରନ୍ତି ନାହିଁ ।'

ସେହିପରି 'ଭାରତର ଧାର୍ମିକ ଇତିହାସ' ଗ୍ରନ୍ଥରେ ହୋପ୍‌ଫାର୍ଡ ଲେଖିଛନ୍ତି— ଯବଦ୍ୱୀପରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଯୋଗୁଁ କେତେକ ହିନ୍ଦୁ ବାଲିଦ୍ୱୀପକୁ ଚାଲିଗଲେ । ସେମାନେ ଆଜି ପର୍ଯ୍ୟନ୍ତ ଯଥାବିଧି ହିନ୍ଦୁ ଧର୍ମ ପାଳନା କରି ଆସୁଛନ୍ତି । ପ୍ରାଚୀନ ହିନ୍ଦୁମାନଙ୍କ ପରି ସେମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର—ଏହି ଚାରି ବର୍ଣ୍ଣରେ ବିଭକ୍ତ । ବ୍ରାହ୍ମଣମାନେ ଶାକାହାରୀ । ସେମାନେ ମୂର୍ତ୍ତିପୂଜା କରନ୍ତି ନାହିଁ । ଏହି ସବୁରୁ ସିଦ୍ଧ ହୁଏ ଯେ ଦେଶରେ ମୂର୍ତ୍ତିପୂଜା ପ୍ରଚଳିତ ହେବା ପରେ ମଧ୍ୟ ବ୍ରାହ୍ମଣ ଆଦି ବିଜ୍ଞ ଲୋକେ ମୂର୍ତ୍ତିପୂଜା କରୁ ନ ଥିଲେ ଓ ତାହାକୁ ଅଧମଙ୍କ ପୂଜାପଦ୍ଧତି ବୋଲି ବୁଝୁଥିଲେ ।

ମୂର୍ତ୍ତିପୂଜାର ପ୍ରବର୍ତ୍ତକ ଭାରତୀୟ ପୁରାଣଗୁଡ଼ିକ ମଧ୍ୟ ଅନେକ ସ୍ଥଳରେ ଈଶ୍ୱରଙ୍କୁ ସ୍ପଷ୍ଟ ଭାବରେ ନିରାକାର, ସର୍ବବ୍ୟାପକ ଓ ଅଜନ୍ମା ବୋଲି କହିଛନ୍ତି । ସେଗୁଡ଼ିକ ବୈଦିକ ସିଦ୍ଧାନ୍ତରୁ ଦୂରେଇ ଗଲେ ସୁଦ୍ଧା ସ୍ଥଳେ ସ୍ଥଳେ ବେଦମତ ପ୍ରକାଶ କରିଛନ୍ତି । ଯେପରି—

ନିର୍ଗୁଣସ୍ୟ ମୁନେ ରୂପଂ ନ ଭବେତ୍ ଦୃଷ୍ଟିଗୋଚରମ୍ ।<br>
ଦୃଷ୍ଟଂ ଚ ନଶ୍ୱରଂ ଯସ୍ମାଦରୂପଂ ଦୃଶ୍ୟତେ କଥମ୍ ॥

(ଦେବୀ ଭାଗବତ ୩,୭)

(ବ୍ରହ୍ମା କହିଲେ—) ହେ ମୁନେ ! ନିର୍ଗୁଣଙ୍କ ରୂପ ଦୃଷ୍ଟିଗୋଚର ହୁଏ ନାହିଁ । ଦୃଶ୍ୟ ସର୍ବଦା ନଶ୍ୱର ଅଟେ । ଅରୂପଙ୍କ ଦର୍ଶନ ସମ୍ଭବ ନୁହେ ।

ଏକୋ ବ୍ୟାପୀ ସମଃ ଶୁଦ୍ଧୋ ନିର୍ଗୁଣଃ ପ୍ରକୃତେଃ ପରଃ ।
ଜନ୍ମ ବୃଦ୍ଧ୍ୟାଦିରହିତ ଆତ୍ମା ସର୍ବଗତୋଽବ୍ୟୟଃ ॥
(ବିଷ୍ଣୁପୁରାଣ ୨,୧୪)

ଅର୍ଥାତ୍, ପରମାତ୍ମା ଜନ୍ମରହିତ, ବ୍ୟାପକ, ସମ, ଶୁଦ୍ଧ, ନିର୍ଗୁଣ ଓ ପ୍ରକୃତିଠାରୁ ଭିନ୍ନ । ସେ ବିକାରଶୂନ୍ୟ, ସର୍ବବ୍ୟାପୀ ଓ ଅବ୍ୟୟ ।

'ବିଷ୍ଣୁ' ଶବ୍ଦର ଅର୍ଥ ବୁଝାଇ ବିଷ୍ଣୁପୁରାଣ ଲେଖିଛନ୍ତି—

ଯସ୍ମାଦ୍ୱିଷ୍ଟମିଦଂ ବିଶ୍ୱ ତସ୍ୟ ଶକ୍ତ୍ୟା ମହାତ୍ମନଃ ।
ତସ୍ମାତ୍ସ ପ୍ରୋଚ୍ୟତେ ବିଷ୍ଣୁର୍ବିଶେର୍ଧାତୋଃ ପ୍ରବେଶନାତ୍ ॥
(ବିଷ୍ଣୁପୁରାଣ ୩,୧)

—ଏହି ସମସ୍ତ ବିଶ୍ୱ ସେହି ପରମାତ୍ମାଙ୍କ ଶକ୍ତିଦ୍ୱାରା ବ୍ୟାପ୍ତ ଅଟେ । 'ବିଶ୍' ଧାତୁର ଅର୍ଥ ପ୍ରବେଶ କରିବା ; ତେଣୁ ତାହାଙ୍କ ନାମ ବିଷ୍ଣୁ ଅଟେ ।

ନ ହ୍ୟାଦିମଧ୍ୟାନ୍ତମଜସ୍ୟ ଯସ୍ୟ
ବୃଦ୍ଧ୍ୟୋବ୍ୟୟୁଂ ସର୍ବମୟସ୍ୟ ଧାତୁଃ ।
ନ ଚ ସ୍ୱରୂପଂ ନ ପରଂ ସ୍ୱଭାବଂ
ନ ଚୈବ ସାରଂ ପରମେଶ୍ୱରସ୍ୟ ॥
କଳା ମୁହୂର୍ତ୍ତାଦିମୟଶ୍ଚ କାଳୋ
ନ ଯଦ୍ୱିଭୂତେଃ ପରିଣାମହେତୁଃ ।

ଅଜନ୍ମନଷ୍ଟାସ୍ୟ ସର୍ବୈକମୂର୍ତ୍ତେର-
ନାମ ରୂପସ୍ୟ ସନାତନସ୍ୟ ॥
(ବିଷ୍ଣୁପୁରାଣ ୪,୧)

—ଯେଉଁ ଅଜନ୍ମା, ସର୍ବମୟ, ବିଧାତା ପରମେଶ୍ୱରଙ୍କର ଆଦି, ମଧ୍ୟ, ଅନ୍ତ, ସ୍ୱରୂପ ଓ ସାର ଆମେ ଜାଣିବା ପାଇଁ ଅକ୍ଷମ, କାଳ ଯାହାଙ୍କର ବିଭୂତିର ପରିଣାମ ହେବା ପାଇଁ ଅସମର୍ଥ, ଯାହାଙ୍କର ଜନ୍ମ ଓ ମରଣ ହୁଏ ନାହିଁ, ସେହି ପରମେଶ୍ୱର ସନାତନ ତଥା ନାମ-ରୂପରହିତ ଅଟନ୍ତି ।

ସ୍ୱାଧ୍ୟାୟ ଓ ଯୋଗଦ୍ୱାରା ହିଁ ପରମାତ୍ମାଙ୍କ ଦର୍ଶନ ସମ୍ଭବ ଅଟେ । ଏହି ବିଷୟରେ ବିଷ୍ଣୁପୁରାଣରେ ଲେଖାଅଛି—

ସ୍ୱାଧ୍ୟାୟଯୋଗମାସୀତ ଯୋଗାତ୍ସ୍ୱାଧ୍ୟାୟମାମନେତ୍ ।
ସ୍ୱାଧ୍ୟାୟଯୋଗସମ୍ପତ୍ତ୍ୟା ପରମାତ୍ମା ପ୍ରକାଶତେ ॥
ତଦୀକ୍ଷଣାୟ ସ୍ୱାଧ୍ୟାୟଶ୍ଚକ୍ଷୁର୍ଯୋଗସ୍ତଥାପରଃ ।
ନ ମାଂସ ଚକ୍ଷୁଷା ଦ୍ରଷ୍ଟୁଂ ବ୍ରହ୍ମଭୂତଃ ସ ଶକ୍ୟତେ ॥
(ବିଷ୍ଣୁପୁରାଣ ୬,୬)

—ସ୍ୱାଧ୍ୟାୟଦ୍ୱାରା ଯୋଗ ଓ ଯୋଗଦ୍ୱାରା ସ୍ୱାଧ୍ୟାୟ କରିବା ଫଳରେ ପରମାତ୍ମା ଉପଲବ୍ଧ ହୁଅନ୍ତି । ବ୍ରହ୍ମସ୍ୱରୂପ ପରମାତ୍ମା ଚର୍ମଚକ୍ଷୁରେ ଦେଖାଯାଆନ୍ତି ନାହିଁ । ତାହାଙ୍କୁ ଦର୍ଶନ କରିବା ପାଇଁ ସ୍ୱାଧ୍ୟାୟ ଓ ଯୋଗ ଦୁଇଟି ନେତ୍ର ।

ନ ତତ୍ରାତ୍ମା ସ୍ୱୟଂ ଜ୍ୟୋତିର୍ଯୋ ବ୍ୟକ୍ତାବ୍ୟକ୍ତୟୋଃ ପରଃ ।
ଆକାଶ ଇବ ଚାଧାରୋ ଧ୍ରୁବୋଽନନ୍ତୋପମସ୍ତତଃ ॥
(ଶ୍ରୀମଦ୍ ଭାଗବତ ୧୨,୫)

—ଜ୍ୟୋତିସ୍ୱରୂପ ପରମାତ୍ମା ବ୍ୟକ୍ତ ପଦାର୍ଥଗୁଡ଼ିକଠାରୁ ସୂକ୍ଷ୍ମ ଅର୍ଥାତ୍ ଅବ୍ୟକ୍ତ ଅଟନ୍ତି । ସେ ଆକାଶ ପର ସର୍ବାଧାର, ନିର୍ବିକାର, ଅନ୍ତର୍ହୀନ ଓ ଉପମାରହିତ ଅଟନ୍ତି ।

ଅପାଣିପାଦୋ ଜବନୋ ଗୃହୀତା ହୃଦିସଂସ୍ଥିତଃ ।
ଅଚକ୍ଷୁରପି ପଶ୍ୟାମି ତଥାକର୍ଣ୍ଣଃ ଶୃଣୋମ୍ୟହମ୍ ॥
(କୂର୍ମ ଉପରିଭାଗ ୨,୪୫୯)

ମୁଁ (ପରମେଶ୍ୱର) ସର୍ବଦା ହୃଦୟରେ ଅବସ୍ଥିତ ; ବିନାପାଦରେ ପ୍ରଚଳ କରେ ଓ ବିନା ହସ୍ତରେ ଗ୍ରହଣ କରେ । ମୁଁ ବିନା ଆଖିରେ ଦେଖେ ଓ ବିନା କାନରେ ଶୁଣେ ।

ଆଧିବ୍ୟାଧିଜରାମୃତ୍ୟୁ ଶୋକଭୀତି ବିବର୍ଜିତମ୍ ॥
(ବ୍ର.ବୈ. ପୁରାଣ)

—ପରମେଶ୍ୱରଙ୍କଠାରେ ଦୁଃଖ, ରୋଗ, ଶୋକ, ଭୟ, ମୃତ୍ୟୁ ତଥା ବାର୍ଦ୍ଧକ୍ୟ ନ ଥାଏ ।

ଗନ୍ଧବର୍ଣ୍ଣରସୈର୍ହୀନଂ ଶବ୍ଦସ୍ପର୍ଶବିବର୍ଜିତମ୍ ।
ଅଜାତଂ ଧ୍ରୁବମକ୍ଷୟ୍ୟଂ ନିତ୍ୟଂ ସ୍ୱାତ୍ମନ୍ୟବସ୍ଥିତମ୍ ॥
(ବାୟୁ ପୁରାଣ)

—ଗନ୍ଧ, ବର୍ଣ୍ଣ, ରସ, ସ୍ପର୍ଶ ତଥା ରୂପ ଆଦି ବିଷୟରୁ ରହିତ ଅଜନ୍ମା, ନିତ୍ୟ, ଅବିନାଶୀ ପରମାତ୍ମା ନିଜ ଆତ୍ମାରେ ହିଁ ବାସ କରନ୍ତି ।

ତିଳେଷୁ ବା ଯଥା ତୈଳଂ ଦଧ୍ନି ବା ସର୍ପିରର୍ପିତମ୍ ।
ଯଥାପଃ ସ୍ରୋତସି ବ୍ୟାପ୍ତା ଯଥାରଣ୍ୟାଂ ହୁତାଶନଃ ॥

ଏବମେବ ମହାତ୍ମାନବାତ୍ମନ୍ୟାତ୍ମବାଲ୍ଲକ୍ଷଣମ୍ ।
ସତ୍ୟେନ ତପସା ଚୈବ ନିତ୍ୟଯୁକ୍ତୋଽନୁପଶ୍ୟତି ॥
(ଶିବ ପୁରାଣ )

—ଯେପରି ତିଳରେ ତୈଳ ତଥା ଦହିରେ ଘୃତ ଲୁକ୍କାୟିତ ରହିଛି, ଯେପରି ଜଳରେ ସ୍ରୋତ ତଥା ଅରଣୀରେ ଅଗ୍ନି ପ୍ରଚ୍ଛନ୍ନ ରହିଛି ; ସେହିପରି ପରମାତ୍ମା ଆତ୍ମାରେ ଲୁକ୍କାୟିତ ରହନ୍ତି । ଯୋଗୀଜନ ତାହାଙ୍କୁ ସତ୍ୟ ଓ ତପ ମାଧ୍ୟମରେ ଆତ୍ମାଠାରେ ନିତ୍ୟ ଦର୍ଶନ କରନ୍ତି ।

ପୁରାଣମାନଙ୍କରେ ବ୍ରହ୍ମା, ବିଷ୍ଣୁ, ଶିବ, ଶକ୍ତି ଆଦି କଳ୍ପିତ ପୂଜା ବିଶେଷ ରୂପରେ ବର୍ଣ୍ଣିତ ହୋଇଛି । କିନ୍ତୁ ପ୍ରତ୍ୟେକ ସମ୍ପ୍ରଦାୟର ପୁରାଣ ନିଜ ନିଜ ଉପାସ୍ୟ ଦେବଙ୍କୁ ସର୍ବଶ୍ରେଷ୍ଠ ବୋଲି ପ୍ରତିଷ୍ଠିତ କରି ଅନ୍ୟ ସମ୍ପ୍ରଦାୟର ଉପାସ୍ୟଦେବଙ୍କୁ ନିନ୍ଦା କରିଛନ୍ତି । ବୈଷ୍ଣବ ପୁରାଣ ବିଷ୍ଣୁଙ୍କୁ, ଶୈବ ପୁରାଣ ଶିବଙ୍କୁ, ଶାକ୍ତ ପୁରାଣ ଦେବୀ ଶକ୍ତିଙ୍କୁ ମହତ୍ତ୍ୱ ଦେଇ ଅନ୍ୟ ଦେବତାଙ୍କୁ ପୂଜା ନ କରିବା ପାଇଁ କହିଛନ୍ତି । ଏମାନଙ୍କୁ ପୂଜା କଲେ ମନୁଷ୍ୟ ନରକଗାମୀ ହୁଏ ବୋଲି କହିଛନ୍ତି । କେବଳ ସେତିକି ନୁହେଁ, ଏହି ପୁରାଣଗୁଡ଼ିକରେ ଦେବ-ଦେବୀମାନଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ତଥା ସେମାନଙ୍କ ଜୟ-ପରାଜୟ ଆଦି ବର୍ଣ୍ଣନା କରାଯାଇଛି ।

ପୌରାଣିକ କାଳର ଏହି ସାଂପ୍ରଦାୟିକ ପ୍ରତିଦ୍ୱନ୍ଦିତାରୁ ସିଦ୍ଧ ହୁଏ ଯେ ମୂର୍ତ୍ତିପୂଜାର ଆଦି କାରଣ ଯାହା ହେଉ ନା କାହିଁକି ପରବର୍ତ୍ତୀ କାଳରେ ମୂର୍ତ୍ତିପୂଜା ଯୋଗୁଁ ହିଁ ସାଂପ୍ରଦାୟିକ ବ୍ୟବସାୟିକ ବୃତ୍ତିର ସୂତ୍ରପାତ ହେଲା । ସେହି ବିଷ ଆଜି ପର୍ଯ୍ୟନ୍ତ ଜନସାଧାରଣଙ୍କୁ

ବିହ୍ୱଳିତ କରି ରଖିଛି । ଯେପରି ଗୋଟିଏ ବ୍ୟବସାୟୀ ନିଜ ବିଦେଶୀ ପଦାର୍ଥଗୁଡ଼ିକୁ ଶ୍ରେଷ୍ଠ ବୋଲି ପ୍ରତିପାଦନ କରି ଅନ୍ୟ ଦୋକାନର ପଦାର୍ଥଗୁଡ଼ିକୁ ନିକୃଷ୍ଟ ବୋଲି ଦର୍ଶାଇ ଥାଏ, ସେହିପରି ବହୁ ଦେବତା-ବାଦର କୁପରିଣାମରୁ ଜାତ ହୋଇଥିବା ବିଭିନ୍ନ ସମ୍ପ୍ରଦାୟଗୁଡ଼ିକର ଆଭ୍ୟନ୍ତରୀଣ କଳହ ଆର୍ଯ୍ୟ ଜାତିର ପ୍ରାଚୀନ ଗୌରବକୁ ଧୂଳିସାତ୍ କରିଛି ! ଯଦି ସବୁ ସଂପ୍ରଦାୟର ଉପାସ୍ୟ ଦେବଙ୍କ ମଧ୍ୟରେ ଏକେଶ୍ୱର ଭାବନା ଥାଆନ୍ତା, ତେବେ ନାନା ସଂପ୍ରଦାୟ ତଥା ସେଗୁଡ଼ିକ ମଧ୍ୟରେ ଥିବା କଳହକୁ ଏଡ଼ାଇ ହୁଅନ୍ତା ।

ବିଷ୍ଣୁ ଓ ତାହାଙ୍କ ଅବତାରଗୁଡ଼ିକୁ ପ୍ରଶଂସା କରି ପଦ୍ମ ପୁରାଣରେ ଲେଖା ଅଛି—

ରାଘବଃ ସର୍ବଦେବାନାଂ ପାଳନଃ ପୁରୁଷୋତ୍ତମଃ ।
ସ୍ପୃଷ୍ଟ୍ୱା ଦୃଷ୍ଟ୍ୱାଶ୍ଚ ତେନୈବ ବିମଳାଃ ଶଙ୍କରାଦୟଃ ॥
(ପଦ୍ମ: ପୁ)

—ରାମଚନ୍ଦ୍ର ସବୁ ଦେବଙ୍କ ମଧ୍ୟରେ ପୁରୁଷୋତ୍ତମ । ତାହାଙ୍କ ସ୍ପର୍ଶ ଓ ଦର୍ଶନରେ ମହାଦେବ ଆଦି ସମସ୍ତ ଦେବ ପବିତ୍ର ହେଲେ ।

କିମତ୍ର ବହୁନୋକ୍ତେନ ବ୍ରାହ୍ମଣାଃ ଯେପ୍ୟବୈଷ୍ଣବଃ ।
ନସ୍ପ୍ରଷ୍ଟବ୍ୟା ନ ବକ୍ତବ୍ୟା ନ ଦ୍ରଷ୍ଟବ୍ୟାଃ କଦାଚନ ॥
(ପଦ୍ମ: ପୁ:)

—ଯେ ବିଷ୍ଣୁଙ୍କ ବ୍ୟତୀତ ଅନ୍ୟ ଦେବତାଙ୍କୁ ସ୍ୱୀକାର କରେ, ତାହା ସହିତ କଥାବାର୍ତ୍ତା କହିବା, ତାହାକୁ ଛୁଇଁବା ଓ ଦେଖିବା ପାପ ଅଟେ ।

ଅନର୍ଚ୍ୟା ବ୍ରହ୍ମରୁଦ୍ରାଦ୍ୟା ରଜସ୍ତମୋବିମିଶ୍ରିତାଃ ।
ଓଁ ଶୁଦ୍ଧସତ୍ତ୍ୱଗୁଣବନ୍ ପୂଜନୀୟୋହପ୍ରଜନ୍ମନାମ୍ ॥

—ବ୍ରହ୍ମା ଓ ଶିବ ରଜୋଗୁଣୀ ଓ ତମୋଗୁଣୀ । ସେମାନେ ପୂଜାର ଯୋଗ୍ୟ ନୁହନ୍ତି । ହେ ବିଷ୍ଣୋ ! ଆପଣ ସତ୍ତ୍ୱଗୁଣଯୁକ୍ତ ; ତେଣୁ ଆପଣ ହିଁ ପୂଜ୍ୟ ।

ଇତରେଷାଂ ତୁ ଦେବାନାମନ୍ନଂ ପୁଷ୍ପଂ ଜଳଂ ତଥା ।
ଅସ୍ପୃଶ୍ୟନ୍ତୁ ଭବେତ୍ ସର୍ବଂ ନିର୍ମାଲ୍ୟଂ ସୁରୟା ସମମ୍ (ପଦ୍ମ:ପୁ)

—ବିଷ୍ଣୁଙ୍କ ଛଡ଼ା ଅନ୍ୟ ଦେବତାମାନଙ୍କ ଅନ୍ନ, ପୁଷ୍ପ ତଥା ଜଳ ସ୍ପର୍ଶ ଯୋଗ୍ୟ ମଧ୍ୟ ନୁହେଁ ଓ ସେ ସବୁ ମଦିରା ତୁଲ୍ୟ ଅଟେ ।

ପଦ୍ମ ପୁରାଣରେ ଶିବଙ୍କଦ୍ୱାରା ନିଜ ନିନ୍ଦାର ମଧ୍ୟ ବର୍ଣ୍ଣନା କରାଯାଇଅଛି ।

ଦେବତାନାଂ ହିତାର୍ଥାୟ ବୃତ୍ତିଃ ପାଷଣ୍ଡିନାଂ ଶୁଭେ ।
କପାଳ ଚର୍ମ ଭସ୍ମାସ୍ଥି ଧାରଣାଂ ତତ୍ କୃତଂମୟା ॥
ଯେ ମେ ମତମାଶ୍ରିତ୍ୟ ଚରନ୍ତି ପୃଥିବୀତଳେ ।
ସର୍ବଧର୍ମୈସ୍ତୁ ରହିତାଃ ପଶ୍ୟନ୍ତି ନିରୟଂ ସଦା ॥ (ପଦ୍ମ:ପୁ)

—ଶିବ, କହିଲେ, ହେ ପାର୍ବତି ! ଦେବମାନଙ୍କ ହିତ ସାଧନ ପାଇଁ ମୁଁ କପାଳ, ଭସ୍ମ ଓ ଅସ୍ଥି ଆଦି ପାଖଣ୍ଡ ବୃତ୍ତି ଧାରଣ କରିଛି । ଯେଉଁ ମନୁଷ୍ୟ ମୋ ପ୍ରକାରେ ପୃଥିବୀରେ ଆଚରଣ କରିବ, ସେ ସର୍ବଧର୍ମଚ୍ୟୁତ ହୋଇ ନର୍କଗାମୀ ହେବ ।

ଅନ୍ୟ ଏକ ସ୍ଥଳରେ ବ୍ରହ୍ମା ଓ ବିଷ୍ଣୁଙ୍କ ଶ୍ରେଷ୍ଠତ୍ୱ ସମ୍ପର୍କରେ କଳହ ସୃଷ୍ଟି ହୋଇ ପରସ୍ପର ଯୁଦ୍ଧରେ ବ୍ୟାପୃତ ହେବାର ବର୍ଣ୍ଣନା ଅଛି ।

ଅହମେବ ବରୋ ନ ତ୍ୱମହଂ ପ୍ରଭୂରହଂ ପ୍ରଭୂଃ ।
ପରସ୍ପରଂ ହନ୍ତୁ କାର୍ମୌ ହେତୁଃ ସମଚାରାଦ୍ୟମମ୍
(ଶିବ ପୁରାଣ)

—ମୁଁ ଶ୍ରେଷ୍ଠ ଅଟେ, ମୁଁ ସ୍ୱାମୀ ଅଟେ ଆଦି କହି ସେହି ଦୁଇଜଣ (ବିଷ୍ଣୁ ଓ ବ୍ରହ୍ମା) ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ ।

ସଂପ୍ରଦାୟଗୁଡ଼ିକ ସେମାନଙ୍କର ନିଜନିଜ ବାହ୍ୟ ଚିହ୍ନ (ଯଥା ତିଳକ, କଣ୍ଠି) ଆଦିର ପ୍ରଶଂସା ତଥା ଅନ୍ୟ ସଂପ୍ରଦାୟଗୁଡ଼ିକର ଚିହ୍ନକୁ ନିନ୍ଦା କରୁଥିଲେ । ବୈଷ୍ଣବମାନଙ୍କ ପଦ୍ମ ପୁରାଣରେ ଲେଖା ଅଛି ।

ନ ତସ୍ୟ କାଞ୍ଚିଦର୍ଶୀସ୍ୟାଦପି ହନ୍ତୁ ସହସ୍ରିତାଃ
ସର୍ବବେଦ ବିଦୋବାପି ସର୍ବଶାସ୍ତ୍ର ବିଶାରଦଃ ॥
ଅଧ୍ୟୁତ୍ୱାବଧ୍ୟନା ଚକ୍ର ବ୍ରାହ୍ମଣଃ ପତିତୋ ଭବେତ୍ ।
ଊର୍ଦ୍ଧ୍ୱ ପୁଣ୍ଡ୍ର ବିହୀନସ୍ତୁ ଶଂଖ ଚକ୍ର ବିବର୍ଜିତଃ ॥
ତଂ ଗର୍ଦଭେ ସମାରୋପ୍ୟ ବନ୍ଧଃ କୁର୍ଯ୍ୟାତ୍ ସ୍ୱପତ୍ତନାତ୍
(ପଦ୍ମ-ପୁ)

—ଯେଉଁ ବ୍ରାହ୍ମଣ ସହସ୍ର ଯଜ୍ଞ କରି ସମ୍ପୂର୍ଣ୍ଣ ବେଦ ଓ ଶାସ୍ତ୍ର ଅଧ୍ୟୟନ କରି ସୁଦ୍ଧା ଊର୍ଦ୍ଧ୍ୱ ପୁଣ୍ଡ୍ର (ଟିକା) ଶଂଖ ତଥା ଚକ୍ର ଧାରଣ କରେ ନାହିଁ, ସେ ପତିତ ହୋଇ ଯାଏ । ଏହିପରି ବ୍ୟକ୍ତିକୁ ଗଧ ଉପରେ ବସାଇ ନଗରରୁ ବିତାଡ଼ିତ କରାଯିବା ଉଚିତ ।

ବ୍ରାହ୍ମଣଃ କଳଜୋ ବିଦ୍ୱାନ୍ ଭସ୍ମଧାରୀ ଭବେଦ୍ୟଦି ।
ବର୍ଜୟେତ୍ତାଦୃଶଂ ଦେବି ମଦ୍ୟୋଚ୍ଛିଷ୍ଟଂ ଘଟଂ ଯଥା ॥ ପଦ୍ମ:ପୁ

--ଯେଉଁ କୁଳୀନ ବ୍ରାହ୍ମଣ ମଥାରେ ଭସ୍ମ ଧାରଣ କରେ, ମଦ୍ୟପୂର୍ଣ୍ଣ ଘଟ ସଦୃଶ ତାକୁ ଦର୍ଶନ କରିବା ଉଚିତ ନୁହେ ।

ଶିବ ପୁରାଣ ଆଦି ଶୈବ ଗ୍ରନ୍ଥଗୁଡ଼ିକରେ ଶିବଙ୍କୁହିଁ ପରମାତ୍ମା ତଥା ଅନ୍ୟ ସବୁ ଅବତାର ଓ ଦେବତାମାନଙ୍କୁ ସାଧାରଣ ଜୀବ କୁହାଯାଇଛି ।

ବ୍ରହ୍ମତ୍ୱାଚ ଜୀବତ୍ୱାତ୍ତଥାନ୍ୟେ ଦେବତା ଗଣାଃ ॥ (ଶିବ-ପୁ)

—(ଶିବଙ୍କ ଛଡ଼ା) ଅନ୍ୟ ଦେବତା ବ୍ରହ୍ମ ନୁହନ୍ତି, ସେମାନେ ଜୀବ ।

ମହେଶସ୍ୟୈବ ଦାସୋଽୟଂ ବିଷ୍ଣୁ ସ୍ତେନାନୁକମ୍ପିତଃ ॥ (ଲିଙ୍ଗ:ପୁ)

—ଏହି ବିଚାରି ବିଷ୍ଣୁ ଶିବଙ୍କ ଦାସ ଅଟେ ।

ଇନ୍ଦ୍ରୋପେନ୍ଦ୍ରାଦୟଃ ମହେଶସ୍ୟୈବ କିଙ୍କରାଃ ॥ (ଲିଙ୍ଗ:ପୁ)

—ଇନ୍ଦ୍ର ଆଦି ସବୁ ଦେବତା ଶିବଙ୍କର ଦାସ ଅଟନ୍ତି ।

ତେନ ତୁଲ୍ୟୋ ଯଦା ବିଷ୍ଣୁଃ ବ୍ରହ୍ମା ବା ଯଦି ଗଦ୍ୟତେ
ଷଷ୍ଟିବର୍ଷ ସହସ୍ରାଣି ବିଷ୍ଠାୟାଂ ଜାୟତେ କୃମିଃ ॥ (ଲିଙ୍ଗ:ପୁ)

—ଯେଉଁ ମନୁଷ୍ୟ ବିଷ୍ଣୁ ଓ ବ୍ରହ୍ମା ଆଦିଙ୍କୁ ଶିବଙ୍କ ସହ ତୁଳନା କରେ, ସେ ଷାଠିଏ ହଜାର ବର୍ଷ ପର୍ଯ୍ୟନ୍ତ ବିଷ୍ଠାର କୀଟ ହୋଇ ରହେ ।

ଶିବଭକ୍ତୋ ନ ଯୋ ରାଜା ଭକ୍ତୋଽନ୍ୟେଷୁ ସୁରେଷୁ ଚ ।
ସ୍ୱପତିଂ ଯୁବତିସ୍ତ୍ୟକ୍ତ୍ୱା ଯଥା ଜାରେଷୁ ରାଜତେ ୩୭ ॥
(ଲିଙ୍ଗ: ପୁ )

—ଯେଉଁ ରାଜା ଶିବଙ୍କ ଛଡ଼ା ଅନ୍ୟ ଦେବଦେବୀଙ୍କୁ ଭକ୍ତି କରେ, ସେ ନିଜପତିକୁ ତ୍ୟାଗ କରି ଜାରପୁରୁଷମାନଙ୍କ ସହ ଭୋଗ କରୁଥିବା ଯୁବତୀସଦୃଶ ଅଟେ ।

ଶୈବ ପୁରାଣମାନଙ୍କରେ ଅନ୍ୟ ଦେବତାମାନଙ୍କ ସହ ଶିବଙ୍କର ଯୁଦ୍ଧର ବର୍ଣ୍ଣନା ରହିଛି । ଭୈରବ ଶିବଙ୍କ ଆଜ୍ଞାରେ ବ୍ରହ୍ମାଙ୍କର ପଞ୍ଚମ ଶିର କାଟି ଦେବା ତଥା, ବିଷ୍ଣୁ ଅବତାର, ନରସିଂହ ଶିବଙ୍କ ଆକ୍ରମଣ ସହି ନ ପାରି ବନଜ ଆଡୁଆଳରେ ଲୁଚି ଯିବା ଇତ୍ୟାଦି ବିଷୟରେ ବର୍ଣ୍ଣନା ଶିବଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିବାର ଉଦ୍ଦେଶ୍ୟ ଅଟେ । ସେହିପରି ଶିବଙ୍କ ବ୍ୟବହୃତ ଭସ୍ମ, ରୁଦ୍ରାକ୍ଷ ଆଦି ଚିହ୍ନଗୁଡ଼ିକୁ ଅଗ୍ରାଧିକାର ଦେବା ପାଇଁ ଶୈବ ପୁରାଣ ଗୁଡ଼ିକରେ କୁହାଯାଇଛି ।

ଉଦ୍ଧୂଳନଂ ତ୍ରିପୁଣ୍ଡ୍ରଂ ଚ ଶ୍ରଦ୍ଧୟା ନାଚରନ୍ତି ଯେ
ତେଷାଂ ନାସ୍ତି ସମାଚାରଃ ବର୍ଣ୍ଣାଶ୍ରମ ସମନ୍ୱିତଃ ॥ ୧୩ ॥
ତେ ମହାପାତକୈର୍ଯୁକ୍ତା ଇତି ଶାସ୍ତ୍ରୀୟ ନିର୍ଣ୍ଣୟଃ ॥ ୧୬ ॥
(ଦେ. ଭା. ସ୍କ. ୫, ଅ. ୯)

—ଯେଉଁ ବ୍ୟକ୍ତି ଭସ୍ମ ଓ ତ୍ରିପୁଣ୍ଡ୍ର ଶ୍ରଦ୍ଧାପୂର୍ବକ ଧାରଣ କରେ ନାହିଁ, ତାହାର ବର୍ଣ୍ଣାଶ୍ରମଯୁକ୍ତ ଆଚରଣ ନ ଥାଏ । ସେ ମହାପାତକୀ ଅଟେ ବୋଲି ଶାସ୍ତ୍ରୀୟ ନିର୍ଣ୍ଣୟ ଅଛି ।

ଧିକ୍ ଭସ୍ମ ରହିତଂ ଭାଲଂ ଧିକ୍ ଗ୍ରାମଶିବାଳୟମ୍
ଧିଗନୀଶାର୍ଚନଂ ଜନ୍ମ ଧିଗ୍ ବିଦ୍ୟାମଶିବାଶ୍ରୟାମ୍ ॥ ୪୫ ॥
ତେବୈ ସଂକର ସୂକରସୂର ଖର ଶ୍ୱକ୍ରୋଷ୍ଟ୍ରଃ କୀଟୋପମାଃ
ଜାତା ଏବ ଭବନ୍ତି ପାପପରମାସ୍ତେ ନାରକାଃ କେବଳମ୍ ॥ ୪୬ ॥
(ଦେ: ଭା: ୫, ୯)

—ଭସ୍ମରହିତ ମସ୍ତକ, ଶିବାଳୟରହିତ ଗ୍ରାମ, ଈଶ୍ୱର ଅର୍ଚ୍ଚନ ରହିତ ଜନ୍ମ ତଥା ଶିବ-ଆଶ୍ରୟ-ହୀନ ବିଦ୍ୟାକୁ ଧିକ୍କାର ଅଟେ ।

ଯେ ଶିବଙ୍କୁ ପୂଜା କରେ ନାହିଁ, ସେ ବର୍ଣ୍ଣଶଂକର । ସେ ଶୂକର, ଅସୁର, ଖର, ଶ୍ୱାନ, ଗୃଧ୍ର ତଥା କୀଟ ସଦୃଶ ଅଟେ, ସେ ପାପ ରୂପରୁ ଜାତ ହୁଏ ତଥା ସର୍ବଦା ନରକଗାମୀ ହୁଏ ।

ଶାକ୍ତମାନଙ୍କର ଏକ ମାତ୍ର ପୁରାଣ 'ଦେବୀଭାଗବତ'ରେ ବିଷ୍ଣୁ, ବ୍ରହ୍ମା ତଥା ଶିବଙ୍କୁ ନିନ୍ଦା କରାଯାଇଛି । ଦେବୀ ଏହି ତିନି ଦେବତାଙ୍କୁ ସ୍ତ୍ରୀ ରୂପରେ ପରିଣତ କରିବା, ଦେବୀଙ୍କର ବିଶ୍ୱରୂପ ଦେଖିବା ପରେ ବିଷ୍ଣୁ ଆଦି ଦେବଗଣ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାହାଙ୍କ ସ୍ତୁତି କରିଇବା ଆଦି କଥା ଏହି ପୁରାଣରେ ବର୍ଣ୍ଣିତ ଅଛି । ଏଥିରେ ଥିବା ଅନ୍ୟ ଏକ କଥାରେ ବିଷ୍ଣୁ ତଥା ତାହାଙ୍କ ଅବତାରଗୁଡ଼ିକୁ ଅପମାନିତ କରିବା ପାଇଁ ଚେଷ୍ଟା କରାଯାଇଛି । ଇନ୍ଦ୍ରଙ୍କ ଅନୁରୋଧରେ ବିଷ୍ଣୁ ସୁଦର୍ଶନ ଚକ୍ରଦ୍ୱାରା ଭୃଗୁପତ୍ନୀଙ୍କ ଶିରଚ୍ଛେଦ କରିଥିଲେ । ଏହାଦ୍ୱାରା ଦୁଃଖ ଓ ଶୋକରେ ଜର୍ଜରିତ ହୋଇ ଭୃଗୁ ବିଷ୍ଣୁଙ୍କୁ ପୃଥିବୀପୃଷ୍ଠରେ ଅବତାର ନେବା ପାଇଁ ଅଭିଶାପ ଦେଇଥିଲେ ।

ଅବତାରା ମୃତ୍ୟୁ ଲୋକେ ସନ୍ତୁ ମଚ୍ଛାପସମ୍ଭବାଃ
ପ୍ରାୟୋ ଗର୍ଭ ଭବଂ ଦୁଃଖଂ ଭୁଂକ୍ଷ୍ୱ ପାପାଜ୍ଜନାର୍ଦ୍ଦନ ॥ ୮ ॥
(ଦେ: ଭା. ସ୍କ ୪ ଅ ୧୨)

—ତୁମେ ମୋର ଶାପରୁ ମୃତ୍ୟୁ ଲୋକରେ ଅନେକ ଥର ଅବତାର ନେବ ତଥା ଗର୍ଭ ଯନ୍ତ୍ରଣାଦ୍ୱାରା ନିଜ ପାପକର୍ମର ଫଳ ଭୋଗ କରିବ ।

ଏହିପରି ଦେବୀ ଭାଗବତରେ ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର, ରାମ, କୃଷ୍ଣ, ପରଶୁରାମ, ବୁଦ୍ଧ ଆଦି ସମସ୍ତ ଦେବ ଓ ଅବତାର-ମାନଙ୍କ ଦୋଷ ଦର୍ଶାଯାଇଛି ଓ ସେମାନଙ୍କୁ ନିନ୍ଦା କରାଯାଇଛି ।

ଏଥିରେ ଶାକ୍ତମାନଙ୍କୁ ଭସ୍ମ ପ୍ରଲେପ କରିବା ପାଇଁ ଉପଦେଶ ଦିଆଯାଇଛି ଓ ଏହା ନ କଲେ ମନୁଷ୍ୟଙ୍କୁ ଚଣ୍ଡାଳ ଆଖ୍ୟା ଦେବା ପାଇଁ କୁହାଯାଇଛି ।

ବ୍ରହ୍ମାଙ୍କୁ ପୁରାଣଗୁଡ଼ିକରେ ବିଶେଷ ମହତ୍ତ୍ୱ ଦିଆଯାଇ ନାହିଁ । ବ୍ରହ୍ମାଙ୍କ ସ୍ୱତନ୍ତ୍ର ପୁରାଣ କିମ୍ବା ସମ୍ପ୍ରଦାୟ ନାହିଁ । କେବଳ ପୁଷ୍କର ତୀର୍ଥ ଛଡ଼ା ବ୍ରହ୍ମାଙ୍କ ପୂଜା କେଉଁଠାରେ ହୁଏ ନାହିଁ । ବ୍ରହ୍ମାଙ୍କୁ ପୂଜା ପାଇବାରୁ ବଞ୍ଚିତ କରିବା ବିଷୟ ବିଭିନ୍ନ ପୁରାଣରେ ଭିନ୍ନ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇଛି । ପଦ୍ମ ପୁରାଣରେ ଲେଖା ଅଛି ଯେ ଥରେ ବ୍ରହ୍ମା ପୁଷ୍କରଠାରେ ଏକ ଯଜ୍ଞର ଆୟୋଜନ କରିଥିଲେ । ବ୍ରହ୍ମାଙ୍କ ସ୍ତ୍ରୀ ସାବିତ୍ରୀ ଯଜ୍ଞ ସ୍ଥଳକୁ ଆସିବା ପାଇଁ ବିଳମ୍ବ କରିବାରୁ ଇନ୍ଦ୍ର ଏକ ଗୋପକନ୍ୟାକୁ ବ୍ରହ୍ମାଙ୍କ ସହିତ ଗାନ୍ଧର୍ବ ରୀତିରେ ବିବାହ କରାଇ ଯଜ୍ଞ ଅନୁଷ୍ଠାନ କରାଇଲେ । ଇତି ମଧ୍ୟରେ ସାବିତ୍ରୀ ସେହି ସ୍ଥଳରେ ଉପସ୍ଥିତ ହୋଇ ବ୍ରହ୍ମାଙ୍କୁ ଭର୍ତ୍ସନା କଲେ । ବ୍ରହ୍ମା ଏହି ବିବାହ ବିଷ୍ଣୁ ଓ ଇନ୍ଦ୍ରଙ୍କ ଅନୁମୋଦନରେ ହୋଇଛି ବୋଲି କହି କ୍ଷମା ପ୍ରାର୍ଥନା କଲେ । କିନ୍ତୁ ଶାପ ଦେଲେ—

ନୈବ ତେ ବ୍ରାହ୍ମଣାଃ ପୂଜାଂ କରିଷ୍ୟନ୍ତି କଦାଚନ ।
ଋତେ ତୁ କାର୍ତ୍ତିକୀମେକାଂ ପୂଜାଂ ସାମ୍ବତ୍ସରୀଂ ତବ ॥
(ପଦ୍ମପୁରାଣ)

—କେବଳ କାର୍ତ୍ତିକ ପୂର୍ଣ୍ଣିମା ଛଡ଼ା ତୁମ ପୂଜା ବ୍ରାହ୍ମଣମାନେ ଅନ୍ୟ ସମୟରେ କରିବେ ନାହିଁ ।

ଏହିପରି ଶିବପୁରାଣ ବିଂଦ୍ୟେଶ୍ୱର ସଂହିତା ଷଷ୍ଠ ଅଧ୍ୟାୟରେ ଥିବା ଅନ୍ୟ ଏକ ପ୍ରସଙ୍ଗରେ ବ୍ରହ୍ମାଙ୍କ ପୂଜାକୁ ନିଷେଧ କରାଯାଇଛି ।

ସେଥିରେ ଲେଖାଅଛି ଯେ ଥରେ ବିଷ୍ଣୁ ଓ ବ୍ରହ୍ମାଙ୍କ ମଧ୍ୟରେ ନିଜ ନିଜ କ୍ଷମତା ଓ ମହତ୍ତ୍ୱ ନେଇ ବିବାଦ ଚାଲିଲା । ନିଜ ମଧ୍ୟରେ ସମସ୍ୟାର ସମାଧାନ କରି ନ ପାରି ଦୁହେଁ ଶିବଙ୍କ ନିକଟକୁ ଗଲେ । ଶିବ ଦୁଇ ଜଣଙ୍କ ମଧ୍ୟରେ ଅନନ୍ତ ସ୍ତମ୍ଭ ନିର୍ମାଣ କରି, ତାହାର ଅନ୍ତ ଖୋଜି ବାହାର କରିବା ପାଇଁ ଦୁହିଁଙ୍କୁ ପଠାଇଲେ । ବିଷ୍ଣୁ ଏହାର ଅନ୍ତ ନ ପାଇ ଶିବଙ୍କୁ ନିଜର ଅକ୍ଷମତା ପ୍ରକାଶ କଲେ । କିନ୍ତୁ ବ୍ରହ୍ମା ସ୍ତମ୍ଭର ଅନ୍ତ ପାଇଛନ୍ତି ବୋଲି ମିଥ୍ୟା କହିଲେ । ଶିବ ଏହା ବିଚାର କରି ବିଷ୍ଣୁଙ୍କୁ ପୂଜା ପାଇବା ପାଇଁ ତଥା ବ୍ରହ୍ମାଙ୍କୁ ପୂଜା ନ ପାଇବା ପାଇଁ ବର ଦେଲେ ।

ନାତସ୍ତେ ସତ୍ଭକ୍ତିର୍ଲୋକେ ଭୂୟାଂ ସ୍ଥାନୋଽସତ୍ୟବାଦିନମ୍ ।
—ହେ ବ୍ରହ୍ମା ! ଅସତ୍ୟ ଭାଷଣ ଯୋଗୁଁ ସଂସାରରେ ତୁମେ ପୂଜା ପାଇବ ନାହିଁ ।

ବ୍ରହ୍ମବୈବର୍ତ୍ତ ପୁରାଣର ଜନ୍ମ ଖଣ୍ଡ ଅଧ୍ୟାୟ ୩୨ ରେ ଏହି କିମ୍ବଦନ୍ତୀର ଆଶ୍ରୟରେ ବ୍ରହ୍ମାଙ୍କୁ ଅପୂଜ୍ୟ ବୋଲି ଘୋଷଣା କରାଯାଇଛି । କୁହାଯାଇଛି ଯେ ବିଷ୍ଣୁଙ୍କ ପ୍ରିୟା ହୋଇଥିବାରୁ ବ୍ରହ୍ମା ତାହାଙ୍କୁ ବାରଣ କଲେ, ଏଥିରେ କ୍ରୁଦ୍ଧ ହୋଇ ମୋହିନୀ ବ୍ରହ୍ମାଙ୍କୁ ସଂସାରରେ ଅପୂଜ୍ୟ ହେବାକୁ ଶାପ ଦେଲେ । ଶାପରୁ ରକ୍ଷା ପାଇବା ପାଇଁ ବ୍ରହ୍ମା ବିଷ୍ଣୁଙ୍କ ଶରଣ ପଶିଲେ । ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ ଯେ ଅନ୍ୟ ଦେବତାଙ୍କ ସଙ୍ଗେ ସେ ପୂଜା ପାଇ ପାରିବେ, କିନ୍ତୁ ସ୍ୱତନ୍ତ୍ର ଭାବରେ ନୁହେଁ ।

ଏହିପରି ଭାବରେ ବିଭିନ୍ନ କାହାଣୀରୁ ଜଣାଯାଏ ଯେ, କୌଣସି ନା କୌଣସି କାରଣରୁ ବ୍ରହ୍ମାଙ୍କ ଉପରେ ଦୋଷ ଲଦି

ହୋଇଥାଇ ତାଙ୍କୁ ଅପୂଜ୍ୟ ସିଦ୍ଧ କରିବା ପାଇଁ ପୁରାଣଗୁଡ଼ିକରେ ଅନେକ ଚେଷ୍ଟା କରାଯାଇଛି । ବ୍ରହ୍ମାଙ୍କଠାରୁ ଅଧିକ ଦୋଷ କରିଥିବା ଶିବଙ୍କୁ ଓ ବିଷ୍ଣୁଙ୍କୁ ପୂଜା କରାଯାଉଛି । ବସ୍ତୁତଃ ମୂର୍ତ୍ତିପୂଜା ପ୍ରଚାରରେ ବିଶେଷ ହାତ ଥିବା ଅବ୍ରାହ୍ମଣମାନେ ବ୍ରାହ୍ମଣଙ୍କର ପ୍ରତୀକ ବ୍ରହ୍ମାଙ୍କୁ କଳଙ୍କିତ କରିବା ପାଇଁ ଚେଷ୍ଟା କରିଛନ୍ତି । ବୌଦ୍ଧ କାଳରେ ମୂର୍ତ୍ତିପୂଜାର ଆରମ୍ଭ ହୋଇଥିଲା । ସ୍ୱୟଂ ବୁଦ୍ଧ କ୍ଷତ୍ରିୟ ବଂଶଜ ଥିଲେ । ଶିବ ଓ ବିଷ୍ଣୁଙ୍କ କାର୍ଯ୍ୟକଳାପ କ୍ଷତ୍ରିୟୋଚିତ ଅଟେ । ବିଷ୍ଣୁଙ୍କ ମୁଖ୍ୟ ଅବତାର ଶ୍ରୀରାମ ଓ କୃଷ୍ଣ କ୍ଷତ୍ରିୟ ଥିଲେ । ଅବତାରଗୁଡ଼ିକ ମଧ୍ୟରେ କେବଳ ପରଶୁରାମ ବ୍ରାହ୍ମଣ ଥିଲେ । କିନ୍ତୁ ତାଙ୍କର ବିଶେଷ ପୂଜା ହୁଏ ନାହିଁ । ତେଣୁ ପ୍ରତୀତ ହୁଏ ଯେ ବ୍ରାହ୍ମଣ୍ୟ ଧର୍ମର ପ୍ରତୀକ ବ୍ରହ୍ମାଙ୍କୁ ପୂର୍ବରୁ ବହିଷ୍କାର କରିବା ପାଇଁ ଚେଷ୍ଟା କରାଯାଇଛି ।

ବ୍ରହ୍ମା ବୈଦିକ ଜ୍ଞାନର ଆଦି ପ୍ରଚାରକ ଅଟନ୍ତି । ଯଜ୍ଞାନୁଷ୍ଠାନରେ ଚାରି ଋତ୍ୱିକଙ୍କ ମଧ୍ୟରେ ବ୍ରହ୍ମାଙ୍କର ମୁଖ୍ୟ ସ୍ଥାନ ଅଟେ । କିନ୍ତୁ ଶୈବ, ଶାକ୍ତ, ବୈଷ୍ଣବ ସମ୍ପ୍ରଦାୟ ଗୁଡିକ ବେଦ ସ୍ଥାନରେ ନିଜ ନିଜ ପୁରାଣ ତଥା ଯଜ୍ଞ ସ୍ଥାନରେ ନିଜ ନିଜ ଉପାସ୍ୟ ଦେବମୂର୍ତ୍ତି ଓ ମନ୍ଦିର ଗୁଡ଼ିକୁ ପ୍ରାଧାନତା ଦେଇ ଆସୁଛନ୍ତି । ଶାକ୍ତମାନେ ଯଜ୍ଞାନୁଷ୍ଠାନ କରୁଥିଲେ ମଧ୍ୟ ପଶୁବଳି ଓ ମାଂସ ମଦିରା ଆହୂତି ଆଦି ଅବୈଦିକ କର୍ମଦ୍ୱାରା ତାହାର ମର୍ଯ୍ୟାଦା ନଷ୍ଟ କରନ୍ତି ।

ଶିବଙ୍କଦ୍ୱାରା ଯଜ୍ଞ ବିଧ୍ୱଂସ କରିବା ବର୍ଣ୍ଣନା ପୁରାଣରେ ଦେଖିବାକୁ ମିଳେ । ପଦ୍ମପୁରାଣ ସୃଷ୍ଟି ଖଣ୍ଡ ସପ୍ତଦଶ ଅଧ୍ୟାୟରେ ଲେଖା ଅଛି ଯେ, ଥରେ ବ୍ରହ୍ମା ଯଜ୍ଞ କରୁଥିବା ସମୟରେ ମହାଦେବ ଏକ ଖପୁରି ଧରି ଯଜ୍ଞଶାଳାରେ ଭିକ୍ଷା ମାଗିବା ପାଇଁ ପ୍ରବେଶ କଲେ । ବ୍ରାହ୍ମଣମାନେ ବହୁ କଷ୍ଟରେ ତାଙ୍କୁ ସନ୍ତୁଷ୍ଟ କରି ଯଜ୍ଞଶାଳା

ବାହାରକୁ ପଠାଇଲେ । କିନ୍ତୁ ସେ ସଙ୍ଗରେ ଆସିଥିବା ଖପୁରୀ ଗୁଡ଼ି ଦେଇ ଗଲେ । ଖପୁରୀକୁ ଫୋପାଡ଼ି ଦେବାମାତ୍ରେ ତାହା ବଦଳରେ ଅନ୍ୟ ଏକ ଖପୁରୀ ଫେରି ଆସୁଥିଲା । ବ୍ୟାକୁଳ ହୋଇ ସମସ୍ତେ ଶିବଙ୍କୁ ପ୍ରାର୍ଥନା କରିବାରୁ ସେଠାରୁ କପାଳ ଘୁଞ୍ଚିଗଲା, ପୁଣି ଏକ ମନ୍ୱନ୍ତର ପରେ ବ୍ରହ୍ମା ଯଜ୍ଞ କରୁଥିବା ସମୟରେ ଶିବ ନିଜ ଲିଙ୍ଗକୁ ହସ୍ତରେ ଧାରଣ କରି ଯଜ୍ଞମଣ୍ଡପକୁ ଆସିଲେ । ସ୍ତ୍ରୀମାନଙ୍କ ସମ୍ମୁଖରେ ଏପରି କାର୍ଯ୍ୟ ନିନ୍ଦନୀୟ ବୋଲି ବ୍ରାହ୍ମଣମାନେ ତାଙ୍କୁ ଧିକ୍କାର କରିବାରୁ ସେ ବ୍ରାହ୍ମଣମାନଙ୍କୁ ଅନେକ ଶାପ ଦେଲେ ।

ପଦ୍ମ ପୁରାଣ ସୃଷ୍ଟି ଖଣ୍ଡ ପଞ୍ଚମ ଅଧ୍ୟାୟରେ ଶିବଙ୍କଦ୍ୱାରା ନିଜ ଶ୍ୱଶୁର ରାଜା ଦକ୍ଷଙ୍କର ଯଜ୍ଞଧ୍ୱଂସ କଥା ବର୍ଣ୍ଣନା କରାଯାଇଛି । ଦକ୍ଷରାଜା ଯଜ୍ଞ ନିମନ୍ତେ ଶିବଙ୍କୁ ନିମନ୍ତ୍ରଣ କଲେ ନାହିଁ । ତାହାର କାରଣ ସମ୍ବନ୍ଧରେ ଦକ୍ଷରାଜା ପାର୍ବତୀଙ୍କୁ ଯାହା କହିଲେ, ସେଥିରୁ ଶିବଙ୍କର ଆସୁରିକ ପ୍ରବୃତ୍ତିର ପୂର୍ଣ୍ଣ ସୂଚନା ମିଳେ । ଦକ୍ଷ କହିଲେ, ହେ ପାର୍ବତୀ, ତୁମର ପତି ଚର୍ମ, ଚିତାଭସ୍ମ, ମୃତ ବ୍ୟକ୍ତିମାନଙ୍କର କପାଳର ମାଳା ଆଦି ଅଶୋଭନୀୟ ବସ୍ତୁ ଧାରଣ କରି ଶ୍ମଶାନରେ ବାସ କରନ୍ତି । ସେଥିପାଇଁ ଅନ୍ୟ ଦେବଗଣଙ୍କ ସହିତ ତାହାଙ୍କୁ ନିମନ୍ତ୍ରଣ କରିବାକୁ ମୋତେ ଲଜ୍ଜା ଆସୁଛି । ଏହିପରି ରାଜା ଦକ୍ଷଙ୍କ-ଦ୍ୱାରା ଅପମାନିତ ହୋଇ ଶିବ କ୍ରୁଦ୍ଧ ହେଲେ ଓ ତାଙ୍କ ମୁଖ୍ୟ ସେନାପତି ବୀରଭଦ୍ରଙ୍କୁ ଅନ୍ୟ ଗଣମାନଙ୍କ ସହିତ ପଠାଇଲେ । ବିଷ୍ଣୁ ଘୋର ଯୁଦ୍ଧ କରି ପରାସ୍ତ ହେଲେ ଓ ତାହାଙ୍କ ମୁଣ୍ଡ କାଟି ଯଜ୍ଞ କୁଣ୍ଡରେ ପକାଇ ଦିଆଗଲା । "ସରସ୍ୱତୀ" ଓ "ବେଦମାତା"ଙ୍କ ନାସିକାକୁ ବୀରଭଦ୍ର ନିଜ ତୀକ୍ଷ୍ଣ ଅସ୍ତ୍ରରେ କାଟିଦେଲେ । ପ୍ରଜାପତିଙ୍କ ମୁଣ୍ଡ କାଟି ଦଗ୍ଧ କରାଗଲା ଇତ୍ୟାଦି ।

ଏଥିରୁ ଜଣା ପଡ଼େ ଯେ, ଶୈବମାନେ ବୈଦିକ ଯଜ୍ଞର ବିରୋଧୀ ଥିଲେ ଓ ରାମାୟଣ କାଳର ରାକ୍ଷସମାନଙ୍କ ପରି ଯଜ୍ଞ ବିଧ୍ୱଂସକ ଥିଲେ । ସେମାନଙ୍କଦ୍ୱାରା ପ୍ରଚଳିତ ଶିବଲିଙ୍ଗ ପୂଜା ବାମ ମାର୍ଗର ଭୈରବୀ ଚକ୍ରର ଭୈରବ ଶିବଙ୍କର ଜଣେ ମୁଖ୍ୟ ଗଣ ଅଟନ୍ତି । ଶାକ୍ତମାନଙ୍କ ବାମମାର୍ଗ ସହିତ ମଧ୍ୟ ଶୈବମାନଙ୍କର ସମ୍ପର୍କ ଅଛି । ବୈଷ୍ଣବମାନେ ମାଂସ ମଦିରା ଆଦି କଥାର ବିରୋଧ କଲେ ମଧ୍ୟ ସେମାନଙ୍କ ସଂପ୍ରଦାୟ ଯଜ୍ଞ-ଉପାସନା ବଦଳରେ ମୂର୍ତ୍ତି-ପୂଜାର ପ୍ରଚଳନ ଆରମ୍ଭ କରିବାରେ ବିଶେଷ ଭୂମିକା ଗ୍ରହଣ କରିଛି । ଅବତାରବାଦର ବିକାଶ ଭାଗବତକୁ 'ପଞ୍ଚମ ବେଦ' କହିବା, ବେଦ-ଶାସ୍ତ୍ର ଗୁଡ଼ିକରେ ଅତୃପ୍ତ ହୋଇ ବେଦବ୍ୟାସ 'ଭାଗବତ' ରଚନା କଲେ ବୋଲି କଳ୍ପନା, କଳିଯୁଗରେ ତପ ଯୋଗ ତଥା ସମାଧି ଆଦି କର୍ମ ନିଷ୍ଫଳ କହିବା, କଳିଯୁଗରେ ରାମ କୃଷ୍ଣ ପ୍ରଭୃତିଙ୍କ ନାମ କୀର୍ତ୍ତନ କରି ମୁକ୍ତି ପାଇବାର ସରଳ ମାର୍ଗ—ଏ ସମସ୍ତ ବିଶ୍ୱାସ ସୃଷ୍ଟି କରି ଲୋକଙ୍କୁ ବେଦବିମୁଖ କରିବାରେ ବୈଷ୍ଣବ ସଂପ୍ରଦାୟର ପ୍ରୟାସ ସର୍ବବିଦିତ ।

ବୈଷ୍ଣବ ସଂପ୍ରଦାୟର ପରସ୍ତ୍ରୀଗମନ ପ୍ରଭୃତି ବ୍ୟଭିଚାରପୂର୍ଣ୍ଣ ପ୍ରବୃତ୍ତି ଏହାକୁ ବାମମାର୍ଗୀ ସଂପ୍ରଦାୟ ରୂପରେ ପରିଗଣିତ କରେ । ଏହି ସଂପ୍ରଦାୟର ଉପାସ୍ୟ ଦେବ ବିଷ୍ଣୁଙ୍କ ଦ୍ୱାରା ଜଳନ୍ଧରର ପତିବ୍ରତା ସ୍ତ୍ରୀ ବୃନ୍ଦାଙ୍କ ସତୀତ୍ୱ ନାଶ କରିବା, 'କୃଷ୍ଣ ଅବତାର'ଙ୍କ କୁବ୍‌ଜା ଦାସୀ ସହିତ ମୈଥୁନ, କୃଷ୍ଣଙ୍କ ନିଜ ପତ୍ନୀ ଥାଉ ଥାଉ ପୂଜାପାଠରେ ରାଧାଙ୍କୁ ସ୍ଥାନ ଦେବା ଆଦି ଅସଂଖ୍ୟ ବ୍ୟଭିଚାର-ପୂର୍ଣ୍ଣ କଥା ଅତି ଲଜ୍ଜାପ୍ରଦ ଅଟେ । ବୈଷ୍ଣବ ସଂପ୍ରଦାୟର ଗ୍ରନ୍ଥ-ଗୁଡ଼ିକରେ କୃଷ୍ଣଙ୍କ ଲୀଳାସ୍ଥଳୀ ବ୍ରଜରେ ହୋଇଥିବା ବ୍ୟଭିଚାରକୁ

ଧର୍ମ-ନାମ ଦେବା ଫଳରେ ସମାଜରେ ତାହାର ଅତ୍ୟନ୍ତ କୁପ୍ରଭାବ ପଡ଼ୁଛି । ଦକ୍ଷିଣ ଭାରତରେ ସଦ୍‌ଗୃହସ୍ଥମାନେ ନିଜ କନ୍ୟାମାନଙ୍କୁ ବିଷ୍ଣୁମୂର୍ତ୍ତି ସହ ବିବାହ କରାଇ ମନ୍ଦିରରେ ଛାଡ଼ିଦେବା, ଏହି ସମ୍ପ୍ରଦାୟର ଗୋସ୍ୱାମୀ, ସାଧୁ, ମହନ୍ତ ଆଦି ବ୍ୟକ୍ତିଙ୍କଦ୍ୱାରା ନିଜ ଶିଷ୍ୟା ଓ ଅନୁଗାମିନୀମାନଙ୍କ ସହ ଦୁରାଚାରରେ ଲିପ୍ତ ରହିବା ପ୍ରଭୃତି ବୈଷ୍ଣବ ସଂପ୍ରଦାୟର ଅଶୋଭନୀୟ କ୍ରିୟାକଳାପର ପରିଚାୟକ ଅଟେ । ପୁରୀଠାରେ ଥିବା ଜଗନ୍ନାଥ ମନ୍ଦିରରେ ଅଙ୍କିତ ବ୍ୟଭିଚାର ମୂର୍ତ୍ତି ଚିହ୍ନ ମଧ୍ୟ ବୈଷ୍ଣବ ସଂପ୍ରଦାୟର ପ୍ରଭାବରୁ ବାଦ ପଡ଼ି ନାହିଁ ।

ବେଦ ପ୍ରଭୃତି ଆର୍ଯ୍ୟ ଧର୍ମଶାସ୍ତ୍ରଗୁଡ଼ିକରେ ଦୈନିକ ପଞ୍ଚଯଜ୍ଞ ମଧ୍ୟରୁ ଦେବଯଜ୍ଞର ବିଶେଷ ମହତ୍ତ୍ୱ ରହିଛି । ଅଗ୍ନିହୋତ୍ରଦ୍ୱାରା ପାଞ୍ଚ ଭୌତିକ ଦେବଙ୍କ ପୂଜା ଅଥବା ଶୁଦ୍ଧି କରିବାର ନାମ ଦେବଯଜ୍ଞ ଅଟେ ; କିନ୍ତୁ ପରବର୍ତ୍ତୀ କାଳରେ ବିଭିନ୍ନ ସମ୍ପ୍ରଦାୟଦ୍ୱାରା ବ୍ରହ୍ମା, ବିଷ୍ଣୁ ଆଦି କଳ୍ପିତ ଦେବଙ୍କ ପୂଜା ପ୍ରଚଳିତ ହେବାଦ୍ୱାରା ମୂର୍ତ୍ତିପୂଜା ଦେବ-ଯଜ୍ଞର ସ୍ଥାନ ଗ୍ରହଣ କଲା । ରାମାୟଣ ଓ ମହାଭାରତ କାଳରେ ଅନୁଷ୍ଠିତ ହେଉଥିବା ଅଶ୍ୱମେଧ ଯଜ୍ଞ ସ୍ଥଳରେ ପ୍ରତିମା ପୂଜା ଓ ତୀର୍ଥ-ଯାତ୍ରା ଆଦି କ୍ରିୟା ପ୍ରଚଳନ ଆରମ୍ଭ ହେଲା । ଆମ ଦେଶରେ ଶିବ ଲିଙ୍ଗ ପୂଜା ବିଶେଷ ଭାବରେ ପ୍ରସାର ଲାଭ କରିଛି । ପୁରାଣମାନଙ୍କ ସମ୍ବନ୍ଧରେ ଶିବଲିଙ୍ଗ ପୂଜା ସମ୍ବନ୍ଧରେ ଅନେକ ଅଶ୍ଳୀଳ କିମ୍ବଦନ୍ତୀ ରହିଛି । ଦୁଃଖର କଥା ଯେ, ଆଜିର ବିଚାରଶୀଳ ବିଦ୍ୱାନଗଣ ଏହା ବିରୁଦ୍ଧରେ ସ୍ୱରୋତ୍ତୋଳନ ନ କରି ଏହି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହେଉଛନ୍ତି । କେତେକ ନବୀନ ବ୍ୟାଖ୍ୟାକାରଙ୍କ ମତରେ ଲିଙ୍ଗ ଶବ୍ଦର ଅର୍ଥ ଚିହ୍ନ । ତେଣୁ ଶିବଲିଙ୍ଗ ଶବ୍ଦର ଅର୍ଥ ଶିବଙ୍କ ଚିହ୍ନ ଅଟେ । ଜନ୍ମ-

ଠାରୁ ମରଣ ପର୍ଯ୍ୟନ୍ତ ଉପସ୍ଥେନ୍ଦ୍ରିୟ ରୂପକ ଚିହ୍ନ ହିଁ ସ୍ତ୍ରୀ ପୁରୁଷ ବର୍ଗ ନିର୍ଦ୍ଧାରଣ କରିଥାଏ । କିନ୍ତୁ ପୁରାଣମାନଙ୍କରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ 'ଶିବଲିଙ୍ଗ', ଶିବଙ୍କ ଚିହ୍ନ ବୋଲି ନ ବୁଝାଇ ତାହାଙ୍କ ଉପସ୍ଥେନ୍ଦ୍ରିୟକୁ ହିଁ ବୁଝାଇ ଥାଏ ।

* ଶିବ ପୁରାଣରେ ଲେଖାଅଛି—ଦାରୁ ନାମକ ବଣରେ ଶିବଙ୍କ ଉପାସକ ଓ ସତ୍‌ପୁରୁଷମାନେ ବାସ କରୁଥିଲେ । ଋଷିପତ୍ନୀଗଣ କାଷ୍ଠ ଚୟନ ପାଇଁ ଅରଣ୍ୟ ମଧ୍ୟକୁ ଯିବାବେଳେ ମହାଦେବ ଶିବ ନଗ୍ନ ବେଶରେ ବିଭୂଷିତ ସୁଶୋଭିତ ହୋଇ, ହସ୍ତରେ ଲିଙ୍ଗ ଧାରଣ ପୂର୍ବକ ପହଞ୍ଚିଲେ । ତାହାଙ୍କ ଅଶୋଭନୀୟ ସ୍ୱରୂପ ଦେଖି ଋଷିପତ୍ନୀଗଣ ଭୟଭୀତ ଓ ଆଶ୍ଚର୍ଯ୍ୟାନ୍ୱିତ ହେଲେ । କେତେ ଜଣ ତାହାଙ୍କୁ ଓ କେତେକ ପରସ୍ପର ମଧ୍ୟରେ ସଂଘର୍ଷ କରିବାକୁ ଲାଗିଲେ । ଇତି ମଧ୍ୟରେ ଋଷିଗଣ ସେଠାରେ ପହଞ୍ଚିଲେ ଓ ଏପରି ବିରୁଦ୍ଧାଚରଣ ଦେଖି କ୍ରୋଧରେ ଜର୍ଜରିତ ହେଲେ । ସେମାନେ ଶିବଙ୍କୁ ଅଭିଶାପ ପ୍ରଦାନ କରି କହିଲେ—ତୁମେ ବେଦର ବିରୁଦ୍ଧାଚରଣ କରି ଯେଉଁ ଜଘନ୍ୟ କାର୍ଯ୍ୟ କରୁଅଛ, ତାହାର ଫଳ ସ୍ୱରୂପ ତୁମର ଲିଙ୍ଗ ଭୂପତିତ ହେଉ । ଏହି ଶାପ ବଳରେ ଶିବଙ୍କ ଲିଙ୍ଗ ଭୂପତିତ ହୋଇ ଅଗ୍ନି ରୂପ ଧାରଣ କଲା ଓ ପାତାଳ, ସ୍ୱର୍ଗ, ମର୍ତ୍ତ୍ୟ ପ୍ରଭୃତିରେ ଧ୍ୱଂସ ସାଧନ କଲା । ସେହି ଲିଙ୍ଗକୁ ଶାନ୍ତ କରିବା ପାଇଁ ଋଷିଗଣ ବ୍ରହ୍ମାଙ୍କ ଶରଣ ପଶିଲେ । ବ୍ରହ୍ମା ସେମାନଙ୍କୁ କହିଲେ ଯେ ପାର୍ବତୀ ଯୋନି ରୂପ ଧାରଣ କଲେ ଶିବଲିଙ୍ଗ ସ୍ଥିର ହୋଇ ପାରିବ । ଏପରି ଭାବେ ଋଷିଗଣ ଉଭୟ ଦେବଦେବୀଙ୍କୁ ସ୍ତୁତି କରି ପାର୍ବତୀଙ୍କ ସହାୟତାରେ ସେହି ଉତ୍ତମ ଲିଙ୍ଗକୁ ସ୍ଥାପନ କଲେ ।

* ଶିବ ପୁରାଣ କୋଟି ରୁଦ୍ର ସଂହିତା ୪, ଅଧ୍ୟାୟ ୧୨

ଉପର୍ଯ୍ୟୁକ୍ତ କଥା ଅତ୍ୟନ୍ତ ଅଶ୍ଳୀଳ ହୋଇଲେ ମଧ୍ୟ ପ୍ରକରଣ ବଶତଃ ଏଠାରେ ଉପସ୍ଥାପନ କରାଗଲା । ଆଜିକାଲି ଶିବାଳୟ ଗୁଡ଼ିକରେ ପୂଜା କରାଯାଉଥିବା ଶିବ ଲିଙ୍ଗ ଓ ଜଳନ୍ଧର ସେହି ଆକୃତିର ଅଟେ । ଲିଙ୍ଗ ଉପରେ ଥିବା ଜଳପୂର୍ଣ୍ଣ ଘଟ ଶିବ ଲିଙ୍ଗକୁ ଶାନ୍ତ ରଖିବା ପାଇଁ ଉଦ୍ଦିଷ୍ଟ ।

* ସେହିପରି ପଦ୍ମପୁରାଣରେ ଲେଖାଅଛି ଯେ ଶିବ ଭୃଗୁ ଋଷିଙ୍କ ଆଗମନକୁ ସମ୍ମାନ ନ ଦେଖାଇ ପାର୍ବତୀଙ୍କ ସହ ଲୀଳାରେ ମତ୍ତ ରହିବାରୁ ଭୃଗୁ ଶିବଙ୍କୁ ଶାପ ଦେଇ କହିଲେ—

ନାରୀ ସଙ୍ଗମ ମତ୍ତୋଽସୌ ଯସ୍ମାନ୍ମାମବମନ୍ୟତେ ।<br>
ଯୋନି-ଲିଙ୍ଗ-ସ୍ୱରୂପଂ ବୈ ତସ୍ମାତ୍ତସ୍ୟ ଭବିଷ୍ୟତି ॥

—ହେ ଶିବ ! ତୁମେ ସ୍ତ୍ରୀ ସଙ୍ଗରେ ମତ୍ତ ରହି ମୋର ଅପମାନ କରିଛ ସେଥିପାଇଁ ତୁମର ସ୍ୱରୂପ ଯୋନିଲିଙ୍ଗ ହୋଇଯିବ ।

+ ଭବିଷ୍ୟ ପୁରାଣରେ ଲେଖା ଅଛି, ଏକଦା ଋଷି ଅତ୍ରି ନିଜ ପତ୍ନୀ ଅନସୂୟାଙ୍କ ସହ ଗଙ୍ଗାନଦୀ କୂଳରେ ବାସ କରୁଥିଲେ । ଅତ୍ରିଙ୍କ ଅନୁପସ୍ଥିତି ଦେଖି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତାଙ୍କ ପତ୍ନୀ ଅନସୂୟାଙ୍କ ସହ ବାର୍ତ୍ତାଳାପ ଆରମ୍ଭ କଲେ ।

ମହାଦେବ ନିଜ ଲିଙ୍ଗ ହସ୍ତରେ ଧାରଣ କରି.........ବ୍ରହ୍ମା କାମ ମୋହିତ ହୋଇ ବେଦର ଉଲ୍ଲଂଘନ କରି ଅନସୂୟାଙ୍କ ବଶରେ

---

* ପଦ୍ମ ପୁରାଣ ଷଷ୍ଠ ଉତ୍ତର ଖଣ୍ଡ ଅଧ୍ୟାୟ ୨୫୫

+ ଭବିଷ୍ୟ ପୁରାଣ ଖଣ୍ଡ ୪ ଅଧ୍ୟାୟ ୧୭

ସ୍ଥିତ ହେଲେ । ତିନି ଦେବତା ମୋହିତ ହୋଇ ଅନସୂୟାଙ୍କ ସହ ବଳାତ୍କାର କରିବାକୁ ଲାଗିଲେ । ଦେବଗଣଙ୍କ କାର୍ଯ୍ୟକଳାପରେ କ୍ଷୁବ୍‌ଧ ହୋଇ ମୁନିପତ୍ନୀ ଅନସୂୟା ସେମାନଙ୍କୁ ଶାପ ଦେଇ କହିଲେ ଯେ ମହାଦେବଙ୍କ ଲିଙ୍ଗ, ବ୍ରହ୍ମାଙ୍କ ଶିର ତଥା ବିଷ୍ଣୁଙ୍କ ଚରଣ ସଂସାରରେ ପୂଜା ପାଇବ । ଏହାଦ୍ୱାରା ସେମାନେ ଉପହସିତ ହେବେ ।

ଉପର୍ଯ୍ୟୁକ୍ତ ପ୍ରମାଣଗୁଡ଼ିକରୁ ଏହା ସିଦ୍ଧାନ୍ତ କରିବାକୁ ହୁଏ ଯେ, ପୂଜା ପାଉଥିବା 'ଶିବଲିଙ୍ଗ' ଶିବଙ୍କ 'ଚିହ୍ନ' ନୁହେଁ । ବରଂ ଏହା ଶିବଙ୍କର ଉପସ୍ଥେନ୍ଦ୍ରିୟ ଅଟେ । ଦେଶର ବିଭିନ୍ନ ସ୍ଥାନରେ ଯେଉଁ ଶିବଲିଙ୍ଗ ଓ ଜଳହରି ରୂପକ ଶିବ ପାର୍ବତୀଙ୍କ ଉପସ୍ଥେନ୍ଦ୍ରିୟ-ଗୁଡ଼ିକର ପୂଜା ପ୍ରଚଳିତ, ତାହା ଅତ୍ୟନ୍ତ ଘୃଣିତ ତଥା ଅଶ୍ଳୀଳ କର୍ମ । ଏସବୁ ବାମମାର୍ଗର ଭୈରବୀ ଚକ୍ରର ଅବଶିଷ୍ଟ ମାତ୍ର ।

ଦେଶରେ ଶିକ୍ଷିତ ସମ୍ପ୍ରଦାୟ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ ନ କରି ଏହି ପୂଜାର ପ୍ରଚଳନ ପାଇଁ ପ୍ରୋତ୍ସାହନ ଦେଉଛନ୍ତି । ଯେଉଁ ସୋମନାଥ ମନ୍ଦିରକୁ ବାରମ୍ବାର ଧ୍ୱଂସ କରି ଦିଆଗଲା, ସରକାର ତାହାର ଜୀର୍ଣ୍ଣୋଦ୍ଧାର କରି ପୁନର୍ବାର ଶିବଲିଙ୍ଗ ସ୍ଥାପନ କରାଇଛନ୍ତି । ଏଥିରେ ସରକାରଙ୍କ ଅଜସ୍ର ଅର୍ଥ ବ୍ୟୟ କରାଗଲା ଅଥଚ ନାଳନ୍ଦା ଆଦି ପ୍ରାଚୀନ ବିଶ୍ୱବିଦ୍ୟାଳୟଗୁଡ଼ିକର ପୁନରୁଦ୍ଧାର କରିବା ପାଇଁ ଚେଷ୍ଟା କରାଗଲା ନାହିଁ ।

ପୌରାଣିକ କାଳରେ ଆମ ଦେଶର ପ୍ରାଚୀନ ସଂସ୍କୃତିକୁ କୁଠାରାଘାତ କରାଯାଇ ଏହାକୁ ଦେଶ ବିଦେଶରେ ଉପହାସ କରାଗଲା, ପୁରାଣରେ ବର୍ଣ୍ଣିତ ଥିବା ଅଶ୍ଳୀଳ ବ୍ୟଭିଚାର ମୂଳକ କାହାଣୀ, ବିଭିନ୍ନ

କଳ୍ପିତ ଦେବଦେବୀଙ୍କୁ ନେଇ ଗଢ଼ି ଉଠିଥିବା ସମ୍ପ୍ରଦାୟ ମଧ୍ୟରେ ବାଦ ବିବାଦ, ସେ ସମୟରେ ପ୍ରଚଳିତ ଥିବା ସାମାଜିକ ଦୁରବସ୍ଥାର ଜ୍ୱଳନ୍ତ ଉଦାହରଣ ଅଟେ । ମୂର୍ତ୍ତି, ମନ୍ଦିର ଓ ତୀର୍ଥ ସ୍ଥାନଗୁଡ଼ିକୁ ନିଜର ବ୍ୟବସାୟ ବସ୍ତୁ ରୂପେ ବ୍ୟବହାର କରୁଥିବା ଲକ୍ଷ ଲକ୍ଷ ପଣ୍ଡା, ପୂଜାରୀ, ସାଧୁ ଓ ମହନ୍ତମାନଙ୍କ ଶୋଷଣ ପୌରାଣିକ କାଳର ଆଧ୍ୟାତ୍ମିକ ଅଧୋଗତିର ଜ୍ୱଳନ୍ତ ସାକ୍ଷୀ ଅଟେ । ଯେଉଁ ଆର୍ଯ୍ୟ ଜାତି ପୃଥିବୀ ପୃଷ୍ଠରେ ପ୍ରଥମ ଐଶ୍ୱରୀୟ ବାଣୀର ପ୍ରଚାର କରିଥିଲା ଓ ସଂସାରକୁ ଧର୍ମ ଓ ନୀତିର ପ୍ରଥମ ଶିକ୍ଷା ଦେଇଥିଲା, ସେହି ଜାତି ଏକେଶ୍ୱରବାଦ ତଥା ଅଷ୍ଟାଙ୍ଗ ଯୋଗ ପ୍ରଭୃତି ଉଚ୍ଚ ଶିକ୍ଷାକୁ ତ୍ୟାଗ କରି ପୁରାଣଗୁଡ଼ିକରେ ଥିବା ମିଥ୍ୟା ପ୍ରଚାରରେ ଭାସିଯିବା ଯେତିକି ଆଶ୍ଚର୍ଯ୍ୟଜନକ ନୁହେଁ ସେତିକି ଦୁଃଖପ୍ରଦ । ଆହୁରି ଦୁଃଖର ବିଷୟ ଯେ ଏହି ପୁରାଣ ଶିକ୍ଷାର ପରିଣାମ ସ୍ୱରୂପ ଆର୍ଯ୍ୟ ଜାତିକୁ ବହୁ ନିର୍ଯାତନା ସହିବାକୁ ପଡ଼ୁଛି, ଅନେକ ଅପମାନ ସହନ କରି ପରାଧୀନ ହେବାକୁ ପଡୁଛି । ତଥାପି ଅଜ୍ଞାନ ତଥା ସ୍ୱାର୍ଥର ବଶବର୍ତ୍ତୀ ହୋଇ ଏହି ଅଭାଗା ଜାତି ଅବିଦ୍ୟା-ଅନ୍ଧକାରରେ ବୁଡ଼ି ରହି ସଢ଼ି-ବାରେ ଲାଗିଛି ।



# ମୂର୍ତ୍ତିପୂଜା ଓ ମୁସଲମାନ କାଳ

ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ଆରବ ଓ ତାହାର ନିକଟ-ବର୍ତ୍ତୀ ପ୍ରଦେଶଗୁଡ଼ିକରେ ମୁସଲମାନ ଧର୍ମ ବ୍ୟାପି ଯାଇଥିଲା । ଭାରତ ବର୍ଷ ସହିତ ଆରବ, ଇରାନ, ତୁର୍କି, ମିଶର ଆଦି ଦେଶଗୁଡ଼ିକ ମଧ୍ୟରେ ବ୍ୟାବସାୟିକ, ଧାର୍ମିକ ଓ ସାଂସ୍କୃତିକ ସମ୍ବନ୍ଧ ଥିବାରୁ ସେମାନେ ପରସ୍ପର ପ୍ରଭାବିତ ହେଉଥିଲେ । ଭାରତରେ ଯେତେବେଳେ ବୌଦ୍ଧ ଧର୍ମର ପ୍ରଚାର ଥିଲା, ସେତେବେଳେ ଆରବ ଓ ତା'ର ନିକଟବର୍ତ୍ତୀ ଅଞ୍ଚଳରେ ବୌଦ୍ଧ ଧର୍ମ ପ୍ରସାର ଲାଭ କରିଥିଲା । ଆରବୀ 'ବୁଦ୍' ଓ ପାରସୀ 'ବୁତ୍' ଶବ୍ଦ ବୁଦ୍ଧ ଶବ୍ଦର ରୂପାନ୍ତର ମାତ୍ର । ଆରବୀ 'ବୋଜାସଫ୍' ବୋଧିସତ୍ତ୍ୱ ଅଟେ ।

ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭରେ ଆରବ ଓ ତାହାର ନିକଟବର୍ତ୍ତୀ ଦେଶଗୁଡ଼ିକରେ ଇସଲାମ ଧର୍ମର ପ୍ରଚାର ଆରମ୍ଭ ହୋଇ ଯାଇଥିଲେ ସୁଦ୍ଧା ବୌଦ୍ଧଧର୍ମ ଲୋପ ପାଇ ନ ଥିଲା । ବଲଖରେ ଥିବା ଏକ ପ୍ରସିଦ୍ଧ ବୁଦ୍ଧବିହାରକୁ ଆରବୀୟ ଐତିହାସିକମାନେ 'ନୌ ବିହାର' ବା ନବବିହାର ବୋଲି ଲେଖିଛନ୍ତି ଓ ତାହାର ବୈଭବ ବର୍ଣ୍ଣନା କରିଛନ୍ତି । ସେଠାରେ ବୌଦ୍ଧ ଭିକ୍ଷୁମାନେ କାଳକ୍ରମେ ମୁସଲମାନ ଧର୍ମ ଗ୍ରହଣ କଲେ ଓ ଖଲିଫାଙ୍କ କର୍ମଚାରୀ ରୂପରେ କାର୍ଯ୍ୟ କଲେ ।

ଭାରତବର୍ଷରେ ବୌଦ୍ଧ ଧର୍ମର ହ୍ରାସ ଓ ପୌରାଣିକ ଧର୍ମର ଉତ୍ଥାନ ପରେ ଆରବ ଦେଶ ଗୁଡ଼ିକରେ ତାହାର ପ୍ରଭାବ ପଡ଼ିଥିଲା । ସପ୍ତମ ଶତାବ୍ଦୀର ଚୀନ ଯାତ୍ରୀ ହୁଏନ୍‌ସାଙ୍ଗଙ୍କ ଭାରତ ବିବରଣୀରେ

ଲେଖାଅଛନ୍ତି ଯେ ସେହି ସମୟରେ ଭାରତବର୍ଷରେ ଶିବପୂଜା ବହୁଳ ଭାବରେ ବ୍ୟାପିଥିଲା । ସେ ଅଯୋଧ୍ୟା ନିକଟରେ ଦୁର୍ଗାମୂର୍ତ୍ତି ସମ୍ମୁଖରେ ନରବଳି ହେଉଥିବାର ଦେଖିଥିଲେ । ବୌଦ୍ଧ ମୂର୍ତ୍ତି ସ୍ଥାନରେ ଶିବ ମୂର୍ତ୍ତି ସ୍ଥାପନ କରାଯାଉ ଥିଲା । ବୌଦ୍ଧଭିକ୍ଷୁମାନଙ୍କୁ ନାନା ପ୍ରକାର ଯନ୍ତ୍ରଣା ଦିଆ ଯାଉଥିଲା । ନରମୁଣ୍ଡ ପିନ୍ଧିଥିବା କାପାଳିକମାନଙ୍କର ବର୍ଣ୍ଣନା ଉକ୍ତ ବିବରଣୀରେ ଦେଖିବାକୁ ମିଳେ । ହୁଏନ୍‌ସାଂ ନିଜ ଭ୍ରମଣ କାଳରେ ଇରାନ, ଆଫଗାନିସ୍ଥାନ ଓ ମଧ୍ୟ-ଏସିଆ ପର୍ଯ୍ୟନ୍ତ ବୌଦ୍ଧ ଓ ଶୈବ ମନ୍ଦିର ସମାନ ଭାବରେ ସ୍ଥାପିତ ହୋଇଥିବା ଲେଖିଛନ୍ତି । ଏହାର ସାରାଂଶ ହେଉଛି ଯେ ଆମ ଦେଶର ଧାର୍ମିକ ପରିବର୍ତ୍ତନ ସହ ଆରବ ଆଦି ଦେଶରେ ମଧ୍ୟ ସେହି ରୂପରେ ଧାର୍ମିକ ପରିବର୍ତ୍ତନ ହେଉଥିଲା । ଆରବ ଦେଶରେ ପ୍ରସିଦ୍ଧ କାବା ମନ୍ଦିରକୁ ଏକ ଶିବାଳୟର ଅବଶେଷ ବୋଲି କୁହାଯାଏ ; ଯାହାକୁ ମହମ୍ମଦ କୌଣସି କାରଣରୁ ସୁରକ୍ଷିତ ରଖିବା ଆବଶ୍ୟକ ବୋଲି ବୁଝିଥିଲେ ।

ଆରବ ଦେଶଗୁଡ଼ିକ ମୁସଲମାନ ଧର୍ମ ଗ୍ରହଣ କରିବା ପରେ ଭାରତବର୍ଷ ଉପରେ ତାହାର ପ୍ରଭାବ ପଡ଼ିଲା । ଏକ ପକ୍ଷରେ ସେହି ଦେଶଗୁଡ଼ିକ ଏକ ଈଶ୍ୱର, ଏକ ଧର୍ମ ଓ ଏକ ଧାର୍ମିକ ଗ୍ରନ୍ଥ ଯଥାକ୍ରମେ ଆଲ୍ଲା, ଇସଲାମ୍ ଓ କୋରାନ ନାମରେ ସଂଗଠିତ ହେଉଥିଲେ । ଅନ୍ୟ ପକ୍ଷରେ ଆମ ଦେଶ ବହୁ ଦେବଦେବୀ ପୂଜା, ଶ୍ରେଷ୍ଠ ଶ୍ରେଷ୍ଠ ସଂପ୍ରଦାୟ ଓ ରାଜ୍ୟରେ ବିଭକ୍ତ ହୋଇ ପଡ଼ିଥିଲା । ଏହି ପରିସ୍ଥିତିରେ ଆରବ ଦେଶଗୁଡ଼ିକରେ ବଢ଼ି ଚାଲିଥିବା ମୁସଲମାନ ଧର୍ମର ପ୍ରଭାବକୁ ହ୍ରାସ କରିବା ପାଇଁ ଆମ ଦେଶର ଶକ୍ତି ନ ଥିଲା ।

ଏହାର ଫଳ ସ୍ୱରୂପ ହଜ୍ଜାଜ ୭୧୨ ଖ୍ରୀଷ୍ଟାବ୍ଦରେ ମହମ୍ମଦ ବିନ୍ କାସିମ୍‌ଙ୍କୁ ହିନ୍ଦୁ ପ୍ରଦେଶ ଆକ୍ରମଣ କରିବା ପାଇଁ ପଠାଇଲେ ।

କୋଡ଼ିଏ ବର୍ଷ ବୟସ୍କ କାସିମ୍ ଛଅ ହଜାର ସୈନ୍ୟ ନେଇ ଯୁଦ୍ଧ କରିବା ପାଇଁ ଅଗ୍ରସର ହେଲେ । ରାଜା ଦାହିରଙ୍କ ନିକଟରେ ଶରଣାଗତ ଥିବା ହଜ୍ଜାଜଙ୍କ ଜଣେ ବିଦ୍ରୋହୀ ନେତା ଦାହିରଙ୍କ ସେନାପତି ତଥା ନାରାୟଣକୋଟର ଦୁର୍ଗରକ୍ଷକ—ଏହି ଦୁହିଁଙ୍କୁ ଉତ୍କୋଚ ଦେଇ ନିକଟ କରିନେଲେ ଓ ଯୁଦ୍ଧ ସମୟରେ ସେ ସମସ୍ତେ ରାଜାଙ୍କର ବିରୁଦ୍ଧ ପକ୍ଷରେ ମିଶିଗଲେ । ରାଜା ତିରିଶ ହଜାର ସୈନ୍ୟଙ୍କୁ ନେଇ କାସିମ୍‌ଙ୍କ ସହିତ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ । ଆଠ ଦିନ ପର୍ଯ୍ୟନ୍ତ ତୁମୁଳ ଯୁଦ୍ଧ ହେଲା । କାସିମ୍ ପରାଜିତ ହୋଇ ପୃଷ୍ଠଭଙ୍ଗ ଦେଉଥିବା ବେଳେ ଏକ ବ୍ରାହ୍ମଣ ତାଙ୍କୁ କହିଲେ ଯେ ମନ୍ଦିରର ପତାକାକୁ କୌଣସି ଉପାୟରେ ଖସାଇ ଦିଆଗଲେ ହିନ୍ଦୁ ସେନା ପଳାୟନ କରିବେ । କାରଣ ହିନ୍ଦୁମାନଙ୍କର ବିଶ୍ୱାସ ଯେ ମନ୍ଦିରର ପତାକା ଭୂପତିତ ହେବା ପରେ ସେମାନଙ୍କର ବିଜୟ ଅସମ୍ଭବ । କୌଣସି ପ୍ରକାରେ ପତାକାକୁ ଖସାଇ ଦିଆଗଲା । ଏହା ଦେଖି ସୈନ୍ୟମାନେ ପୃଷ୍ଠଭଙ୍ଗ କଲେ । ରାଜା ଜାହିରଙ୍କ କଟା ମୁଣ୍ଡ ପ୍ରଦର୍ଶିତ ହେବା ବେଳେ ସମସ୍ତ ସୈନ୍ୟ ଯୁଦ୍ଧଭୂମିରୁ ପଳାୟନ କଲେ । ମନ୍ଦିରକୁ ଧ୍ୱଂସ କରି ଦିଆଗଲା । ବିଶ୍ୱାସଘାତୀ ବ୍ରାହ୍ମଣ କିଛି ଦକ୍ଷିଣା ଆଶାରେ କାସିମ୍‌କୁ ଏକ ଗୁପ୍ତ ଭଣ୍ଡାରର ଠିକଣା ଦେଲା । ସେଠାରେ ଆକ୍ରମଣକାରୀମାନେ ଚାଳିଶଟି କୋଠରୀ ମଧ୍ୟରେ ଥିବା ସତର ହଜାର ମହଣ ସୁନା ଲୁଣ୍ଠନ କଲେ । ସେଠାରୁ ଶ୍ରେଷ୍ଠ ବଡ଼ ଛଅ ହଜାର ସୁନାମୂର୍ତ୍ତି ପାଇଲେ । ସବୁଠାରୁ ଓଜନଦାର ମୂର୍ତ୍ତି ତିରିଶ ମହଣ ଥିଲା । ଅନେକ ଓଟ ଉପରେ ବସ୍ତା ବସ୍ତା ସୁନା, ମୋତି ବୁହାଗଲା । ଯେଉଁ ସେନାପତି ଓ ବ୍ରାହ୍ମଣ ଜଣକ ରାଜା ଜାହିରଙ୍କ ସହିତ ବିଶ୍ୱାସଘାତକତା କରିଥିଲେ, କାସିମ ତାହାଙ୍କୁ ହତ୍ୟା କଲେ । ଏହା ପରେ ସେ ଅସଂଖ୍ୟ ମନ୍ଦିର ଓ ମୂର୍ତ୍ତି ଧ୍ୱଂସ କଲେ । ଶହ ଶହ ନଗର ଓ ଗ୍ରାମ ଲୁଣ୍ଠିତ

ହେଲା । ଗ୍ରାମବାସୀଙ୍କୁ ମୁସଲମାନ ଧର୍ମ ଗ୍ରହଣ ପାଇଁ ବାଧ୍ୟ କରାଗଲା ଓ ବହୁ ଅନିଚ୍ଛୁକ ହିନ୍ଦୁ ନିହତ ହେଲେ । ଏହା ପରେ ବହୁ ମନ୍ଦିର ଓ ମୂର୍ତ୍ତି ଧ୍ୱଂସ କଲେ । ଶହ ଶହ ଗ୍ରାମ ଓ ନଗର ଲୁଣ୍ଠନ କଲେ । ମୁସଲମାନ ଧର୍ମ ଗ୍ରହଣ ପାଇଁ ବାଧ୍ୟ କଲେ ଓ ଯେଉଁମାନେ ପ୍ରତିରୋଧ କଲେ ସେମାନେ ନିହତ ହେଲେ ।

ଏହି ଆକ୍ରମଣର ଘଟଣାବଳୀ ସିନ୍ଧୁପ୍ରଦେଶର ସର୍ବପ୍ରଥମ ଇସଲାମୀ ଇତିହାସ 'ଚଚନାମା'ରେ ଭିନ୍ନ ପ୍ରକାରେ ବର୍ଣ୍ଣିତ ହୋଇଛି । ସେଥିରେ ଉଲ୍ଲେଖ ଅଛି ଯେ ସେହି ସମୟରେ ପୌରାଣିକ ଓ ବୌଦ୍ଧ-ମାନଙ୍କ ମଧ୍ୟରେ ସଂଘର୍ଷ ଚାଲିଥିଲା । ଦାହିରଙ୍କ ପିତା 'ଚଚ' ପୌରାଣିକ ଥିଲେ । ସେ ବୌଦ୍ଧରାଜାମାନଙ୍କୁ ବିନାଶ କରୁଥିଲେ କିମ୍ବା ନିଜ ଅଧୀନରେ ରଖୁଥିଲେ । ରାଜା ଚଚଙ୍କ ପରେ ତାଙ୍କ ସାନ ଭାଇ ରାଜା ହେଲେ । ସେ ବୌଦ୍ଧ ଥିବାରୁ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ଉତ୍ସାହିତ କରୁଥିଲେ । ପୌରାଣିକ ସଂପ୍ରଦାୟଗୁଡ଼ିକ ସେଥିରେ କ୍ଷୁବ୍ଧ ହୋଇ ତାଙ୍କୁ ବିତାଡ଼ିତ କଲେ ଓ ଦାହିରଙ୍କୁ ରାଜା କରାଇଲେ । ଚଚନାମାରେ ଲେଖା ଅଛି—ସେତେବେଳେ କାକା ନାମକ ଜଣେ ପଣ୍ଡିତ ଥିଲେ । ଜଣେ ପ୍ରତିଷ୍ଠିତ ଜାଠ ସାମନ୍ତ ଯେତେବେଳେ କାସିମଙ୍କ ସୈନ୍ୟମାନଙ୍କୁ ରାତିରେ ଆକ୍ରମଣ କରିବା ପାଇଁ କାକାଙ୍କୁ ପରାମର୍ଶ ଦେଲେ, କାକା ଏହି ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି କହିଥିଲେ ଯେ ଜ୍ୟୋତିଷୀମାନେ ଭବିଷ୍ୟତବାଣୀ କରିଛନ୍ତି କି ମୁସଲମାନମାନେ ଦିନେ ଆମ ଦେଶକୁ ଶାସନ କରିବେ । ବୌଦ୍ଧମାନଙ୍କ ପୁସ୍ତକରେ ମଧ୍ୟ ଏଭଳି ଭବିଷ୍ୟତବାଣୀ ଅଛି । ତେଣୁ ଲୋକେ ଏହି କଥା ମାନିବା ଉଚିତ । ଏହା ପରେ କାକା କାସିମଙ୍କ ପାଖକୁ ଯାଇ ଜାଠ ସାମନ୍ତଙ୍କ ଆକ୍ରମଣ ବିଷୟରେ ତାଙ୍କୁ ସଚେତନ କରାଇ ଦେଲେ ଓ

ଧାର୍ମିକ ପୁସ୍ତକର ଭବିଷ୍ୟବାଣୀ ବର୍ଣ୍ଣନା କଲେ । କାସୀମ କାକାଙ୍କୁ ବହୁମୂଲ୍ୟ ପାରିତୋଷିକ ପ୍ରଦାନ କଲେ । ଏହି ପ୍ରକାରେ ରାଜା ଦାହିରଙ୍କ ବିରୋଧୀ ସେନାପତିମାନେ ମଧ୍ୟ କାସିମ୍‌ଙ୍କ ସହିତ ହାତ ମିଳାଇଲେ । ଧମ୍ନବତଃ ଚଚନାମାରେ ଉଲ୍ଲେଖ ଥିବା କାକା ପୂର୍ବ ବିବରଣର ଦେଶଦ୍ରୋହୀ ବ୍ରାହ୍ମଣ ହୋଇପାରେ । ଯେ ଯାହା ହେଉ, ଏହା ହେଉଛି ଆମ ଦେଶର ଏକ ଦୁଃଖଦ ଇତିହାସର ଅଧ୍ୟାରମ୍ଭ, ଯାହା ଫଳରେ ଆମକୁ ପ୍ରାୟ ଚଉଦ ଶହ ବର୍ଷ ମୁସଲମାନ ରାଜତ୍ୱ ମଧ୍ୟରେ ରହିବାକୁ ପଡ଼ିଲା । ଏହାର ପରିଣାମସ୍ୱରୂପ ଅଖଣ୍ଡ ଭାରତ ଖଣ୍ଡବିଖଣ୍ଡିତ ହେଲା ।

ଉଲ୍ଲିଖିତ ଉଦାହରଣମାନଙ୍କରୁ ସିଦ୍ଧ ହୁଏ ଯେ ଆମ ପରାଜୟର କାରଣ ରାଜନୈତିକ ନ ଥିଲା । ଅତ୍ୟନ୍ତ ଧାର୍ମିକ ଅନ୍ଧ ବିଶ୍ୱାସ ଯୋଗୁଁ ଆମେ ପରାଜିତ ହେଲୁ । ପ୍ରଥମତଃ ହିନ୍ଦୁମାନଙ୍କ ବିଶ୍ୱାସ ଥିଲା ଯେ ମନ୍ଦିରର ମୂର୍ତ୍ତି ଏକ ଦୈବୀ ଶକ୍ତି । ସେମାନଙ୍କର ଜୟପରାଜୟ ସେହି ଦୈବୀଶକ୍ତିର ଅପ୍ରସନ୍ନତାର କାରଣ । ଦ୍ୱିତୀୟତଃ ବୀର ହିନ୍ଦୁମାନେ ମଧ୍ୟ ଜ୍ୟୋତିଷୀଙ୍କ କଥାରେ ବିଶ୍ୱାସ କରି ଦେଶରକ୍ଷା ବିଷୟରେ ନିଜକୁ ଭାଗ୍ୟ ହାତରେ ସମର୍ପଣ କରି ଦେଉଥିଲେ । କାକା ପରି ଦେଶଦ୍ରୋହୀ ମାନଙ୍କ ସାହାଯ୍ୟରେ ବିଦେଶୀ ଆକ୍ରମଣକାରୀମାନେ ହିନ୍ଦୁମାନଙ୍କ ଅନ୍ଧବିଶ୍ୱାସର ସୁଯୋଗ ନେଇ ଲାଭ ଉଠାଉଥିଲେ । ଅନ୍ଧବିଶ୍ୱାସ, ଆତ୍ମସଂଶୟ ଓ ଭୀରୁତା ମୂର୍ତ୍ତିପୂଜାର ସ୍ୱାଭାବିକ ଫଳ ରୂପରେ ଦେଖା ଦେଇଥିଲା । ଯେଉଁ ଜାତି ଜଡ଼ମୂର୍ତ୍ତିର ଭୟରେ ବିହ୍ୱଳିତ ହୋଇ ଉଠୁଥିଲା, ତାହା ଏକେଶ୍ୱରବାଦୀ ନିର୍ଭୀକ ତଥା ନିଷ୍ଠୁର ଏକ ଜାତି ସମ୍ମୁଖରେ କେତେକାଳ ପର୍ଯ୍ୟନ୍ତ ତିଷ୍ଠି ରହି ପାରିଥାନ୍ତା ? ଏକଥା ସତ୍ୟ ଯେ ଯେତେବେଳେ ହିନ୍ଦୁ ସୈନ୍ୟମାନେ

କେଉଁ ଦୃଷ୍ଟିରୁ ବିଦେଶୀ ଆକ୍ରମଣକାରୀଙ୍କଠାରୁ ନ୍ୟୂନ ନ ଥିଲେ । ପ୍ରସିଦ୍ଧ ଐତିହାସିକ ବିଦାଉନୀ ଲେଖିଛନ୍ତି—"ହିନ୍ଦୁମାନଙ୍କ ସମକକ୍ଷ ହେବାପର ପଠାଣ ଓ ମୋଗଲ କେହି ସମର୍ଥ ନ ଥିଲେ ।" ପରନ୍ତୁ ଧାର୍ମିକ ଓ ମାନସିକ ରୋଗରେ ଆକ୍ରାନ୍ତ ହୋଇ ହିନ୍ଦୁ ନିଜର ସ୍ୱାଧୀନତା ହରାଇଲା । ଜଣେ ଇଂରେଜ ଐତିହାସିକ ଲେଖିଛନ୍ତି— "ମହମ୍ମଦ୍ ବିନ କାସୀମଙ୍କ କାଳଠାରୁ ଆଜି ପର୍ଯ୍ୟନ୍ତ ହିନ୍ଦୁଜାତି ନିଜ ଭୁଲରୁ କିଛି ଶିକ୍ଷା ପାଇ ନାହିଁ । ଏହା ଅତ୍ୟନ୍ତ ପରିତାପର ବିଷୟ ।"

ଏକ ସ୍ଥଳରେ ପ୍ରସିଦ୍ଧ ଆରବଯାତ୍ରୀ ଆଲବିରୁଣୀ ଲେଖିଛନ୍ତି— "ମୁଲତାନ ବିଜୟ ପରେ ମହମ୍ମଦ ବିନ କାସୀମ ସେଠାରେ ଥିବା ପ୍ରସିଦ୍ଧ ଦେବ ମନ୍ଦିରକୁ ଧ୍ୱଂସ କରି ନ ଥିଲେ ; କିନ୍ତୁ ମନ୍ଦିରରେ ଥିବା ମୂର୍ତ୍ତିଦେହରେ ଗୋଟିଏ ଗାଈହାଡ଼ ବାନ୍ଧି ଦେଇଥିଲେ । ମୂର୍ତ୍ତି ପ୍ରତି ତାଙ୍କର ଅଶ୍ରଦ୍ଧା ପ୍ରକାଶ କରିଥିଲେ ; କିନ୍ତୁ କେତେକ କାରଣରୁ ମନ୍ଦିର ଧ୍ୱଂସ କରି ନ ଥିଲେ ।" ଏହାକୁ ଆହୁରି ବିଶ୍ଳେଷଣ କରି ଆଉ ଜଣେ ମୁସଲମାନ ଯାତ୍ରୀ ଲେଖିଛନ୍ତି— "ମୁଲତାନ ମନ୍ଦିରକୁ ଧ୍ୱଂସ ନ କରି ଆରବୀୟମାନେ ରାଜନୈତିକ ଓ ଆର୍ଥିକ ଲାଭ ପାଇଲେ । ରାଜନୈତିକ କାରଣ ହେଉଛି, ଯେତେବେଳେ କୌଣସି ହିନ୍ଦୁ ରାଜା ନଗର ଆକ୍ରମଣ କରିବା ପାଇଁ ଆସୁଥିଲେ, ସେତେବେଳେ ମନ୍ଦିରକୁ ଧ୍ୱଂସ କରି ଦିଆଯିବ ବୋଲି ଧମକ ଦେଇ ଧର୍ମଭୀରୁ ହିନ୍ଦୁ ଆକ୍ରମଣକାରୀଙ୍କୁ ଘଉଡ଼ାଇ ଦିଆ ଯାଉଥିଲା । ଆର୍ଥିକ କାରଣ ହେଉଛି ଯେ ସାରା ଭାରତର ଯାତ୍ରୀଗଣ ମନ୍ଦିରର ଦେବଦର୍ଶନ କରିବାକୁ ଆସୁଥିଲେ ଓ ମୂର୍ତ୍ତି ନିକଟରେ ଅଜସ୍ର ଭେଟି ଦେଉଥିଲେ । ସେ ସବୁ ଆରବ ଶାସକଙ୍କ ରାଜକୋଷକୁ ଯାଉଥିଲା ।" ଆରବ ଯାତ୍ରୀମାନଙ୍କ ଅନୁସାରେ

ସେହି ମନ୍ଦିରରେ ଅତୁଳନୀୟ ସୁନା, ରୁପା, ମୋତି, ମାଣିକ୍ୟ ଆଦି ପଦାର୍ଥର ଭଣ୍ଡାର ଥିଲା । ସୂର୍ଯ୍ୟଦେବତାଙ୍କ ମୂର୍ତ୍ତିର ଦୁଇ ନେତ୍ର ମାଣିକ୍ୟ ଖଚିତ ଥିଲା ତଥା ମସ୍ତକରେ ସୁନାର ମୁକୁଟ ଶୋଭା ପାଉଥିଲା ।

ଆମର ଅଜ୍ଞାନ ହେତୁ ମୁସଲମାନମାନେ ଲାଭବାନ୍ ହେଲେ । ଆମର ଦେବମୂର୍ତ୍ତିଗୁଡ଼ିକ ହିନ୍ଦୁ ଭକ୍ତମାନଙ୍କଠାରୁ ଅପାର ଧନ ଅପହରଣ କରିବାରେ ତଥା ସେମାନଙ୍କୁ ବିଦେଶୀ ଆକ୍ରମଣକାରୀଙ୍କ-ଦ୍ୱାରା ପରାଜିତ ହେବାରେ ସହାୟକ ହେଲା । ମନ୍ଦିରର ପୂଜାରୀମାନେ ନିଜ ସ୍ୱାର୍ଥ ସିଦ୍ଧି ପାଇଁ ମାତିକୁ ଜଳାଞ୍ଜଳି ଦେବା ପାଇଁ ପଶ୍ଚାତ୍‌ପଦ ହେଲେ ନାହିଁ । ଆମପରି ଅନେକ ଦେଶ ଓ ଅନେକ ଜାତି ମୂର୍ତ୍ତି-ପୂଜାର ପ୍ରଥାକୁ ଅନୁସରଣ କରି ପ୍ରାୟଶ୍ଚିତ୍ତ କରିଛନ୍ତି । ଅନ୍ୟ ପକ୍ଷରେ ଆମ ପରାଧୀନତାର ପ୍ରତୀକ ରୂପରେ ଥିବା ସେହି ଦେବ-ମନ୍ଦିରର ବାର୍ଷିକ ମେଳାରେ ବହୁ ହିନ୍ଦୁ ଯୋଗ ଦିଅନ୍ତି । ଦେଶରକ୍ଷା ପାଇଁ ପ୍ରାଣବଳି ଦେଇଥିବା ରାଜା ଦାହିରଙ୍କୁ ସମସ୍ତେ ଭୁଲି ଯାଇଛନ୍ତି । ଏଠାରେ ଯେଉଁ ସମୟର ଉଲ୍ଲେଖ କରାଯାଇଛି, ସେହି ସମୟରେ ହିନ୍ଦୁ ମନ୍ଦିରଗୁଡ଼ିକ ଅପାର ଧନରାଶିର ଗନ୍ତାଘର ହୋଇ ରହିଥିଲା । ଆରବ ଲେଖକ ଇବ୍ନ ନଦୀମ ଲେଖିଛନ୍ତି—"ଗୁଜରାଟର ରାଜା ବଲ୍ଲଭ ରାୟଙ୍କ ରାଜଧାନୀ ମହାନଗରର ଦେବମନ୍ଦିରରେ ସୁନା, ରୁପା, ଲୁହା, ପିତଳ, ହାତୀଦାନ୍ତ ତଥା ବହୁମୂଲ୍ୟ ପ୍ରସ୍ତରନିର୍ମିତ କୋଡ଼ିଏ ସହସ୍ର ମୂର୍ତ୍ତି ଅଛି । ସେଠାରେ ମୋତିମାଣିକ୍ୟ ଖଚିତ ଏକ ଭବନରେ ଥିବା ସୁବର୍ଣ୍ଣ ସିଂହାସନ ଉପରେ ବାର ହାତ ଉଚ୍ଚ ବିଶିଷ୍ଟ ଏକ ସୁବର୍ଣ୍ଣ ମୂର୍ତ୍ତି ଅଛି । ପ୍ରତି ବର୍ଷ ସେଠାରେ ମେଳା ହୁଏ ଓ ନରବଳି ମଧ୍ୟ ଦିଆଯାଏ ।" ମୁସଲମାନ ଆକ୍ରମଣକାରୀ

ଏହି ବିପୁଳ ଧନବୈଭବର ଆଶାରେ ସେ ବାରମ୍ବାର ହିନ୍ଦୁ ରାଜ୍ୟ-ଗୁଡ଼ିକୁ ଆକ୍ରମଣ କରୁଥିଲେ । ପୌରାଣିକ ସଂପ୍ରଦାୟ ଈଶ୍ୱରପୂଜା ନାମରେ ଯେଉଁ ଧନ ଅପହରଣ କରୁଥିଲେ, ତାହା ମୁସଲମାନମାନେ ଲୁଟି ନେଉଥିଲେ ।

ମହମ୍ମଦ ବିନ କାସୀମଙ୍କ ଭାରତ ଆକ୍ରମଣର ତିନି ଶହ ବର୍ଷ ପରେ ମହମ୍ମଦ ଗଜନୀ ଧନ ଲାଳସାରେ ତିନି ବର୍ଷ ପର୍ଯ୍ୟନ୍ତ ବାରମ୍ବାର ଆକ୍ରମଣ କରି ସମସ୍ତ ପଶ୍ଚିମୋତ୍ତର ଭାରତକୁ ଏକ ପ୍ରକାର ଧୂଳିସାତ୍ କରି ଦେଇଥିଲେ । କଥିତ ଅଛି ଯେ, ନଗରକୋଟ ମନ୍ଦିର ଧ୍ୱଂସ କରି ସାତ ଶହ ମହଣ ସୁନାରୂପା ପାତ୍ର, ସାତ ଶହ ଚାଳିଶ ମହଣ ସୁନା, ଦୁଇ ହଜାର ମହଣ ରୂପା ଓ ଅନେକ ହୀରା ମୋତି, ମାଣିକ୍ୟ ଲୁଟି ନେଇଥିଲେ । ପୁଣି ଥାନେଶ୍ୱର ଆକ୍ରମଣ କରି ଦୁଇ ଲକ୍ଷ ହିନ୍ଦୁଙ୍କୁ ବନ୍ଦୀ କରି ଗଜନୀ ନେଇଯାଇଥିଲେ । ଫରିସ୍ତା ଲେଖିଛନ୍ତି ଯେ ସେତେବେଳେ ଗଜନୀ ନଗରୀ ହିନ୍ଦୁ ନଗରୀ ପରି ପ୍ରତୀତ ହେଉଥିଲା । ବନ୍ଦୀ କରାଯାଇଥିବା ହିନ୍ଦୁ ଗୁଲାମମାନଙ୍କୁ ଦୁଇ ଟଙ୍କା ଲେଖାଏଁ କିଣିବା ପାଇଁ ଲୋକ ମିଳିଲେ ନାହିଁ ।

ଏହା ପରେ ଗଜନୀ ଗୁଜରାଟର ପ୍ରସିଦ୍ଧ ସୋମନାଥ ମନ୍ଦିର ଆକ୍ରମଣ କଲେ । ଏହି ମନ୍ଦିରରେ ଅସଂଖ୍ୟ ମୂଲ୍ୟବାନ ରତ୍ନ ଭରି ରହିଥିଲା । ଚାଳିଶ ମହଣ ଓଜନର ଏକ ସୁନା ଶିକୁଳିରେ ଗୋଟିଏ ବିଶାଳ ଘଣ୍ଟା ଝୁଲୁଥିଲା । ସାଢ଼େପାଞ୍ଚ ଗଜ ଉଚ୍ଚତା ବିଶିଷ୍ଟ ଏକ ଲୌହ ନିର୍ମିତ ଶିବମୂର୍ତ୍ତି ଚୁମ୍ବକ ସାହାଯ୍ୟରେ ଝୁଲୁଥିଲା । ଶୈବ ସଂପ୍ରଦାୟ ଏହି ମୂର୍ତ୍ତିର ଚମତ୍କାରିତାର ଆଢ଼ୁଆଳରେ ଅନ୍ଧବିଶ୍ୱାସୀ ହିନ୍ଦୁ ପ୍ରଜାଙ୍କଠାରୁ ଧନ ଶୋଷଣ କରୁଥିଲେ ଓ କ୍ଷତ୍ରିୟ ରାଜାମାନେ ତାହାକୁ ସମର୍ଥନ କରୁଥିଲେ । ମହମ୍ମଦ ଗଜନୀ ଏକ ଗଦାଦ୍ୱାରା

ସେହି ମୂର୍ତ୍ତିକୁ ଭାଙ୍ଗିବାକୁ ଯିବାବେଳେ ପୂଜକଗଣ ମୂର୍ତ୍ତିକୁ ଅକ୍ଷତ ରଖିବା ପାଇଁ ଅନୁରୋଧ କଲେ । କିନ୍ତୁ ମହମ୍ମଦ ଉତ୍ତର ଦେଇଥିଲେ ଯେ ସେ ମୂର୍ତ୍ତିଭଞ୍ଜକ—ମୂର୍ତ୍ତିବିକ୍ରେତା ନୁହନ୍ତି । ମୂର୍ତ୍ତିକୁ ଖଣ୍ଡବିଖଣ୍ଡିତ କରି ସେ ଗୋଟିଏ ଖଣ୍ଡକୁ ମସଜିଦ ପାହାଚରେ ଲଗାଇ ଦେଇଥିଲେ । ଶିବଲିଙ୍ଗରେ ଥିବା ମୂଲ୍ୟବାନ ରତ୍ନ ଲୁଟି ନେଇଥିଲେ ।

ମହମ୍ମଦ ଖାନ କାସିମଙ୍କ ସମୟର ଦେବମୂର୍ତ୍ତି ତଥା ମହମ୍ମଦ ଗଜନୀଙ୍କ ସମୟର ଶିବମୂର୍ତ୍ତି କେହି ହେଲେ ହିନ୍ଦୁମାନଙ୍କ ଦୁଃସମୟରେ ସହାୟକ ହେଲେ ନାହିଁ ; ବରଂ ନିଜେ ଖଣ୍ଡବିଖଣ୍ଡିତ ହେଲେ । ସୋମନାଥ, କାଶୀ, ଅଯୋଧ୍ୟା ତଥା ମଥୁରା ଆଦି ତୀର୍ଥସ୍ଥାନମାନଙ୍କରେ ଠିଆ ହୋଇଥିବା ମସଜିଦଗୁଡ଼ିକ ମୂର୍ତ୍ତିପୂଜାର ନିଃସାରତା ପ୍ରତିପାଦନ କରେ ତଥା ମୂର୍ତ୍ତିପୂଜାକୁ ଦେଶ ପରାଧୀନତାର ମୁଖ୍ୟ କାରଣ ବୋଲି ସାବ୍ୟସ୍ତ କରେ ।

ପ୍ରସିଦ୍ଧ ଆରବଯାତ୍ରୀ ଆଲବରୁଣୀ ଭାରତର ତତ୍କାଳୀନ ରାଜନୈତିକ ଓ ସାମାଜିକ ଅବସ୍ଥା ବିଷୟରେ ଲେଖିଛନ୍ତି—'ଭାରତ ବହୁତ ଛୋଟ ଛୋଟ ସ୍ୱତନ୍ତ୍ର ରାଜ୍ୟରେ ବିଭକ୍ତ । ଏହି ରାଜ୍ୟଗୁଡ଼ିକ ସର୍ବଦା ପରସ୍ପର ଯୁଦ୍ଧରେ ପ୍ରବୃତ୍ତ । ବ୍ରାହ୍ମଣମାନେ ନିଜ ପ୍ରଭୁଙ୍କୁ ରକ୍ଷା କରିବା ପାଇଁ ସବୁବେଳେ ଆଗ୍ରହୀ । ଯଦି କେହି ବୈଶ୍ୟ କିମ୍ବା ଶୂଦ୍ର ବେଦ ପାଠ କରେ, ତେବେ ରାଜାଙ୍କ ଆଦେଶ କରାଇ ତାହାର ଜିହ୍ୱା ଛେଦନ କରାଯାଏ । ବ୍ରାହ୍ମଣମାନେ ବିଭିନ୍ନ ରାଜସ୍ୱ ଦାନରୁ ମୁକ୍ତ । ହିନ୍ଦୁମାନେ କୌଣସି ଦେଶକୁ ଯାଆନ୍ତି ନାହିଁ କିମ୍ବା କୌଣସି ଜାତିକୁ ଶ୍ରଦ୍ଧା ପ୍ରଦର୍ଶନ କରନ୍ତି ନାହିଁ । ସେମାନେ ନିଜକୁ ଓ ନିଜ ଜାତିକୁ ସର୍ବଶ୍ରେଷ୍ଠ ମଣନ୍ତି ।' କିନ୍ତୁ ହେଲା କ'ଣ ?

ପରିଶେଷରେ ବ୍ରାହ୍ମଣ ଓ କ୍ଷତ୍ରିୟ ନିଜ କୁକର୍ମର ଫଳ ଭୋଗିଲେ ।

ମହମ୍ମଦ ଗଜନୀଙ୍କ ପ୍ରାୟ ଦେଢ଼ ଶହ ବର୍ଷ ପରେ ଦ୍ୱାଦଶ ଶତାବ୍ଦୀରେ ମହମ୍ମଦ ଘୋରୀ ଭାରତ ଆକ୍ରମଣ କରିଥିଲେ । ପରାକ୍ରମଶାଳୀ ହିନ୍ଦୁ ରାଜା ପୃଥ୍ୱୀରାଜ ମହମ୍ମଦ ଘୋରୀଙ୍କୁ ଛଅ ଥର ପରାସ୍ତ କରି କିଛି କିଛି ଧନ ନେଇ ଛାଡ଼ି ଦେଇଥିଲେ । କିନ୍ତୁ ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କର ପାରସ୍ପରିକ ଯୁଦ୍ଧ ମହମ୍ମଦ ଘୋରୀଙ୍କୁ ପୁନର୍ବାର ଭାରତ ଆକ୍ରମଣ କରିବାର ସୁଯୋଗ ଦେଲା । ଏଥର ପୃଥ୍ୱୀରାଜ ଘୋରୀଙ୍କୁ ପରାସ୍ତ କରୁଥିବା ବେଳେ ଜୟଚନ୍ଦ୍ର ତାଙ୍କୁ ପଛରୁ ଆକ୍ରମଣ କଲେ । ପୃଥ୍ୱୀରାଜ ବନ୍ଦୀ ହେଲେ । ଏହିପରି ହିନ୍ଦୁ ସ୍ୱାଧୀନତାର ଦୀପ ଶିଖା ପୃଥ୍ୱୀରାଜଙ୍କ ପତନ ସହିତ ଲିଭିଯାଇଥିଲା ।

ତା'ପର ବର୍ଷ ଘୋରୀ କନୌଜର ରାଜା ଜୟଚନ୍ଦ୍ରଙ୍କ ଉପରେ ଆକ୍ରମଣ କଲେ । ଠିକ୍ ଯୁଦ୍ଧ ବେଳେ ଜୟଚନ୍ଦ୍ରଙ୍କ ସେନା-ବାହିନୀରେ ଥିବା ମୁସଲମାନ ସୈନ୍ୟ ତାଙ୍କର ବିପକ୍ଷୀ ହୋଇଗଲେ । ଜୟଚନ୍ଦ୍ର କୃତଘ୍ନମାନଙ୍କର ଶରରେ ଆହତ ହୋଇ ଘୋଡ଼ା ସହିତ ଗଙ୍ଗାନଦୀରେ ବୁଡ଼ି ପ୍ରାଣ ହରାଇଲେ । ଘୋରୀ କନୌଜରେ ଥିବା ପ୍ରାୟ ଏକ ସହସ୍ର ମନ୍ଦିର ଧ୍ୱଂସ କଲେ । ସେଠାରୁ ଚାରି ଶହ ଓଟ ଉପରେ ଲଦି ଅଜସ୍ର ସୁନାରୁପା ନେଇଗଲେ ।

ଆରବ ଦେଶର ବ୍ୟବସାୟୀମାନେ ଭାରତରେ ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ଇସଲାମ ଧର୍ମର ପ୍ରଚାର କରୁଥିଲେ । ପୌରାଣିକ ପ୍ରଥା ଯୋଗୁଁ ଲୋକେ ଆତ୍ମବିଶ୍ୱାସ, ଶୌର୍ଯ୍ୟ ଓ ସାହସ ଦେବଦେବୀଙ୍କ ଇଚ୍ଛା ନିକଟରେ ସମର୍ପି ଦେଇଥିଲେ । ମୁସଲମାନ ଆକ୍ରମଣକାରୀଙ୍କ-ଦ୍ୱାରା ଉପାସ୍ୟ ଦେବଦେବୀ ତଥା ମନ୍ଦିରଗୁଡ଼ିକ ଧ୍ୱଂସ ହେଉଥିବା

ଦେଖି ଲୋକଙ୍କ ମନରେ ନିଜ ଧର୍ମବିଶ୍ୱାସ ପ୍ରତି ସନ୍ଦେହ ଉତ୍ପନ୍ନ ହେଲା । ନିମ୍ନ ଜାତିର ଲୋକଙ୍କ ଉପରେ ବ୍ରାହ୍ମଣ ଓ କ୍ଷତ୍ରିୟ ଜାତିର ଅମାନୁଷିକ ଅତ୍ୟାଚାର ସୀମା ଟପି ଯାଇଥିଲା । ଏକେଶ୍ୱରବାଦୀ ନୂତନ ଇସଲାମ ଧର୍ମ ଆଡ଼କୁ ପାଦ ବଢ଼ାଇବା ପାଇଁ ଦେଶର ଅବସ୍ଥା ପ୍ରତିକୂଳ ନ ଥିଲା ।

ହିନ୍ଦୁ ରାଜଶକ୍ତି ପାରସ୍ପରିକ ଗୃହଯୁଦ୍ଧରେ ବିନଷ୍ଟ ହେଉଥିଲା । ମୁସଲମାନମାନଙ୍କୁ ପ୍ରତାପଶାଳୀ ହେବାର ଦେଖି ବହୁ ରାଜା ସେମାନଙ୍କର ସହାୟତା ପାଇବା ଆଶାରେ ସେମାନଙ୍କୁ ବିଭିନ୍ନ ରାଜ୍ୟପଦ ଓ ରାଜକୀୟ ସୁବିଧା ଦେବା ଆରମ୍ଭ କଲେ । ଉକ୍ତିଥି ସେବାର ନିଦର୍ଶନ ସ୍ୱରୂପ ରାଜ୍ୟରେ ମସଜିଦ ନିର୍ମାଣ ଓ ମୁସଲମାନ ନ୍ୟାୟାଳୟ ପ୍ରତିଷ୍ଠା ପାଇଁ ସୁଯୋଗ ଦିଆଗଲା । ବିଭିନ୍ନ ସ୍ଥଳରେ ମୁସଲମାନମାନେ ବସ୍ତି କରି ରହିଲେ । ହିନ୍ଦୁମାନେ ଆତିଥ୍ୟ ପାଇଁ ଗର୍ବ ଅନୁଭବ କରୁଥିବାବେଳେ ମୁସଲମାନମାନେ ଛଳକପଟର ଆଶ୍ରୟ ନେଇ ଧର୍ମାନ୍ତର ପାଇଁ ଉଦ୍ୟମ କଲେ ।

ପ୍ରାଚୀନ ବୈଦିକ ଧର୍ମର ସାରବସ୍ତୁ ବିସ୍ମୃତ ହୋଇଯାଇଥିଲା । ପୌରାଣିକ ସଂପ୍ରଦାୟ ନିଜ ଧର୍ମରେ ବିଧର୍ମୀମାନଙ୍କୁ ମିଶାଇବା ପାଇଁ ମନା କରିଦେଇଥିଲେ । ଛୁଆଁ ଅଛୁଆଁ ଭେଦଭାବ ଓ ଜନ୍ମଗତ ଜାତିପ୍ରଥା ତୀବ୍ର ହୋଇଯାଇଥିଲା । ଯେଉଁମାନେ ହିନ୍ଦୁଧର୍ମରୁ ବିତାଡ଼ିତ ହେଉଥିଲେ, ସେମାନଙ୍କୁ ବିଧର୍ମୀ କହି ହତାଦର କରାଯାଉଥିଲା । ପୌରାଣିକ ଅତ୍ୟାଚାରକୁ ପସନ୍ଦ କରୁ ନ ଥିବା ଲୋକେ ମୁସଲମାନ ଧର୍ମ ଗ୍ରହଣ କରିବା ପାଇଁ ପଶ୍ଚାତ୍ପଦ ହେଉ ନ ଥିଲେ । ସେମାନେ ସେହି ଧର୍ମର ଏକେଶ୍ୱରବାଦ, ଜଡ଼ପୂଜା ନିଷେଧ, ଭ୍ରାତୃପ୍ରେମ ଓ ସାମ୍ୟବାଦ ପ୍ରତି ଆକୃଷ୍ଟ ହେଲେ । ପ୍ରାଚୀନ ବୈଦିକ ସଂସ୍କୃତିର ଗୌରବକୁ ବୁଝାଇବା ପାଇଁ ପୌରାଣିକ ମତର ଶକ୍ତି ନ ଥିଲା ।

ବହୁ ଦାକ୍ଷିଣାତ୍ୟ ରାଜା ମୁସଲମାନ ଧର୍ମ ଗ୍ରହଣ କରିବା ପରେ ଲକ୍ଷ ଲକ୍ଷ ପ୍ରଜା ମୁସଲମାନ ହେଲେ । ମାଲବାର ରାଜା ଚେରାମନ ଜେମ୍ବରନ୍ ମୁସଲମାନ ହୋଇ ନିଜକୁ ଅବ୍ଦୁଲ ରହମନ ନାମରେ ପରିଚିତ କଲେ । ତାହାର କାରଣ ଥିଲା ହିନ୍ଦୁ ଧର୍ମର କୁସଂସ୍କାର-ଗୁଡ଼ିକୁ ପ୍ରତିପାଦିତ କରିବାରେ ପୌରାଣିକ ପଣ୍ଡିତମାନଙ୍କ ଅକ୍ଷମତା । ପରେ ସେହି ରାଜା ମକ୍କା ଯାଇ କରି ସେଠାରେ ପ୍ରାଣତ୍ୟାଗ କଲେ ।

ଦଶମ ଶତାବ୍ଦୀରେ ଆସିଥିବା ଆରବ ଯାତ୍ରୀ ମସୁଦି ଲେଖିଛନ୍ତି ଯେ, ସେ ମାଲବାର ଅଞ୍ଚଳରେ ଦଶ ହଜାର ମୁସଲମାନ ବାସ କରୁଥିବା ଏକ ବସ୍ତି ଦେଖିଥିଲେ । ସେତେବେଳେ ଗୋଆ, ହନୋର ଓ ମାଙ୍ଗାଲୋରର ମୁସଲମାନମାନେ ସମୃଦ୍ଧିଶାଳୀ ହୋଇ ସାରି-ଥିଲେ । ସମୁଦ୍ରବର୍ତ୍ତୀ ଅଞ୍ଚଳ ନିକଟଗୁଡ଼ିକରେ ବହୁ ମସ୍‌ଜିଦ୍ ନିର୍ମିତ ହୋଇସାରିଥିଲା । ପେନୁକୋଣ୍ଡାର ରାଜା ଏକ ମୁସଲମାନ ସାଧୁଙ୍କ-ଦ୍ୱାରା ଧର୍ମାନ୍ତରିତ ହୋଇଥିଲେ । ବିଜୟନଗର ସେନାବାହିନୀରେ ଦଶ ହଜାର ମୁସଲମାନ ସୈନିକ ଥିଲେ ।

ଆରବଯାତ୍ରୀ ଇବନବତୁତା ଲେଖିଛନ୍ତି "ମାଳଦ୍ୱୀପର ସମସ୍ତ ଅଧିବାସୀ ମୂର୍ତ୍ତିପୂଜକ ଥିଲେ । ଏହି ଦ୍ୱୀପକୁ ପ୍ରତି ମାସରେ ସମୁଦ୍ର ଆଡ଼ୁ ଏକ ରାକ୍ଷସ ଆସୁଥିଲା । ସେହି ରାକ୍ଷସକୁ ସନ୍ତୁଷ୍ଟ କରିବା ପାଇଁ ଦ୍ୱୀପବାସୀ ଏକ ଅବିବାହିତା କୁମାରୀକୁ ସୁସଜ୍ଜିତ କରି ସମୁଦ୍ର ତଟରେ ଥିବା ଦେବମନ୍ଦିରରେ ଛାଡ଼ିଦେଇ ଆସୁଥିଲେ । ମରୋକୋର ଜଣେ ଆରବ ଶେଖ୍ ଏହି ଦ୍ୱୀପରେ ପହଞ୍ଚି ଲୋକମାନଙ୍କ ଦୁର୍ଦ୍ଦଶା ଦେଖିଲେ । ତାଙ୍କ ଚେଷ୍ଟାରୁ ଦ୍ୱୀପବାସୀମାନେ ରାକ୍ଷସ କବଳରୁ ମୁକ୍ତ ହେଲେ । ଏହା ଦେଖି ଦ୍ୱୀପର ରାଜା ଓ ପ୍ରଜା ସମସ୍ତେ ମୁସଲମାନ ହୋଇଗଲେ । ସମୁଦ୍ର ଆଡ଼ୁ ଆସୁଥିବା ରାକ୍ଷସ କିଏ

ଥିଲା ଓ ତାଙ୍କୁ ସେଖ୍ କପୂର ଦମନ କଲେ ତାହା ରହସ୍ୟପୂର୍ଣ୍ଣ । ସମ୍ଭବତଃ ସେହି ରାକ୍ଷସ କୌଣସି ଦୁଷ୍ଟ ବ୍ୟକ୍ତି ଥିଲା ଯେ ମୂର୍ତ୍ତିପୂଜା ଆଦି ପ୍ରଚଳିତ ଅନ୍ଧବିଶ୍ୱାସର ସୁଯୋଗ ନେଇ ଲୋକଙ୍କୁ ଭୟଭୀତ କରାଉଥିଲା ଅଥବା ଶେଖଙ୍କଦ୍ୱାରା ପ୍ରେରିତ କୌଣସି ଛଦ୍ମବେଶଧାରୀ ମୁସଲମାନ ଥିଲା ଯାହାଦ୍ୱାରା ଦ୍ୱୀପର ଅଧିବାସୀମାନଙ୍କୁ ମୁସଲମାନ କରିବାରେ ଶେଖ୍ ସମର୍ଥ ହୋଇଥିଲେ ।”

ମାନ୍ଦ୍ରାଜର ବଡ଼ପଟ୍ଟନର ରାଜା କୋୟୁଲଙ୍କ ଜଣେ ପୂର୍ବଜ ମୁସଲମାନ ହୋଇଥିଲେ । ସେ ଏକ ମସଜିଦ ନିର୍ମାଣ କରିଥିଲେ । ଯାଫୀ ଇବନବତୁତା ଲେଖିଛନ୍ତି, “ଯେଉଁଠାରେ ବର୍ତ୍ତମାନ ମସଜିଦ ରହିଛି, ସେଠାରେ ଏକ ବୃକ୍ଷ ଥିଲା । ସେହି ବୃକ୍ଷରେ ‘କଲ୍ମା’ ଲେଖା ଯାଇଥିଲା । ଏହି ଗଛର ଗୁଳି ମୁସଲମାନ ଓ ହିନ୍ଦୁ ନେଇ ରୋଗମୁକ୍ତ ହେଉଥିଲେ । ରାଜା ଏହି ଚମତ୍କାର ଦେଖି ମୁସଲମାନ ହୋଇଗଲେ । ବୁଦ୍ଧପଟ୍ଟନରେ ଥିବା ମସଜିଦର ଗୁଡ଼ରୁ ଜଣେ ବ୍ରାହ୍ମଣ ଗୋଟିଏ କାଠ ନେଇ ଘରେ ରଖିଥିବାରୁ ତାହା ଘରେ ନିଆଁ ଲାଗିଗଲା । ଏହି ଚମତ୍କାର ପ୍ରଚାରିତ ହେବା ପରେ ଲୋକେ ମୁସଲମାନ ମତ ପ୍ରତି ଆକୃଷ୍ଟ ହେଲେ ।”

କରମଣ୍ଡଳର ରାଜା ସୁନ୍ଦରପାଣ୍ଡ୍ୟ ତକାଉଦ୍ଦିନ ନାମକ ଏକ ମୁସଲମାନ ମନ୍ତ୍ରୀ ନିଯୁକ୍ତ କରିଥିଲେ । ତକାଉଦ୍ଦିନଙ୍କ ଭାଇ ଜମାଲୁଦ୍ଦୀନ ପ୍ରତି ବର୍ଷ ଆରବରୁ ଦଶ ହଜାର ଘୋଡ଼ା ଆଣି ବିକ୍ରୟ କରୁଥିଲେ । ରାଜାଙ୍କ ମୃତ୍ୟୁ ପରେ ସେମାନେ ରାଜଗାଦି ମାଡ଼ିବସିଲେ । ମୁସଲମାନମାନେ ନିଜ ଧର୍ମ ପ୍ରଚାର ପାଇଁ ଅନେକ କୌଶଳ ପ୍ରୟୋଗ କରୁଥିଲେ । ମୁସଲମାନ ଫକୀରମାନେ ଛଦ୍ମବେଶରେ ଯାଇ ମନ୍ଦିର ଭିତର ବ୍ୟବସ୍ଥା ଲକ୍ଷ୍ୟ କରୁଥିଲେ ଓ ମୁସଲମାନ

ଶାସକମାନଙ୍କୁ ସେହି ବିଷୟରେ ଅବଗତ କରାଉଥିଲେ । ଯାତ୍ରୀ ଇବନ୍‌ବତୁତା ଚନ୍ଦାପୁରରେ ଥିବା ମନ୍ଦିରରେ ଏକ ଯୋଗୀଙ୍କ ସଙ୍ଗେ ସାକ୍ଷାତ କଲେ ଯେ କି ଛଦ୍ମବେଶଧାରୀ ମୁସଲମାନ ଥିଲେ ଓ ସଂକେତଦ୍ୱାରା କଥାବାର୍ତ୍ତା କରୁଥିଲେ । ପ୍ରସିଦ୍ଧ ପାରସୀ କବି ଶେଖ ସାଦୀ ସୋମନାଥ ମନ୍ଦିରରେ କିଛିକାଳ ହିନ୍ଦୁବେଶ ଧାରଣ କରି ରହି ଥିଲେ । ୧୧୯୭ ଖ୍ରୀଷ୍ଟାବ୍ଦରେ ଶେଖ୍ ମୁଇନୁଦ୍ଦୀନ ଚିସ୍ତୀ ଅଜମେରରେ ଥିବା ମନ୍ଦିରର ମହନ୍ତ ରାମଦେବ ଓ ଯୋଗୀରାଜଙ୍କୁ ମୁସଲମାନ ମତରେ ଦୀକ୍ଷିତ କରିଥିଲେ । ଦକ୍ଷିଣ ଭାରତରେ ସଦ୍ରୁଦ୍ଦୀନ ଖୋଦା ସଂପ୍ରଦାୟ ଆରମ୍ଭ କରିଥିଲେ ।

ନବମ ଶତାବ୍ଦୀରେ ବଲଜରୀ ନାମକ ଏକ ଆରବ ଐତିହାସିକ ଲେଖିଛନ୍ତି ଯେ କାଶ୍ମୀର, କାବୁଲ ଓ ମୁଲତାନ ମଧ୍ୟରେ ଆସାଫାନ ନାମକ ଏକ ରାଜ୍ୟ ଥିଲା । ସେଠାର ରାଜାଙ୍କ ଏକମାତ୍ର ପୁତ୍ର ରୋଗରେ ପଡ଼ିବାରୁ ରାଜା ମନ୍ଦିରର ପୂଜକମାନଙ୍କୁ ଡକାଇ ନିଜ ପୁତ୍ରର ଜୀବନ ରକ୍ଷା ପାଇଁ ଦେବତାଙ୍କୁ ପ୍ରାର୍ଥନା କରିବାକୁ କହିଲେ । ତା' ପର ଦିନ ପୂଜକମାନେ ରାଜାଙ୍କୁ ଜଣାଇଲେ ଯେ ଦେବତା ରାଜପୁତ୍ରର ଜୀବନରକ୍ଷା ପାଇଁ ସମ୍ମତି ପ୍ରଦାନ କରିଛନ୍ତି ; ମାତ୍ର କିଛି ସମୟ ପରେ ରାଜପୁତ୍ରର ମୃତ୍ୟୁ ଘଟିବାରୁ ରାଜା କ୍ରୁଦ୍ଧ ହୋଇ ମନ୍ଦିରକୁ ଧ୍ୱଂସ କଲେ । ସେ ମୁସଲମାନ ଧର୍ମାବଲମ୍ବୀମାନଙ୍କୁ ଡକାଇ ମୁସଲମାନ ଧର୍ମର ସିଦ୍ଧାନ୍ତଗୁଡ଼ିକ ପଚାରିଲେ । ରାଜା ସେଥିରେ ସନ୍ତୁଷ୍ଟ ହୋଇ ମୁସଲମାନ ଧର୍ମ ଗ୍ରହଣ କଲେ ।

ମୂର୍ତ୍ତିପୂଜା ଓ ତାହାର କୁପରିଣାମ ବିଷୟରେ ଆରବ ଯାତ୍ରୀ-ଗଣ ବହୁଳ ଭାବରେ ବର୍ଣ୍ଣନା କରିଛନ୍ତି । ଦଶମ ଶତାବ୍ଦୀର ବୈତଲ ମୁକଦ୍ଦମ ନିବାସୀ ଏକ ଆରବ ଯାତ୍ରୀ ସିନ୍ଧୁ ପ୍ରଦେଶର ମନ୍ଦିର ବିଷୟରେ ଲେଖିଛନ୍ତି—'ଏଠାରେ ପ୍ରସ୍ତର ନିର୍ମିତ ଦୁଇଟି ଅଦ୍ଭୁତ

ମୂର୍ତ୍ତି ଅଛି । ତା' ନିକଟରେ ପ୍ରାର୍ଥନା କଲେ ସମସ୍ତ ଅଭିଳାଷ ପୂର୍ଣ୍ଣ ହୁଏ ବୋଲି ଲୋକେ ବିଶ୍ୱାସ କରନ୍ତି । ଏଠାରେ ପୂଜାରୀମାନଙ୍କର ବ୍ୟୟ ଦେବଦାସୀ ମାନଙ୍କଦ୍ୱାରା ପୂର୍ଣ୍ଣ ହୁଏ । ବଡ଼ ବଡ଼ ଲୋକେ ନିଜ କନ୍ୟାମାନଙ୍କୁ ମୂର୍ତ୍ତି ନିକଟରେ ସମର୍ପଣ କରନ୍ତି ।' ଇବ୍ନ ନଦୀମ ନାମକ ଜଣେ ଲେଖକ ଅନେକ ଆକୃତିର ମୂର୍ତ୍ତି ବିଷୟରେ ବର୍ଣ୍ଣନା କରିଛନ୍ତି ଯେପରି କାଳୀଙ୍କ ପରି ଚାରି ହାତ, ନୀଳ ରଙ୍ଗ, ଭୟଙ୍କର ଦାନ୍ତ, ମସ୍ତକ ଓ ଗଳାରେ ଖପୁରୀମାଳ ଇତ୍ୟାଦି । ସେହିପରି ସୂର୍ଯ୍ୟ ମୂର୍ତ୍ତିର ଚାରି ଅଶ୍ୱ ବିଶିଷ୍ଟ ରଥ ଓ ଚନ୍ଦ୍ର ମୂର୍ତ୍ତିର ଚାରି ହଂସ ବିଶିଷ୍ଟ ରଥ ।

ମୁତ୍ହକଲମ୍ ନାମକ ଅନ୍ୟ ଜଣେ ଆରବ ଲେଖକ ଦଶମ ଶତାବ୍ଦୀର ମହାଦେବ, କାଳୀ, ମହାକାଳୀ, ଶିବଲିଙ୍ଗ ଆଦି ପୂଜା ବିଷୟରେ ବର୍ଣ୍ଣନା କରିଛନ୍ତି । ବହୁ ଆରବ ଲେଖକ ତତ୍କାଳୀନ ଦେବଦାସୀ ଓ ଆତ୍ମବଳି ପ୍ରଥାକୁ ଘୃଣା ସହିତ ବର୍ଣ୍ଣନା କରିଛନ୍ତି । ସେମାନେ ମୂର୍ତ୍ତି ସମ୍ମୁଖରେ ଅଗ୍ନିରେ ଝାସ ଦେବା, ଛୁରୀଦ୍ୱାରା ନିଜ ହୃତ୍‌ପିଣ୍ଡ କାଟି ଆଣିବା, ନିଜ ଦେହରେ ତେଲ ଢାଳି ନିଆଁ ଲଗାଇବା ଆଦି ରୋମାଞ୍ଚକାରୀ ଘଟଣା ଲେଖିଛନ୍ତି ।

ନବମ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଆସିଥିବା ଏହି ଯାତ୍ରୀମାନଙ୍କ ବିବରଣୀରୁ ବିଷ୍ଣୁଙ୍କ ମୂର୍ତ୍ତି ଅଥବା ବୈଷ୍ଣବ ସଂପ୍ରଦାୟ ସଂପର୍କରେ ବିଶେଷ ସୂଚନା ନ ଥିବାରୁ ଜଣାଯାଏ ଯେ ଭାରତବର୍ଷରେ ପ୍ରଥମେ ଶୈବ ଓ ଶାକ୍ତ ସଂପ୍ରଦାୟ ଜନ୍ମଲାଭ କରିଥିଲା । ସଂଭବତଃ ସୂର୍ଯ୍ୟଙ୍କ ପୂଜା ପାଇଁ ବିଷ୍ଣୁ ଦେବତା କଳ୍ପିତ ହେଲେ କାରଣ ସୂର୍ଯ୍ୟଙ୍କର ଏକ ନାମ ବିଷ୍ଣୁ । ବିଷ୍ଣୁ ପୁରାଣରେ ସୂର୍ଯ୍ୟଙ୍କ ଦ୍ୱାଦଶ ନାମ ହେଉଛି—ବିଷ୍ଣୁ, ଶୁକ୍ର, ଅର୍ଯ୍ୟମା, ଧାତା, ତ୍ୱଷ୍ଟା, ପୂଷା, ବିବସ୍ୱାନ, ସବିତା, ମିତ୍ର, ବରୁଣ, ଅଂଶ ଓ ଭଗ ।

ମହମ୍ମଦ ଘୋରିଙ୍କ ଆକ୍ରମଣ ପରେ ମୁସଲମାନମାନେ ତିନଶହ ବର୍ଷ ପର୍ଯ୍ୟନ୍ତ ଦିଲ୍ଲୀ ଶାସନ କଲେ । ସେହି ସମୟରେ ଅଗଣିତ ତୀର୍ଥ ଓ ମନ୍ଦିର ଧ୍ୱଂସ କରାଗଲା । ରାଜାଙ୍କ ବିନା କେହି ତୀର୍ଥ ଯାତ୍ରା କରିପାରୁ ନ ଥିଲେ । ମୁସଲମାନ ଧର୍ମବିଧାନ ଅନୁସାରେ ପ୍ରତ୍ୟେକ ହିନ୍ଦୁଠାରୁ ଜିଜିଆ କର ଆଦାୟ କରାଯାଉଥିଲା । କୁତବୁଦ୍ଦିନ ଏବକ୍ ନାମକ ବାଦଶାହା ଦିଲ୍ଲୀ, ମିରଟ, କୋଏଲ, ଆଜମୀର, ଗ୍ୱାଲିଅର, କାଲିଂଜର ପ୍ରଭୃତି ସ୍ଥାନ ଆକ୍ରମଣ କରି ହଜାର ହଜାର ମନ୍ଦିର ଧ୍ୱଂସ କରିବା ସଙ୍ଗେ ସଙ୍ଗେ ବହୁ ସଂଖ୍ୟକ ହିନ୍ଦୁଙ୍କୁ ହତ୍ୟା କଲେ ।

କୁତବୁଦ୍ଦିନ ଗୋଲାମ ମହମ୍ମଦ ବିହାର ଓ ବଙ୍ଗ ପ୍ରଦେଶ ଆକ୍ରମଣ କଲେ । ମାର୍ଗରେ ବିଶ୍ୱନାଥ ମହାଦେବଙ୍କ ସୁରକ୍ଷିତ ନଗରୀରେ ଥିବା ମନ୍ଦିର ଓ ମୂର୍ତ୍ତି ଧ୍ୱଂସ କଲେ । ବିହାରରେ ଥିବା ଏକ ପ୍ରସିଦ୍ଧ ବିଦ୍ୟାପୀଠରେ ଓ ତାହାର ବିଶାଳ ପୁସ୍ତକାଗାରରେ ଅଗ୍ନି ସଂଯୋଗ କରି ସେ ସବୁ ଧୂଳିସାତ୍ କଲେ । ସେଠାରେ ଥିବା ବହୁ ଭିକ୍ଷୁ ନିହତ ହେଲେ । କିଛିକାଳ ପରେ ଅଲତମଶ ଉଜ୍ଜୟିନୀ ଆକ୍ରମଣ କରି ମହାକାଳ ମନ୍ଦିର ଧ୍ୱଂସ କଲେ ଓ ସେଠାରୁ ସମସ୍ତ ଧନରତ୍ନ ଲୁଟି ନେଲେ ।

ପ୍ରାୟ ୧୩୮୯ ଖ୍ରୀଷ୍ଟାବ୍ଦରେ ଆଫଗାନିସ୍ଥାନର ରାଜା ତୈମୁର ଭାରତ ଆକ୍ରମଣ କଲେ । ସେ ନିଜ ସୈନିକମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ ହିନ୍ଦୁସ୍ଥାନର ଲୋକେ ମୂର୍ତ୍ତିପୂଜକ ହୋଇ ଥିବାରୁ କାଫିର ଅଟନ୍ତି । ଖୁଦା ଓ ରସୁଲଖୁଦାଙ୍କ ଆଜ୍ଞାନୁସାରେ ହିନ୍ଦୁସ୍ଥାନ ଉପରେ ଜହାଦ୍ କରି କାଫିର୍‌ମାନଙ୍କୁ ହତ୍ୟା କରିବା ଉଚିତ୍ ।

ଏହି ଭାବରେ ତୈମୁରଙ୍କଦ୍ୱାରା ଉତ୍ସାହିତ ହୋଇ ତାଙ୍କ ସୈନ୍ୟମାନେ ଏ ଦେଶର ଗ୍ରାମରେ ଓ ନଗରରେ ଲୁଟତରାଜ

ଆରମ୍ଭ କଲେ ତଥା ଅସଂଖ୍ୟ ନିରପରାଧ ଲୋକଙ୍କୁ ହତ୍ୟା କିମ୍ବା ବନ୍ଦୀ କଲେ । ଭଟନେର୍ ଠାରେ ଶହ ଶହ ହିନ୍ଦୁ ନିହତ ହେଲେ । ଦିଲ୍ଲୀ ଓ ମେରଠ ସହରମାନଙ୍କରେ ନରହତ୍ୟାର ତାଣ୍ଡବ ଲୀଳା ଘଟିଲା । କୁହାଯାଏ ଯେ ଦିଲ୍ଲୀରେ ପହଞ୍ଚିବା ବେଳେ ତୈମୁରଙ୍କଠାରେ ଦୁଇ ଲକ୍ଷ ବନ୍ଦୀ ଥିଲେ । ହରିଦ୍ୱାରର ମେଳାରେ ପହଞ୍ଚି ତୈମୁର ନରହତ୍ୟା ଓ ଲୁଣ୍ଠନ ଆରମ୍ଭ କଲେ । ପରିଶେଷରେ ସେ କାବୁଲ ପ୍ରତ୍ୟାବର୍ତ୍ତନ କଲେ । କୁହାଯାଏ ଯେ ଲୁଟି ନେଇଥିବା ଅଜସ୍ର ଧନ-ଦ୍ୱାରା ଆଠବର୍ଷ ପର୍ଯ୍ୟନ୍ତ ସୈନ୍ୟମାନଙ୍କୁ ଆଗୁଆ ବେତନ ମିଳିଥିଲା ।

ସେତେବେଳେ ସମସ୍ତ ଉତ୍ତରପଶ୍ଚିମ ଭାରତ ମୁସଲମାନଙ୍କ ଅଧୀନରେ ଥିଲା । ହିନ୍ଦୁଙ୍କଠାରେ ପ୍ରତିରୋଧ ଶକ୍ତି ନ ଥିଲା । ଧୀରେ ଧୀରେ ପଠାନ ରାଜ୍ୟର ପତନ ହୋଇ ମୋଗଲମାନେ ଦେଶ ଶାସନ କରିବାରେ ଲାଗିଲେ । ସେମାନଙ୍କ ସାମ୍ରାଜ୍ୟ ଦାକ୍ଷିଣାତ୍ୟକୁ ଛାଡ଼ି ସମଗ୍ର ଭାରତ ବର୍ଷରେ ବ୍ୟାପିଥିଲା । ଆକବର, ଜାହାଙ୍ଗୀର ଓ ସାହାଜାହାନଙ୍କ ରାଜତ୍ୱକାଳରେ ଇସଲାମୀୟ ଧର୍ମାନ୍ଧତାରେ ଟିକିଏ ଶିଥିଳତା ଦେଖାଦେଲା । ସେମାନେ ହିନ୍ଦୁ ଓ ମୁସଲମାନଙ୍କ ସହ ସମାନ ବ୍ୟବହାର କରିବା ଆରମ୍ଭ କଲେ । କିନ୍ତୁ ରାଜ୍ୟର ବିଶିଷ୍ଟ ବିଶିଷ୍ଟ ପଦବୀରେ ସେବେ ମଧ୍ୟ ମୁସଲମାନମାନଙ୍କୁ ରଖାଯାଉଥିଲା । ମୁସଲମାନ କର୍ମଚାରୀମାନେ ଇସଲାମ ପ୍ରସାରକୁ ନିଜର କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ସେମାନଙ୍କଠାରୁ ଧାର୍ମିକ ସହିଷ୍ଣୁତା ଆଶା କରିବା ବୃଥା ବୋଲି ପ୍ରମାଣିତ ହେଉଥିଲା ଓ ହିନ୍ଦୁମାନଙ୍କ ଧାର୍ମିକ ସ୍ୱତନ୍ତ୍ରତା ଅତି ନିମ୍ନ ସ୍ତରରେ ରହିଥିଲା ।

ମୋଗଲ ରାଜା ଔରଙ୍ଗଜେବ ନିଜର ପିତା ସାହାଜାହାନଙ୍କୁ ବନ୍ଦୀ କରି ଦିଲ୍ଲୀ ସିଂହାସନରେ ଆରୂଢ଼ ହେଲେ । ସେ ଜଣେ ଧର୍ମାନ୍ଧ ମୁସଲମାନ ଥିଲେ ଓ ହିନ୍ଦୁମାନଙ୍କ ପ୍ରତି ତାଙ୍କର ଅତ୍ୟନ୍ତ ଘୃଣା

ଥିଲା । ସେ କାଶୀ ମନ୍ଦିରରେ ଶାସ୍ତ୍ରାଧ୍ୟୟନ ଓ ପୂଜାପାଠ ବନ୍ଦ କରାଇ ଦେଲେ । ବିଶ୍ୱନାଥ ମନ୍ଦିରର ଅଧିକାଂଶ ଧ୍ୱଂସ କରିବା ପରେ ସେଠାରେ ଏକ ମସଜିଦ ସ୍ଥାପନ କଲେ । ଉକ୍ତ ମସଜିଦ୍ ଏ ପର୍ଯ୍ୟନ୍ତ ସେଠାରେ ବିଦ୍ୟମାନ ରହିଛି । ହିନ୍ଦୁଙ୍କ ଉପରେ ହେଉଥିବା ଅତ୍ୟାଚାରର ସୀମା ରହିଲା ନାହିଁ ।

ଶହ ଶହ ବର୍ଷର ପରାଧୀନତା ପରେ ହିନ୍ଦୁମାନେ ମୁସଲମାନ ଶକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ପଞ୍ଜାବର ଗୁରୁ ଗୋବିନ୍ଦ ସିଂହ ଓ ଦାକ୍ଷିଣାତ୍ୟର ଶିବାଜୀ ନିଜ ନିଜ ଶକ୍ତି ସଂଗ୍ରହ କରି ମୋଗଲ ରାଜ୍ୟ ଆକ୍ରମଣ କଲେ । ଔରଙ୍ଗଜେବଙ୍କ ମୃତ୍ୟୁ ପରେ ଧୀରେ ଧୀରେ ମୋଗଲ ସାମ୍ରାଜ୍ୟର ପତନ ଘଟିଲା । ଶିଖମାନେ ପଶ୍ଚିମୋତ୍ତର ଭାରତ, ରାଜପୁତମାନେ ମଧ୍ୟ ଭାରତ ଓ ମରାଠାମାନେ ଦକ୍ଷିଣ ଭାରତ ଅଧିକାର କଲେ । ହିନ୍ଦୁମାନେ ସଙ୍ଗଠିତ ହୋଇ ସ୍ୱାଧୀନ ଭାବରେ ରହିବାର ସୁଯୋଗ ପାଇଲେ ସତ୍ୟ; ପରନ୍ତୁ ସାଂପ୍ରଦାୟିକ ଓ ଆନ୍ତରିକ ବିଭେଦ ସେମାନଙ୍କ ପ୍ରଗତି ପଥରେ ଅନ୍ତରାୟ ହେଲା । ସପ୍ତମ ଶତାବ୍ଦୀର ଆରମ୍ଭ ଠାରୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଘଟିଥିବା ଲୋମହର୍ଷଣକାରୀ ଇତିହାସରୁ ସୂଚିତ ହୁଏ ଯେ ମୂର୍ତ୍ତି ପୂଜାରୁ ଜାତ ହୋଇଥିବା ମାନସିକ ଦୁର୍ବଳତା ହିନ୍ଦୁ ଜାତିର ସାମାଜିକ ଓ ରାଷ୍ଟ୍ରୀୟ ଅଧଃପତନର କାରଣ ହୋଇଥିଲା । ବାରମ୍ବାର ହିନ୍ଦୁମନ୍ଦିର ଓ ମୂର୍ତ୍ତିମାନଙ୍କ ଉପରେ ଧାର୍ମିକ ଓ ସାମାଜିକ ଅତ୍ୟାଚାର, ଅସଂଖ୍ୟ ହିନ୍ଦୁମାନଙ୍କ ହତ୍ୟା ଆଦି କରୁଣ କାହାଣୀ ମୂର୍ତ୍ତିପୂଜାର ପରିଣାମ । ଏହା ସତ୍ତ୍ୱେ ସାଧାରଣ ଲୋକେ ଶିକ୍ଷା ପାଇଲେ ନାହିଁ । ଭଗ୍ନ ମନ୍ଦିର ଓ ମୂର୍ତ୍ତି ସ୍ଥଳରେ ନୂଆ ନୂଆ ମନ୍ଦିର ଓ ମୂର୍ତ୍ତି ନିର୍ମିତ ହେଲା । ଧ୍ୱଂସ ହୋଇଥିବା ତୀର୍ଥସ୍ଥଳଗୁଡ଼ିକୁ ପୁନର୍ବାର ନିର୍ମାଣ କରାଗଲା । ନୂଆ ନୂଆ ଦେବତାମାନଙ୍କ ମୂର୍ତ୍ତି ବଢ଼ିବାକୁ ଲାଗିଲା । ଏକ ବ୍ୟବସାୟୀ

ବାରମ୍ବାର କ୍ଷତି ସହ୍ଯ ମଧ୍ୟ ନିଜ ବ୍ୟବସାୟ ଚଳାଇ ରଖିବା ପରି ପରମାତ୍ମାଙ୍କ ନାମରେ ଚାଲିଥିବା ପ୍ରତିମା ପ୍ରଥା ପୁଣି ଚାଲିବାରେ ଲାଗିଲା ।

ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ୟୁରୋପରେ ମଧ୍ୟ ମୂର୍ତ୍ତିପୂଜା ପ୍ରଚଳିତ ଥିଲା । ରୋମେନ କେଥୋଲିକମାନେ ମୂର୍ତ୍ତିପୂଜକ ଥିଲେ । ଖ୍ରୀଷ୍ଟିଆନ ଧର୍ମଯାଜକମାନେ ଆମ ଦେଶର ମଠମହନ୍ତଙ୍କ ପରି ଜନସାଧାରଣଙ୍କ ସରଳ ବିଶ୍ୱାସର ସୁଯୋଗ ନେଇ ସେମାନଙ୍କୁ ଶୋଷଣ କରୁଥିଲେ । ସେତେବେଳେ ୟୁରୋପରେ ଧାର୍ମିକ ଅବ୍ୟବସ୍ଥା ଲାଗି ରହିଥିଲା । ନବମ ଶତାବ୍ଦୀରେ ଆରବର ମୁସଲମାନମାନେ ଧର୍ମଯୁଦ୍ଧ ଘୋଷଣା କରି ଖ୍ରୀଷ୍ଟିଆନମାନଙ୍କ ଧର୍ମସ୍ଥଳ ଓ ଗୀର୍ଜା-ଗୁଡ଼ିକୁ ଧ୍ୱଂସ କରିବା ଆରମ୍ଭ କଲେ ଓ ବହୁ ଖ୍ରୀଷ୍ଟିଆନଙ୍କୁ ହତ୍ୟା କଲେ । ଷୋଡ଼ଦଶ ଶତାବ୍ଦୀରେ ୟୁରୋପରେ ଏକ ବିରାଟ ଧର୍ମକ୍ରାନ୍ତି ଘଟିଲା । ମାର୍ଟିନ ଲୁଥରଙ୍କଦ୍ୱାରା ପ୍ରୋଟେଷ୍ଟାଣ୍ଟ ମତର ସୃଷ୍ଟି ହେଲା । ପ୍ରୋଟେଷ୍ଟାଣ୍ଟମାନଙ୍କ ସଂସ୍କାର ମୂଳକ ପ୍ରଚାରଦ୍ୱାରା ନିଜକୁ ଧର୍ମରକ୍ଷକ ବୋଲି ପ୍ରଚାର କରି ଦୁଷ୍କର୍ମ କରୁଥିବା ପୋପ ଓ ତାହାଙ୍କ ଅନୁଚର-ବର୍ଗଙ୍କ ଅନ୍ଧବିଶ୍ୱାସ ଜନିତ ମେରୁଦଣ୍ଡ ଦୋହଲି ଗଲା । ଏହି ଧାର୍ମିକ କ୍ରାନ୍ତି ଖ୍ରୀଷ୍ଟିଆନ ମତର ନାନା ଅନ୍ଧବିଶ୍ୱାସ ଦୂର କରି ୟୁରୋପରେ ଆଧ୍ୟାତ୍ମିକ ଉତ୍ଥାନର ସୂତ୍ରପାତ କଲା ।

ମୁସଲମାନ କାଳରେ ହିନ୍ଦୁ ଜାତିରେ ପ୍ରଚଳିତ ଥିବା ମୂର୍ତ୍ତିପୂଜା-ରୂପକ ଅନ୍ଧବିଶ୍ୱାସ ବିରୁଦ୍ଧରେ ଅନେକ ସନ୍ଥ ସ୍ୱର ଉତ୍ତୋଳନ କରିଥିଲେ । ପଞ୍ଜାବରେ ଗୁରୁ ନାନକ ମୂର୍ତ୍ତିପୂଜାର ଅତ୍ୟନ୍ତ ବିରୋଧୀ ଥିଲେ । ଗୁରୁମାନଙ୍କ ବାଣୀଗୁଡ଼ିକୁ ସଂଗ୍ରହ କରି ରଚିତ ହୋଇଥିବା ଗୁରୁଗ୍ରନ୍ଥ ସାହେବରେ ଲେଖାଅଛି—

ପାଥର ଲେ ପୂଜନ୍ତି ମୁଗଧ ଗଂବାର
ଓହ୍ୱଜା ଅପି ଡୁବେ ତୁମ କହା ତରନ ହାର ॥
ବୁଡ ପୂଜ ପୂଜ ହ୍ୱନ୍ଦୁ ମୁଏସ୍ଥ ତୁରକ ମୁଏସ୍ଥ ସିରୁନାଇ
ଆହ ଲେ ଜାରେ ଓହ ଲେ ଗାଡ଼େ
ତେଖ ଗତ ଦୁହ୍ଧ ନ ପାଈ ॥
ପୂଜ ଶିଳା ତୀରଥ ବନବାସୀ
ଭରମତ ଡୋଲତ ଭଏ୍ଥ ଉଦାସୀ ॥
ଘରମହ୍ୱ ଠାକୁର ନଦରି ନ ଆବୈ
ଗଲମହ୍ୱ ପାହଣୁ ଲୈ ଲଟକାବୈ ॥

ଅର୍ଥାତ୍, ମୂର୍ଖମାନେ ପଥରକୁ ପୂଜା କରନ୍ତି । ଯେଉଁ ପଥର ସ୍ୱୟଂ ଜଳରେ ବୁଡ଼ିଯାଏ, ସେ ମନୁଷ୍ୟଙ୍କୁ କପରି ରକ୍ଷା କରିବ ? ମୂର୍ତ୍ତିପୂଜକ ପ୍ରଭୁଙ୍କ ଅପାର ଗୁଣ ବୁଝି ନାହାଁନ୍ତି । ପ୍ରସ୍ତରପୂଜକ ଓ ତୀର୍ଥସ୍ନାନକାରୀ ମନରେ କେବେ ଶାନ୍ତି ନ ଥାଏ । ଦେହରେ ଥିବା ଭଗବାନଙ୍କୁ ସ୍ମରଣ ନ କରି ଗଳାରେ ମାଳା ଲମ୍ବାଇଲେ କେଉଁ ବା ଲାଭ ଅଛି ? କବୀର କହିଛନ୍ତି—

ପାତୀ ତୋରେ ମାଲିନୀ ପାତୀ ପାତୀ ଜୀଉ
ଜିସ ପାହନ କୋ ପାତୀ ତୋରେ ସୋ ପାହନ ନିରଜୀଉ ॥
ପାଷାଣ ଗଢ଼ି କେ ମୂରତି କୋନ ଦେକୈ ଛାତି ପାଉ
ଜେ ଏହ ମୂରତି ସାଚୀ ହୈ ତଉ ଗଢ଼ନହାର ଖାଉ ॥

ଅର୍ଥାତ୍ ଯେଉଁ ପଥରକୁ ପରମାତ୍ମା ବୋଲି ଭାବ, ସେ ନିର୍ଜୀବ । ଯେଉଁ ମୂର୍ତ୍ତିକାର ପଥର କାଟି ତାହାର ହାତପାଦ ତିଆରି କରେ, ସେ ଜାଣେ ଯେ ପଥରରେ ଚେତନା ନାହିଁ ।

ପାଥର ପୂଜେ ହରି ମିଲେ ତୋ ହମ ପୂଜେ ପହାର
ଯା ଘାହରସେ ଚକ୍କୀ ଭଲୀ ଜୋ ପୀସ ଖାଇ ସଂସାର ॥

ଅର୍ଥାତ୍, ପଥର ପୂଜା କଲେ ଯଦି ଭଗବାନ ମିଳନ୍ତି, ତାହାହେଲେ ପାହାଡ଼କୁ ପୂଜା କର । ପଥର ଚକକୁ ପୂଜା କରିବା ତା'ଠାରୁ ଆହୁରି ଉତ୍ତମ, କାରଣ ତାହା ପେଷି ହୋଇ ସଂସାରକୁ ଖାଦ୍ୟ ଯୋଗାଏ ।

ସତନାମୀ ସଂପ୍ରଦାୟର ସଂସ୍ଥାପକ ବୀରଭାନୁ 'ଆଦି ଉପଦେଶ'ର ପ୍ରଥମ ହୁକୁମରେ ଲେଖିଛନ୍ତି—'କେବଳ ଏକ ଈଶ୍ୱରଙ୍କୁ ହିଁ ଉପାସନା କର । ମାଟି, ପଥର, କାଠ ବା ଅନ୍ୟ କୌଣସି ପଦାର୍ଥଦ୍ୱାରା ନିର୍ମିତ ବସ୍ତୁକୁ ପୂଜା କର ନାହିଁ ।' ଆଦି ଉପଦେଶର ଅଷ୍ଟମ ହୁକୁମରେ ଲେଖାଅଛି—କୌଣସି ଜଡ଼ମୂର୍ତ୍ତି ସମ୍ମୁଖରେ ନତମସ୍ତକ ହୁଅ ନାହିଁ ।

ଆକବରଙ୍କ ରାଜତ୍ୱକାଳରେ ସନ୍ଥ ମଲୂକ ଦାସ, ଔରଙ୍ଗଜେବଙ୍କ ସମୟର ଗୁଜରାଟ ସନ୍ଥ ପ୍ରାଣନାଥ ଓ ସନ୍ଥ ଋଣଦାସ, ରାମସ୍ନେହୀ ସମ୍ପ୍ରଦାୟର ସଂସ୍ଥାପକ ରାମଚରଣ ଆଦି ଧର୍ମପ୍ରବର୍ତ୍ତକମାନେ ମୂର୍ତ୍ତିପୂଜା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସନ୍ଥ ନାମଦେବଙ୍କ ଗୁରୁ କହିଛନ୍ତି—ପଥରନିର୍ମିତ ଦେବତାର କହିବା ଶକ୍ତି ନାହିଁ ; ସେ ଆମ ଜୀବନର ଦୁଃଖ କିପରି ଦୂର କରିପାରିବ ? ଅଜ୍ଞ ଲୋକେ ତାହାକୁ ସର୍ବବାଧାମୁକ୍ତ ପରମାତ୍ମା ବୋଲି ଭାବନ୍ତି । ଯଦି ମୂର୍ତ୍ତି ଆମର ଇଚ୍ଛାପୂରଣ କରିବାରେ ସମର୍ଥ, ତେବେ ତାହା ତଳେ ପଡ଼ି ଭାଙ୍ଗିଯାଏ କାହିଁକି ?

ମହାରାଷ୍ଟ୍ରର ତିନି ଜଣ ପ୍ରସିଦ୍ଧ ସନ୍ଥ ତୁକାରାମ, ଗୁରୁ ରାମଦାସ ଓ ଜ୍ଞାନେଶ୍ୱର ମୂର୍ତ୍ତିପୂଜା ତଥା ଅବତାରବାଦର ତୀବ୍ର ବିରୋଧ କରିଛନ୍ତି ।

ସନ୍ଥ ତୁକାରାମ କହିଛନ୍ତି—ଯେଉଁ ପ୍ରଭୁ କୃପାପୂର୍ବକ ଅପୂର୍ବ ମନୁଷ୍ୟ-ଦେହ ରଚନା କରିଛନ୍ତି, ସାଧାରଣ ମନୁଷ୍ୟ ତାଙ୍କ ଦର୍ଶନ କରିପାରେ ନାହିଁ । ତାଙ୍କୁ ଅନୁଭବ କରିବା ପରିବର୍ତ୍ତେ ଅଚେତନ ପଥରକୁ ସାଜସଜ୍ଜା କରି ଈଶ୍ୱରୋପାସନା କରୁଛି ବୋଲି ଭାବିବା ଭ୍ରାନ୍ତି । ଅନ୍ୟ ସ୍ଥଳରେ ସେ ଲେଖିଛନ୍ତି — ମୂର୍ତ୍ତିପୂଜକ ମୂର୍ତ୍ତିଗଠନ କରିବା ସମୟରେ ପଥରକୁ ହାତୁଡ଼ିରେ ପ୍ରହାର କରେ ; ହାୟ ! ସେହି ମୂର୍ତ୍ତି ସମ୍ମୁଖରେ ସେ ହାତ ଯୋଡ଼ି ପ୍ରଣାମ କରେ । ଆଶ୍ଚର୍ଯ୍ୟର ବିଷୟ ଯେଉଁ ପଥରକୁ ଭଗବାନ ଭାବି ପୂଜକ ପୂଜା-ଉପଚାର କରେ, ସେହି ପଥର ଶୁଣିପାରେ ନାହିଁ କିମ୍ବା ଦେଖିପାରେ ନାହିଁ । ତଥାପି ଅଜ୍ଞତାବଶତଃ ସେ ତାକୁ ପରମାତ୍ମା ବୋଲି ସ୍ୱୀକାର କରେ ।

ମୂର୍ତ୍ତିପୂଜା ଯେ ବୈଦିକ କାଳରେ ପ୍ରଚଳିତ ନ ଥିଲା, ତାହା ଦର୍ଶାଇବାକୁ ଯାଇ ସନ୍ଥ ତୁକାରାମ ଲେଖିଛନ୍ତି—

ଗଦଡ଼ାଚେ ଦେବ ପୂର୍ବୀ ନବ୍ହତେ ଜାଣୁ
ଜନହେ ଅଜ୍ଞାନ ଝାଲେ କେହ୍ଵା ॥
ଜନହେ ଅଜ୍ଞାନୀ ଦଗଡ଼ା ମାନିଲେ
ଗୁରୁସି ତ୍ୟାଗିଲେ ମୂଢ଼ ପଣେ ॥

—ହେ ମନୁଷ୍ୟଗଣ ! ତୁମ୍ଭେମାନେ ନିଶ୍ଚିତ ଭାବରେ ଜାଣି ରଖ ଯେ ପ୍ରାଚୀନ କାଳରେ ପଥରକୁ ଦେବତା ଭାବି ପୂଜା କରାଯାଉ ନ ଥିଲା । ଧୀରେ ଧୀରେ ମୂଢ ଲୋକେ ଅଜ୍ଞାନବଶତଃ ପଥରକୁ ଈଶ୍ୱର ଭାବିବା ଆରମ୍ଭ କଲେ ଓ ପ୍ରକୃତ ଗୁରୁଙ୍କୁ ତ୍ୟାଗ କଲେ ।

ପ୍ରକୃତ ମୂର୍ତ୍ତିପୂଜା ହେଉଛି ପାଞ୍ଚ ଚେତନ ମୂର୍ତ୍ତିର ପୂଜା—
ମାତା ପିତା ଆଚାର୍ଯ୍ୟ ଅତିଥି ଗୁରୁ ସଚେତନ ମୂର୍ତ୍ତି ।
ତ୍ୟାଙ୍କ ଶରଣ ତୁ ଜାବସୀ, ତରି ଚ କଲ୍ୟାଣ ପାବସୀ ॥

—ହେ ଜୀବ ! ମାତା, ପିତା, ଆଚାର୍ଯ୍ୟ, ଅତିଥି ଓ ଗୁରୁ ଏହି ପାଞ୍ଚଜଣ ଚେତନ ମୂର୍ତ୍ତି ଅଟନ୍ତି । ଏମାନଙ୍କ ଶରଣରେ ତୋର କଲ୍ୟାଣ ହେବ ।

ଭଗବାନଙ୍କ ସ୍ୱରୂପ ବିଷୟରେ ସେ ଲେଖିଛନ୍ତି—ତାହାଙ୍କର ରୂପ ନାହିଁ, ଗନ୍ଧ ନାହିଁ । ସେ କଦାପି ଜନ୍ମ ଗ୍ରହଣ କରନ୍ତି ନାହିଁ । ସେ ସର୍ବତ୍ର ବିଦ୍ୟମାନ । ଅବତାର କଳ୍ପନାକୁ ଘୋର ବିରୋଧ କରି ତୁକାରାମ କହିଛନ୍ତି—

ଏସା ଚେତନ ନିରାକାର ତ୍ୟାସୀ କଲ୍ପିଲେ ଆକାର ।
ପରିପୂର୍ଣ୍ଣ ଅବିନାଶ ତ୍ୟାସୀ ମାନିଲେ ବିନାଶ ॥
ଅବ୍ୟକ୍ତାସୀ ବ୍ୟକ୍ତ ମାନୁନୀ କରମ ସ୍ଥୂଳ ଭକ୍ତି ।
ତୋଚେ ମୂଢ଼ମତି ନର ବ୍ୟର୍ଥ ଜନ୍ମ ଲେ ପାମର ॥

—ମୂଢ଼ ଲୋକେ ନିରାକାର ପରମାତ୍ମାଙ୍କ ଆକାର କଳ୍ପନା କରି ତାହାକୁ ସାକାର ଅବତାର ବୋଲି ଭାବନ୍ତି । ଯେଉଁ ପ୍ରଭୁ ପରିପୂର୍ଣ୍ଣ ତଥା ଅବିନାଶୀ ଅଟନ୍ତି, ତାଙ୍କର ବିନାଶ ହୁଏ ବୋଲି କଳ୍ପନା କରନ୍ତି । ସେମାନେ ଅବ୍ୟକ୍ତ ପରମାତ୍ମାଙ୍କୁ ମନୁଷ୍ୟ ଭାବି ମୂର୍ତ୍ତିପୂଜା କରନ୍ତି । ପରମାତ୍ମାଙ୍କ ପ୍ରାପ୍ତି ପାଇଁ ସେମାନଙ୍କ ଜନ୍ମ ବୃଥା ଅଟେ ।

ଛତ୍ରପତି ଶିବାଜୀଙ୍କର ଗୁରୁ ସମର୍ଥ ରାମଦାସ ସ୍ୱରଚିତ ଗ୍ରନ୍ଥ 'ଦାସବୋଧ'ରେ କହିଛନ୍ତି ଯେ ଈଶ୍ୱରଭକ୍ତି ହେଉଛି ଈଶ୍ୱରଙ୍କୁ ସର୍ବାନ୍ତର୍ଯାମୀ ଓ ପରମ କରୁଣାମୟ ଭାବି ଜୀବସେବା କରିବା । ସେ ଲେଖିଛନ୍ତି—

ସହଜ ସୋଡୂନ ସାୟୁଜ୍ୟ ହାରୀ କୋଣି ଏକ ଦୋଷ ।
ଆମ୍ହା ସୋଡୂନ ଅନାତ୍ମ୍ୟାସ ବ୍ୟାମୀ ଧରିତି ॥
ପରତୋ ଧରିବା ହ୍ୱ ଧଖେନା ବ୍ୟାନ ଯେଷ୍ଟ ବ୍ୟକ୍ତ ତାନା ।
ଉଟରେ କଷ୍ଟବତୀ ମନା କାସା ୱାସ କରମ୍ଁ ॥
ମୂର୍ତ୍ତି ଧ୍ୟାନ ଧରିତା ସାୟୁସେ ଚେଥେ
ଏକ ଚି ଏକ ଢଙ୍ଗେସ ଭାସୋଁ
ନଯେୁ ଚେଚ ଭାସି ବିଲକ୍ଷଣ ॥

—ମନୁଷ୍ୟର ସବୁଠାରୁ ବଡ଼ ଭୁଲ ହେଉଛି ଯେ ସେ ପରମେଶ୍ୱରଙ୍କ ନିମିତ୍ତ ସରଳ ଧ୍ୟାନକୁ ଛାଡ଼ି ଆଡ଼ମ୍ବରପୂର୍ଣ୍ଣ ମନ୍ଦିରରେ ଜଡ଼ମୂର୍ତ୍ତିକୁ ଆରାଧନା କରିବାରେ ବ୍ୟସ୍ତ ରହୁଛି । ମୂର୍ତ୍ତି ମାଧ୍ୟମରେ ପରମେଶ୍ୱରଙ୍କ ଧ୍ୟାନ ସମ୍ଭବ ନୁହେଁ କାରଣ ମୂର୍ତ୍ତିଠାରେ ଧ୍ୟାନ କରିବାବେଳେ ପୂଜକକୁ ଅନେକ ପ୍ରକାର ମୂର୍ତ୍ତି ଦୃଶ୍ୟମାନ ହୋଇ ତାହାର ମନକୁ ବ୍ୟସ୍ତବ୍ୟସ୍ତ ଓ ଚଞ୍ଚଳ କରିଦିଏ । ପୂଜକ ଧ୍ୟାନର ପ୍ରକୃତ ଉଦ୍ଦେଶ୍ୟ ଭୁଲିଯାଏ ।

ଗୁରୁ ରାମଦାସ ଅବତାରବାଦ ସମ୍ବନ୍ଧରେ ଆଲୋଚନା କରି ଦାସବୋଧରେ ଲେଖିଛନ୍ତି—

ଦେବଦାସ ଦେହଧାରୀ କଳ୍ପିତି ତେଥେ
ନାନା ବିକଳ୍ପ ଉଠତି ।
ଭୋଗଣେ ତ୍ୟାଗନେ ବିପତ୍ତି ଦେହ ଯୋଗେ ॥

—ପରମେଶ୍ୱରଙ୍କୁ ଦେହଧାରୀ ବୋଲି କଳ୍ପନା କରିବା ସମ୍ପର୍କରେ ମୂର୍ତ୍ତିପୂଜକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୁଏ । ନିଜ ପରି ଭଗବାନ ମଧ୍ୟ ଦେହଧାରଣ କରି ଦେହର ସମସ୍ତ ବିକାର, ଯଥା: ଭୋଗ, ସୁଖ, ଦୁଃଖ, ବିପତ୍ତିରୁ ମୁକ୍ତ ହୁଅନ୍ତି ନାହିଁ ବୋଲି ବିଚାର କରେ ।

'ଦାସବୋଧ'ର ଅନ୍ୟ ଏକ ସ୍ଥଳରେ ସେ ଲେଖିଛନ୍ତି—

ଧାତୁ ପାଷାଣ ମୃତ୍ତିକା ଚିତ୍ରଲେଖ କାଷ୍ଠରେଖା ।
ତେଥେ ଦେବ କୈଚା ମୂର୍ଖା ଭ୍ରାନ୍ତି ପଡ଼ଲୀ ॥

—ହେ ମୂର୍ଖ ! ଧାତୁ, ପଥର, କାଠ ଓ ମାଟିର ଚିତ୍ରରେ ଭଗବାନ କାହାନ୍ତି ? ତୁ ଭ୍ରମରେ ହିଁ ଚିତ୍ରକୁ ଈଶ୍ୱର ଭାବ ପୂଜା କରିବାରେ ଲାଗିଛୁ ।

ସନ୍ଥ ଜ୍ଞାନେଶ୍ୱର ସ୍ୱରଚିତ 'ଜ୍ଞାନେଶ୍ୱରୀ' ଗ୍ରନ୍ଥରେ ଭଗବତ୍ ଗୀତାର ସାରକଥା ଲେଖିଛନ୍ତି—

ଜୈସା କୃତା ନଷ୍ଟପ୍ର ବାର୍ଯା ଗେଲା
ଜୈସା କୋଣୀ କାଂଜ ପ୍ୟାଲା ॥
ମଜ ପରିଣାମ ପାହୋଂଲା ଗଲା ଅମୃତାଚାଂ
ତେସେ ସ୍ଥୂଳକାର ନାଶୀବନ୍ତ ଭରଂବସା ବାନ୍ଧୋନ ଚିତ୍ତ ॥
ପାହତା ମଜ ଅଵ ନାଶେତେଁ
ତଷ୍ଣ କେଚା ହାସେ ॥

—କାଂଜ ପିଇ ଅମୃତର ସ୍ୱାଦ ଆଶା କରିବା ଯେପରି ହାସ୍ୟାସ୍ପଦ ; ବିନାଶଶୀଳ ମୂର୍ତ୍ତି ଅଥବା ସ୍ଥୂଳ ପଦାର୍ଥକୁ ଅବିନାଶୀ, ସର୍ବାନ୍ତର୍ଯ୍ୟାମୀ ପରମାତ୍ମା ବୋଲି ମଣିବା ସେହିପରି ବିବେକଶୂନ୍ୟ କାର୍ଯ୍ୟ ।

ସେ ପୁଣି ଲେଖିଛନ୍ତି—କୌଣସି ମୂର୍ତ୍ତିପୂଜକ ଏକ କଳ୍ପିତ ମୂର୍ତ୍ତି ତିଆରି କରି ତାହାଙ୍କୁ ଈଶ୍ୱର ଭାବ ପୂଜା କରେ । କୌଣସି କାରଣ ବଶତଃ ମୂର୍ତ୍ତିର ଆକାର ବଦଳିଗଲେ କିମ୍ବା ତାହା ଭାଙ୍ଗି ଗଲେ, ସେଥିରେ ବିଶ୍ୱାସ ନ ରଖି ମୂର୍ତ୍ତିକୁ ଫୋପାଡ଼ି ଦିଏ ।

ଲିଙ୍ଗାୟତ ସମ୍ପ୍ରଦାୟର ହାନ୍ତିକାରି ସନ୍ଥ ବିଶ୍ୱେଶ୍ୱର କହିଛନ୍ତି—ଏକ ଈଶ୍ୱରଙ୍କ ଛଡ଼ା ଅନ୍ୟ କୌଣସି ଦେବତା ନାହାନ୍ତି ।

ଈଶ୍ୱର ଥାଉ ଥାଉ ଅନ୍ୟ ଗୁଡ଼ିଏ ଈଶ୍ୱରଙ୍କୁ କଳ୍ପନା କରିବା ବ୍ୟଭିଚାର ଅଟେ । କେଉଁଠାରେ ବାସନକୁସନକୁ ଦେବତା କୁହାଯାଏ ତ କେଉଁଠାରେ ଗଳିରେ ପଡ଼ିଥିବା ପଥରକୁ ଦେବତା ବୋଲି କୁହାଯାଏ । ହେ ମିତ୍ରଗଣ ! ଏପରି ଅସଂଖ୍ୟ ଦେବତାଙ୍କ ଯୋଗୁଁ ଆଜି ଭୂମିରେ ଠିଆ ହେବା ପାଇଁ ସ୍ଥାନ ନାହିଁ । ଆମର ଶରୀର ହିଁ ପ୍ରକୃତ ମନ୍ଦିର ଅଟେ । ତେଣୁ ପୂଜା ପାଇଁ ଅନ୍ୟ ମନ୍ଦିରର ଆବଶ୍ୟକତା କ'ଣ ?

ଦକ୍ଷିଣ ଭାରତର ଜଣେ ମହାନ୍ ଯୋଗୀ ଶିବା କକ୍‌ବର ମୂର୍ତ୍ତିପୂଜାର ଅସାରତା ବିଷୟରେ ଲେଖିଛନ୍ତି—

ନଟ୍ଟ କଲ୍ଲି ଦୈବ ମେନରୁ ବାଲୁ ପୁଷ୍ପଂ ସତ୍ତିମେ
ସୁତ୍ତିବନ୍ଦ ମୋନ ମୋନେନରୁ ସୋଲ୍ଲି ମଂତ୍ର ମେତଡ଼ା ॥
ନଟ୍ଟ କଲ୍ଲିମ ପେସୁମୀ ନାଦ ନୁଲ୍ଲି ରୁକ୍କୈ ୟିଲ୍
ସୁଟ୍ଟ ସଟ୍ଟି ସଟ୍ଟୁବୁମ୍ କରିଚ୍ଚୁବେ ସୁବ ସୁଶୌ ॥

—ଯଦି ପରମାତ୍ମା ସ୍ୱୟଂ ଆମ ମଧ୍ୟରେ ବିଦ୍ୟମାନ, ତେବେ ମଂତ୍ର ପଢ଼ି ମୂର୍ତ୍ତିର ପରିକ୍ରମା କରି ଲାଭ କ'ଣ ? ଯେପରି ପାତ୍ରରେ ସିଦ୍ଧ କରାଯାଉଥିବା ସ୍ୱାଦ ପାତ୍ର ଜାଣି ପାରେ ନାହିଁ, ସେହିପରି ମନୁଷ୍ୟଦ୍ୱାରା ନିର୍ମିତ ମୂର୍ତ୍ତି ମନୁଷ୍ୟର ଭାବନାକୁ ବୁଝିବ କିପରି ?

ଦକ୍ଷିଣ ଭାରତର ପ୍ରସିଦ୍ଧ ତାମିଲ ଆଚାର୍ଯ୍ୟ ମାଣିକ୍‌କବାଚକର ଲେଖିଛନ୍ତି—

କଲ୍ଲିଲୁମ୍ ଶେମିବଲୁମେ ଇରୁଧାନ ଏଙ୍ଗ ଲୂକଣ୍ଣୁ ତାଳେ ।

—ଯେଉଁ ଈଶ୍ୱର ଆଖିର ପିତୁଳା ପରି ପ୍ରିୟ, ସେ କ ଜେବେ ପଥରକୁ ବା ଧାତୁକୁ ନିଜର ନିବାସସ୍ଥଳ ରୂପରେ ବାଛି ନେବେ ?

ମୁସଲମାନମାନେ ମନ୍ଦିର ଓ ମୂର୍ତ୍ତି ନିରନ୍ତର ଧ୍ୱଂସ କରିବା ଫଳରେ ବିବେକୀ ହିନ୍ଦୁସମାଜ ତଥା ସରଳ ଜନସାଧାରଣ ମୂର୍ତ୍ତିପୂଜା ଓ ବହୁ ଦେବତାବାଦର ନିଃସାରତା ଓ କୁପରିଣାମ ଧୀରେ ଧୀରେ ଉପଲବ୍ଧ କଲେ । ଅନେକ ସମାଜ ସଂସ୍କାରକ ସନ୍ଥ ଏହି କୁପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଜନସମୁଦାୟ ଏପରି ଈଶ୍ୱରପୂଜାକୁ ତ୍ୟାଗ କରିବା ପାଇଁ ପ୍ରେରଣା ଦେଲେ । ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବା ସନ୍ଥବାଣୀ ଗୁଡ଼ିକ ସେହି ସମୟରେ ମୂର୍ତ୍ତିପୂଜା ବିରୁଦ୍ଧରେ ଘଟିଥିବା ସାମାଜିକ ଜାଗୃତିର ସ୍ପଷ୍ଟ ପ୍ରମାଣ ଦିଏ । ବିଶେଷତଃ ପଞ୍ଜାବ ଓ ମହାରାଷ୍ଟ୍ରର ସନ୍ଥମାନେ ଈଶ୍ୱରଙ୍କୁ ସଂଗଠିତ କରିବା ପାଇଁ ଉଦ୍ୟମ କରିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ମୁସଲମାନ ରାଜତ୍ୱର ପତନ କାଳରେ ୟୁରୋପୀୟ ଜାତିମାନେ ଭାରତରେ ପଦାର୍ପଣ କଲେ ଓ ଭାରତ ଇତିହାସ ଅନ୍ୟ ଏକ ମୋଡ଼ ନେଲା ।

ମୁସଲମାନ ଯୁଗର ଅଧିକାଂଶ ହିନ୍ଦୁ ସନ୍ଥମାନେ ସଂସ୍କୃତ ଭାଷା କିମ୍ବା ବୈଦିକ ଶାସ୍ତ୍ରର ପଣ୍ଡିତ ନ ଥିଲେ । ସେମାନେ ବୈଦିକ ଏକେଶ୍ୱରବାଦ, ଯୋଗଶାସ୍ତ୍ର ଓ ଉପାସନା ବିଧିର ସଂପୂର୍ଣ୍ଣ ଜ୍ଞାନ ଲାଭ କରି ନ ଥିଲେ । ଈଶ୍ୱରଙ୍କୁ ବିଶ୍ୱରକୁ ପ୍ରଭାବିତ କରିବା ଭଳି ସେମାନଙ୍କ ନିକଟରେ ବୁଦ୍ଧଙ୍କ କଠୋର ତପସ୍ୟା କିମ୍ବା ଶଙ୍କରଙ୍କ ଅଗାଧ ପାଣ୍ଡିତ୍ୟ ନ ଥିଲା । ତଥାପି ମୂର୍ତ୍ତିପୂଜା ଆଦି କୁସଂସ୍କାର ଯୋଗୁଁ ସୃଷ୍ଟି ହୋଇଥିବା ସାମାଜିକ ଓ ଧାର୍ମିକ ପତନରୁ ଦେଶକୁ ଉଦ୍ଧାର କରିବା ପାଇଁ ସେମାନେ ଆପ୍ରାଣ ଉଦ୍ୟମ କରିଥିଲେ ଓ ଅନେକ ପରିମାଣରେ ସଫଳ ହୋଇଥିଲେ—ଏଥିରେ ସଂଦେହ ନାହିଁ । ପୌରାଣିକ କାଳରେ ଗଢ଼ି ଉଠିଥିବା ମୂର୍ତ୍ତିପୂଜା, ଅବତାର କଳ୍ପନା ଆଦି ବିଶ୍ୱରଗୁଡ଼ିକୁ ଅପ୍ରାଚୀନ ଓ ଅଯୌକ୍ତିକ ବୋଲି ଅନେକ ବିଜ୍ଞ ବ୍ୟକ୍ତି ବୁଝିବା ଆରମ୍ଭ କଲେ ।

---

# ମୂର୍ତ୍ତିପୂଜା ଓ ଆଧୁନିକ ସଂସ୍କାରବାଦୀ ଆନ୍ଦୋଳନ

ମୁସଲମାନ ରାଜତ୍ୱର ପତନ ଓ ଇଂରେଜ ସାମ୍ରାଜ୍ୟର ସ୍ଥାପନ ମଧ୍ୟରେ ଭାରତରେ ସାମାଜିକ ଓ ଧାର୍ମିକ କ୍ଷେତ୍ରରେ ଏକ ଅସ୍ପଷ୍ଟ ରୂପ ଦେଖା ଦେଇଥିଲା । ଇଂରେଜମାନେ ଭାରତୀୟଙ୍କ ଧାର୍ମିକ ସ୍ୱାତନ୍ତ୍ର୍ୟ ଘୋଷଣା କରିବାର କିଛି କାଳ ପରେ ହିନ୍ଦୁମାନେ ନିଜ ଧର୍ମର ଉତ୍ଥାନ ସମ୍ବନ୍ଧରେ ଧୀରେ ଧୀରେ ବିଚାରିବାକୁ ଲାଗିଲେ । ମୁସଲମାନ ରାଜତ୍ୱ ସମୟରେ ୟୁରୋପୀୟ ଖ୍ରୀଷ୍ଟିଆନ ଧର୍ମଯାଜକମାନେ କୌଣସି ନା କୌଣସି ରୂପରେ ଭାରତକୁ ଆସି ପ୍ରଚାର କାର୍ଯ୍ୟରେ ଲାଗି ଯାଇଥିଲେ । ପରନ୍ତୁ ସେ ସବୁ କାର୍ଯ୍ୟ ସୀମାବଦ୍ଧ ସ୍ଥାନମାନଙ୍କରେ କରା ଯାଉଥିଲା । ଇଂରେଜମାନେ ଏ ଦେଶର ଶାସକ ହେବା ପରେ ମିସନାରୀମାନଙ୍କ କାର୍ଯ୍ୟ ନିରଙ୍କୁଶ ହୋଇଗଲା ।

ମିସେନାରୀମାନଙ୍କଦ୍ୱାରା ବିଭିନ୍ନ ସ୍ଥଳରେ ବିଦ୍ୟାଳୟ ଓ ଚିକିତ୍ସାଳୟ ସ୍ଥାପିତ ହେଲା । ଏସବୁ କେନ୍ଦ୍ରଗୁଡ଼ିକ ପରୋକ୍ଷ ଭାବରେ ଖ୍ରୀଷ୍ଟିଆନ ଧର୍ମପ୍ରଚାରର ସ୍ଥଳ ଭାବରେ ପରିଣତ ହେଲା । ଇଂରାଜୀ ଭାଷାର ପ୍ରସାର ସଙ୍ଗେ ସଙ୍ଗେ ଭାରତୀୟ ଯୁବକମାନେ ଖ୍ରୀଷ୍ଟିଆନ ଧର୍ମ ପ୍ରତି ଆକୃଷ୍ଟ ହେଲେ । ସେମାନେ ପୌରାଣିକ ଅନ୍ଧବିଶ୍ୱାସରେ ବିତୃଷ୍ଣ ହୋଇ ପଡ଼ିଥିଲେ ଓ ବୈଦିକ ଧର୍ମର ପ୍ରକୃତ ସ୍ୱରୂପ ବୁଝିବାରୁ ବଞ୍ଚିତ ହୋଇଥିଲେ । ଖ୍ରୀଷ୍ଟିଆନ ପାଦ୍ରୀମାନେ ପୌରାଣିକ ଧର୍ମର

ଦୁର୍ବଳ ମର୍ମସ୍ଥାନ ସ୍ୱରୂପ ରହିଥିବା ମୂର୍ତ୍ତିପୂଜାକୁ ଉପହାସ ପୂର୍ବକ ପ୍ରଚାର କଲେ ।

ବଙ୍ଗଳାର ସୁପ୍ରସିଦ୍ଧ ସମାଜ ସଂସ୍କାରକ ରାଜା ରାମମୋହନ ରାୟ ହିନ୍ଦୁଧର୍ମ ଉପରେ ଏହି ଆପତ୍ତିକୁ ହୃଦୟଙ୍ଗମ କରିଥିଲେ । ସେ ବ୍ରାହ୍ମସମାଜ ପ୍ରତିଷ୍ଠା କରିଥିଲେ । ନିଜର ରଚନାବଳୀରେ ସେ ମୂର୍ତ୍ତି-ପୂଜାର ପାଣ୍ଡିତ୍ୟପୂର୍ଣ୍ଣ ଓ ଯୁକ୍ତିଯୁକ୍ତ ଖଣ୍ଡନ କରିଥିଲେ । ରାମମୋହନ ରାୟ ଲେଖିଥିଲେ—ଅନେକ ବ୍ରାହ୍ମଣ ପଣ୍ଡିତ ପ୍ରତିମାପୂଜାର ନିଃସାରତା ଓ ଭଗବତ୍ ଉପାସନାର ପ୍ରକୃତ ବିଧି ବିଷୟରେ ଅଜ୍ଞ ନୁହନ୍ତି । କିନ୍ତୁ ସେମାନେ ଏଭଳି କର୍ମକାଣ୍ଡଗୁଡ଼ିକୁ ନିଜ ସୁବିଧା ଓ ଅର୍ଥୋପାର୍ଜନ ପାଇଁ ସୁଗମ ପନ୍ଥା ଭାବି ତାହାକୁ ସମର୍ଥନ କରନ୍ତି । ପ୍ରାଚୀନ ଶାସ୍ତ୍ରରେ ଥିବା ଈଶ୍ୱରୋପାସନା ବିଧିକୁ ସାଧାରଣ ଲୋକଙ୍କଠାରୁ ଲୁଚାଇ ରଖି ମୂର୍ତ୍ତିପୂଜାର ଖଣ୍ଡନକୁ ନାନା ଆକାରରେ ବିରୋଧ କରନ୍ତି । ସେମାନଙ୍କ ଅନୁଗାମୀମାନେ ନିଜ ଗୁରୁମାନଙ୍କୁ ଅନୁକରଣ କରି ପ୍ରତିମାପୂଜା ଓ ଅବତାର କଳ୍ପନାରେ ବିଶ୍ୱାସ କରନ୍ତି । ଏଭଳି କାର୍ଯ୍ୟ ସେମାନଙ୍କ ନୈତିକ ବିକାଶରେ ବାଧକ ହୋଇଥାଏ ଓ ବିଭିନ୍ନ ଦୁରାଗ୍ରହ ଓ ଅନ୍ଧବିଶ୍ୱାସ ସୃଷ୍ଟି କରେ । ❊

❊ Many learned Brahmins are perfectly aware of the absurdity of idolatry and are well-informed of the nature of the purer mode of divine worship. But as in the rites, ceremonies and festivals of comforts and fortunes, they not only never fail to protect idol worship from all attacks but even advance and encourage it in the utmost of their power, by keeping

ରାଜା ରାମମୋହନ ରାୟ ନିଜ ଆତ୍ମଜୀବନୀର ଏକ ସ୍ଥଳରେ ଲେଖିଛନ୍ତି—ମୁଁ ଏହି ସମସ୍ତ ବିବାଦରେ ବ୍ରାହ୍ମଣ୍ୟ ଧର୍ମର ବିରୋଧ କରୁନାହିଁ ଅଥଚ ତାହାର ବିକୃତ ସ୍ୱରୂପକୁ ବୁଝାଇ ଦେଉଅଛି । ମୂର୍ତ୍ତିପୂଜା ସେ ପ୍ରାଚୀନ ପଦ୍ଧତିର ବିରୋଧାଚରଣ କରେ ଓ ଯେଉଁ ପ୍ରାଚୀନ ଗ୍ରନ୍ଥମାନଙ୍କୁ ବ୍ରାହ୍ମଣମାନେ ସମ୍ମାନ ପ୍ରଦର୍ଶନ କରନ୍ତି ସେ ସବୁର ପ୍ରତିପତ୍ତି ଏହା ବୁଝାଇବାକୁ ମୁଁ ଚେଷ୍ଟା କରୁଅଛି । †

---

the knowledge of their scriptures concealed from the rest of the people. The followers, too, confiding in these leaders, feel gratification in the idea of the Divine Nature residing in a being resembling themselves in birth, shape and propensities; and are naturally delighted with a mode of worship agreeable to the senses, though destructive of moral principles, and the fruitful parent of prejudice and superstition.

(Works of Raja Rama Mohan Roy Vol I, P-70)

† The ground which I took in all my controversies was not that of opposition to Brahminism but to a perversion of it, and I endeavoured to show that the idolatry of the Brahmins was contrary to practices of their ancestors and the principle of the ancient books and authorities which they profess to revere and obey.

ରାମମୋହନ ରାୟଙ୍କ ପରେ ବ୍ରହ୍ମସମାଜର ନେତାମାନେ ଭାରତୀୟ ସଂସ୍କୃତିର ପ୍ରବର୍ତ୍ତକ ନ ହୋଇ ପାଶ୍ଚାତ୍ୟ ଖ୍ରୀଷ୍ଟିଆନ ଭାବ-ଧାରାରେ ଧୀରେ ଧୀରେ ପ୍ରଭାବିତ ହୋଇ ପଡ଼ିଲେ । ବ୍ରହ୍ମସମାଜ ବଙ୍ଗପ୍ରଦେଶ ବାହାରେ ବିଶେଷ ପ୍ରଭାବ ପକାଇ ପାରିଲା ନାହିଁ ।

ମହାରାଷ୍ଟ୍ରରେ ମହାମନା ଗୋବିନ୍ଦ ରାନାଡ଼େ ପ୍ରାର୍ଥନାସମାଜ ସ୍ଥାପନ କରି ମୂର୍ତ୍ତିପୂଜା ଆଦି ରୀତିନୀତିର ବିରୋଧ କଲେ । କିଛି କାଳ ପର୍ଯ୍ୟନ୍ତ ବ୍ରହ୍ମସମାଜ ଓ ପ୍ରାର୍ଥନାସମାଜ ଭାରତୀୟ ନବଯୁବକମାନଙ୍କୁ ଖ୍ରୀଷ୍ଟିଆନ ଧର୍ମର କବଳରୁ ରକ୍ଷା କରିବାରେ ପ୍ରଶଂସନୀୟ କାର୍ଯ୍ୟ କଲେ । ପରନ୍ତୁ ଉପଯୁକ୍ତ ନେତୃତ୍ୱ ଅଭାବରୁ ସେମାନଙ୍କର ପ୍ରଚାର କାର୍ଯ୍ୟ ବେଶି ଦିନ ସ୍ଥାୟୀ ହେଲା ନାହିଁ ।

ଭାରତର ଏହି ଦୁଃସମୟରେ ଅନ୍ୟ ଜଣେ ମହାତ୍ମା ସମାଜ ସଂସ୍କାରମୂଳକ କାର୍ଯ୍ୟ ଆରମ୍ଭ କଲେ । ତାଙ୍କର ବିଶେଷତ୍ୱ ଥିଲା ଯେ ସେ ଅନ୍ୟମାନଙ୍କ ପରି ପାଶ୍ଚାତ୍ୟ ଭାବଧାରାରେ ଉଦ୍‌ବୁଦ୍ଧ ନ ହୋଇ ପ୍ରାଚୀନ ଭାରତୀୟ ପ୍ରଣାଳୀରେ ଶିକ୍ଷାଦୀକ୍ଷା ଲାଭ କରିଥିଲେ ଓ ପ୍ରାଚୀନତମ ଶାସ୍ତ୍ର ବେଦରୁ ଉଦାହରଣ ଦେଇ ସାମାଜିକ କୁସଂସ୍କାର ଖଣ୍ଡନ କରିଥିଲେ । ଏହି ମହାତ୍ମା ସ୍ୱାମୀ ଦୟାନନ୍ଦ । ମୂଳଶଙ୍କରଙ୍କୁ (ଦୟାନନ୍ଦଙ୍କ ବାଲ୍ୟ ନାମ) ଯେତେବେଳେ ତେର ବର୍ଷ ହୋଇଥିଲା, ସେ ନିଜ ପିତାଙ୍କ ସହିତ ଶିବାଳୟକୁ ଯାଇ ଶିବରାତ୍ରିର ଜାଗର ପାଳନ କରୁଥିଲେ । ସମସ୍ତେ ନିଦ୍ରାଭିଭୂତ ଥିବା ସମୟରେ ସେ ଉଜାଗର ରହି ଶିବ ମୂର୍ତ୍ତିକୁ ଦର୍ଶନ କରୁଥିବା ସମୟରେ କେତେକ ମୂଷିକ ମୂର୍ତ୍ତି ଉପରେ ଉପଦ୍ରବ କଲେ । ଏହି ଘଟଣାକୁ ବର୍ଣ୍ଣନା କରି ସେ ଅମୃଜୀବନୀରେ ଲେଖିଛନ୍ତି—ଏହି ପ୍ରକାରରେ ମନ୍ଦିରରେ ଏକାକୀ ଉଜାଗର ଥିବା ସମୟରେ ଗୋଟିଏ ଘଟଣା ଘଟିଲା । କେତୋଟି ମୂଷା

ଶିବଲିଙ୍ଗ ଉପରେ ଦୌଡ଼ିବାରେ ଲାଗିଲେ । ସେମାନେ ଶିବଙ୍କ ଉପରେ ରହିଥିବା ନୈବେଦ୍ୟ ଭକ୍ଷଣ କଲେ । ଏହି ଦୃଶ୍ୟ ଦେଖି ମୋ ମନରେ ବିସ୍ମୟ ଜାତ ହେଲା । ଗତକାଲି ଯାହାଙ୍କ ମହିମା ଶୁଣୁ ଥିଲି, ଯାହାଙ୍କଠାରେ ପ୍ରଚଣ୍ଡ ପାଶୁପତାସ୍ତ୍ର ଅଛି, ଯେ ବୃଷଭ ଉପରେ ଆରୋହଣ କରନ୍ତି, ସେ କ'ଣ ଏହି ମହାଦେବ ? ଏହି ଚିନ୍ତାରେ ମୁଁ ବିଚଳିତ ହୋଇ ଉଠିଲି । ମହାପ୍ରତାପୀ ଦୁର୍ଦ୍ଦାନ୍ତ ଦୈତ୍ୟଦଳନକାରୀ ମହାଦେବ ନଗଣ୍ୟ ମୂଷାଗୁଡ଼ିକର ଉପଦ୍ରବକୁ କପରି ସହ୍ୟ କରି ପାରୁଛନ୍ତି ? ଏସବୁ ଭାବି ମୋ ମୁଣ୍ଡ ଘୂରିବାରେ ଲାଗିଲା । ନିଜକୁ ନିଜେ ମୁଁ ପଚାରିଲି, ଯାହାଙ୍କ ହାତରେ ତ୍ରିଶୂଳ ଅଛି, ଯେ ଡମ୍ବରୁ-ବାଦନ କରନ୍ତି, ମନୁଷ୍ୟଙ୍କୁ ଅଭିଶାପ ଦିଅନ୍ତି, ବୃଷଭ ଉପରେ ଆରୋହଣ କରନ୍ତି, ସେ କ'ଣ ଏହି ମହାଦେବ ?

ସନ୍ଦେହୀ ବାଳକ ପିତାଙ୍କୁ ଉଠାଇ ଶଙ୍କା ସମାଧାନ ପାଇଁ ଚେଷ୍ଟା କଲେ । କିନ୍ତୁ ସନ୍ତୋଷଜନକ ଉତ୍ତର ନ ପାଇ ବ୍ରତଭଙ୍ଗ କରି ଘରକୁ ଫେରିଲେ । କିଛି ଦିନ ପରେ ତାଙ୍କ ଭଉଣୀ ଓ କକାଙ୍କ ମୃତ୍ୟୁ ଘଟିଲା । ଏଥିରେ ମର୍ମାହତ ହୋଇ ସେ ପ୍ରକୃତ ଶିବଙ୍କ ସନ୍ଧାନରେ ଗୃହତ୍ୟାଗ କଲେ । ବହୁ ସାଧୁସନ୍ଥଙ୍କ ସହିତ ମିଶି ସୁଦ୍ଧା ତାଙ୍କର ସନ୍ଦେହ ଦୂର ହେଲା ନାହିଁ । ପରିଶେଷରେ ମଥୁରାରେ ବାସ କରୁଥିବା ବୃଦ୍ଧ ଅନ୍ଧ ସନ୍ନ୍ୟାସୀ ସ୍ୱାମୀ ବିରଜାନନ୍ଦଙ୍କ ପାଖରେ ତିନି ବର୍ଷ ରହି ସେ ବେଦ, ଉପନିଷଦ ଆଦି ଆର୍ଷଗ୍ରନ୍ଥ ଅଧ୍ୟୟନ କଲେ । ସେହି ସମୟରେ ବିରଜାନନ୍ଦ ଶୁଦ୍ଧ ବେଦଜ୍ଞାନର ଉପଦେଷ୍ଟା ଓ ପୌରାଣିକ ମତର ପ୍ରବଳ ବିରୋଧୀ ଥିଲେ । କିନ୍ତୁ ସେ ଦୃଷ୍ଟିହୀନ ଥିବାରୁ ପ୍ରଚାର କାର୍ଯ୍ୟ କରି ପାରୁ ନ ଥିଲେ । ଗୁରୁଙ୍କଠାରୁ ଦୀକ୍ଷାଲାଭ କରି ଦୟାନନ୍ଦ ବୈଦିକ ଧର୍ମର ପ୍ରଚାର ଓ ପ୍ରସାର କଲେ ।

ଦୟାନନ୍ଦ ମୂର୍ତ୍ତିପୂଜାର ପ୍ରବଳ ଖଣ୍ଡନ କଲେ । ବହୁ ସ୍ଥଳରେ ପୌରାଣିକ ପଣ୍ଡିତମାନଙ୍କ ସହିତ ତାଙ୍କର ଶାସ୍ତ୍ରାର୍ଥ ହେଲା । ସବୁ ସ୍ଥଳରେ ସେ ବିଜୟୀ ହେଲେ । ହରିଦ୍ୱାର, କାଶୀ ଆଦି ସ୍ଥଳରେ କୌଣସି ପଣ୍ଡିତ ମୂର୍ତ୍ତିପୂଜାର ସମର୍ଥନରେ ଗୋଟିଏ ହେଲେ ବେଦମନ୍ତ୍ର ଦେଖାଇ ପାରି ନ ଥିଲେ । ଆଧୁନିକ କାଳରେ ଦୟାନନ୍ଦ ପ୍ରଥମ ବ୍ୟକ୍ତି ଥିଲେ ଯେ ପ୍ରତିମାପୂଜାର କୁପରିଣାମ ସମ୍ବନ୍ଧରେ ଭାରତୀୟମାନଙ୍କୁ ନିର୍ଭୀକଭାବରେ ସ୍ମରଣ କରାଇଥିଲେ । ପାଦ୍ରୀ ଜେ. ଜେ. ଲୁକାସ୍ ଲେଖିଛନ୍ତି— ଫରୁଖାବାଦର ଧର୍ମ ସଭାରେ ଦୟାନନ୍ଦ ମୂର୍ତ୍ତିପୂଜାର ଖଣ୍ଡନ କରିବା ପରେ ମୁଁ ପଚାରିଥିଲି, ଯଦି ଆପଣଙ୍କୁ କୁହାଯିବ ଯେ ମୂର୍ତ୍ତି ଆଗରେ ନତମସ୍ତକ ନ ହେଲେ ଆପଣଙ୍କୁ ତୋପଦ୍ୱାରା ଉଡ଼ାଇ ଦିଆଯିବ, ତେବେ ଆପଣ କ'ଣ କରିବେ ? ଦୟାନନ୍ଦ ଉତ୍ତର ଦେଇଥିଲେ, ତୋପ ଆଗରେ ବକ୍ଷ ଖୋଲିଦେବି କିନ୍ତୁ ପରମାତ୍ମାଙ୍କୁ ଅପମାନ କରୁଥିବା ପ୍ରତିମାପୂଜା ବିଧାନକୁ କେବେହେଲେ ସ୍ୱୀକାର କରିବି ନାହିଁ ।

ସ୍ୱରଚିତ ସତ୍ୟାର୍ଥପ୍ରକାଶ ଗ୍ରନ୍ଥର ଏକାଦଶ ସମୁଲ୍ଲାସରେ ମୂର୍ତ୍ତି ପୂଜା ବିଷୟରେ ଦୟାନନ୍ଦ ଲେଖିଛନ୍ତି—ଯଦି ପରମାତ୍ମା ସର୍ବତ୍ର ବ୍ୟାପକ, ତେବେ ତାହାଙ୍କୁ କୌଣସି ନିର୍ଦ୍ଦିଷ୍ଟ ବସ୍ତୁରେ ହିଁ ସୀମିତ ବୋଲି କହିବା ଯୁକ୍ତିହୀନ । ଏକ ଚକ୍ରବର୍ତ୍ତୀ ରାଜାଙ୍କୁ ଗୋଟିଏ କୁଡ଼ିଆର ସ୍ୱାମୀ ବୋଲି ମାନିବାଦ୍ୱାରା ସେ ଅପମାନିତ ହୁଅନ୍ତି । ଅନନ୍ତ ପରମେଶ୍ୱରଙ୍କୁ ଗୋଟିଏ କ୍ଷୁଦ୍ର ମୂର୍ତ୍ତିରେ ସୀମାବଦ୍ଧ କରି ରଖିବା ତାହାଙ୍କ ପ୍ରତି ଘୋର ଅନାଦର ଅଟେ ।

ଏ ସମ୍ବନ୍ଧରେ କେତେକ ମୌଳିକ ପ୍ରଶ୍ନ ଉତ୍‌ଥାପନ କରି ସେ ଲେଖିଛନ୍ତି—ଯଦି ପରମେଶ୍ୱରଙ୍କୁ ବ୍ୟାପକ ବୋଲି ଭାବୁଅଛ, ତେବେ ତାହାଙ୍କ ସୃଷ୍ଟ ପତ୍ରପୁଷ୍ପ ତାହାଙ୍କୁ କାହିଁକି ଅର୍ପଣ କରୁଅଛ ? ଚନ୍ଦନ

ଲେପନ କାହିଁକି କରୁଅଛ ? ଧୂପ, ଦୀପ, ଘଣ୍ଟା, ନୈବେଦ୍ୟ ଆଦି ପଦାର୍ଥର ପ୍ରୟୋଜନ କ'ଣ ? ତୁମ ଶିରରେ ଯଦି ଈଶ୍ୱର ବିଦ୍ୟମାନ ସେହି ଶିର ମୂର୍ତ୍ତି ଆଗରେ ନୂଆଁଇବାର ଆବଶ୍ୟକତା କ'ଣ ? ତୁମର ପୂଜା ବାସ୍ତବ ପକ୍ଷରେ ବ୍ୟାପ୍ୟ ପାଇଁ ନା ବ୍ୟାପକ ପାଇଁ ? ଯଦି ବ୍ୟାପକ ପରମେଶ୍ୱରଙ୍କ ପୂଜା କରୁଥାଅ, ତେବେ ପତ୍ର, ପୁଷ୍ପ, ନୈବେଦ୍ୟ, ଚନ୍ଦନ ଆଦି ପଦାର୍ଥର ପ୍ରୟୋଜନ କଣ ? ଯଦି ବ୍ୟାପ୍ୟ ପାର୍ଥିବ ବସ୍ତୁଗୁଡ଼ିକର ପୂଜା କରୁଥାଅ, ତେବେ 'ମୁଁ ଈଶ୍ୱରଙ୍କ ପୂଜାରୀ' ନ କହି 'ମୁଁ ପଥରର ପୂଜାରୀ' କହିବା ସମୀଚୀନ ହେବ ।

ସ୍ୱାମୀ ଦୟାନନ୍ଦ ତତ୍କାଳୀନ ମଠ ମନ୍ଦିର ଓ ତୀର୍ଥସ୍ଥଳଗୁଡ଼ିକରେ ଚାଲିଥିବା ଭ୍ରଷ୍ଟାଚାର ଓ ଶୋଷଣର ଦୃଶ୍ୟ ନିଜ ଆଖିରେ ଦେଖିଥିଲେ । ତେଣୁ ତା' ବିରୁଦ୍ଧରେ ଦୃଢ଼ ଘୋଷଣା କରିଥିଲେ । 'ସତ୍ୟାର୍ଥ ପ୍ରକାଶ'ରେ ମୂର୍ତ୍ତିପୂଜାର କୁପରିଣାମ ବିଷୟରେ ସେ ଲେଖିଛନ୍ତି—

ଆକାରଯୁକ୍ତ ମୂର୍ତ୍ତିଠାରେ ମନ କେବେହେଲେ ସ୍ଥିର ନ ରହି ତାହାର ବିଭିନ୍ନ ଅବୟବ ଉପରେ ଘୂରି ବୁଲେ । କିନ୍ତୁ ନିରାକାର ପରମେଶ୍ୱରଙ୍କ ଗୁଣକର୍ମସ୍ୱଭାବର ବିଚାର କରି କରି ମନ ଆନନ୍ଦରେ ମଗ୍ନ ହୁଏ । କୌଣସି ପାର୍ଥିବ ବସ୍ତୁ ଯଥା: ସ୍ତ୍ରୀ, ପୁତ୍ର, ଧନ, ମିତ୍ର ଆଦି ପାଇ ମଧ୍ୟ ମନୁଷ୍ୟର ମନ ସ୍ଥିର ହୋଇ ରହେ ନାହିଁ । ମନର ସ୍ଥିରତା ପାଇଁ ଅସୀମ, ଅନନ୍ତ ଓ ନିରାକାର ହିଁ ପ୍ରୟୋଜନ ।

ମୂର୍ତ୍ତିପୂଜାଦ୍ୱାରା ମଠ ମନ୍ଦିର ଆଦି ନିର୍ମାଣ ଓ ସାଜସଜ୍ଜାରେ ଅଜସ୍ର ଅର୍ଥର ବ୍ୟୟ ହୁଏ । ତୀର୍ଥସ୍ଥଳଗୁଡ଼ିକରେ ସରଳ ଓ ନିରୀହ ଯାତ୍ରୀମାନଙ୍କର ଧନହାନି ହୁଏ ଓ ସେମାନେ ନାନା ରୋଗରେ ଅଶାନ୍ତ ହୁଅନ୍ତି । ପୂଜାରୀମାନେ ଶୋଷିତ ଧନ ନାନା ଦୁଷ୍ଟ କର୍ମରେ ବ୍ୟବହାର କରନ୍ତି ।

ମୂଲ୍ୟବାନ ମୂର୍ତ୍ତି ଓ ଅଳଙ୍କାର ଚୋରି ହେଲେ ସମସ୍ତେ ହାହା-କାର କରନ୍ତି ।

ଲୋକେ ପୂଜାର ଯୋଗ୍ୟ ମାତାପିତା, ଗୁରୁଜନାଦିଙ୍କ ସେବା ସତ୍କାର ନ କରି ପ୍ରତିମାପୂଜାରେ ହିଁ ସମସ୍ତ କର୍ତ୍ତବ୍ୟ ଶେଷ ହେଲା ବୋଲି ବିଶ୍ୱାସ କୁଚକ୍ରୀ ହୋଇ ପଡ଼ନ୍ତି । ଜଡ଼କୁ ଧ୍ୟାନ କରୁଥିବା ଆତ୍ମା ଜଡ଼ବତ୍ ହୋଇଯାଏ । ଜଡ଼ବାଦ ପୂଜକର ଅନ୍ତଃକରଣ ମାଧ୍ୟମରେ ଆତ୍ମାକୁ ନିଶ୍ଚେଷ୍ଟ କରିଦିଏ ।

ବଗିଚାରେ ଫୁଟିଥିବା ସୁନ୍ଦର ଫୁଲ ଜଳବାୟୁର ପ୍ରଦୂଷଣକୁ ଦୂର କରିଥାଏ ଏବଂ ପ୍ରକୃତିର ସୌନ୍ଦର୍ଯ୍ୟ ବୃଦ୍ଧି କରେ । ତାକୁ ଛିଣ୍ଡାଇ ମୂର୍ତ୍ତିକୁ ସଜାଇବାଦ୍ୱାରା କାହାର ଲାଭ ହୁଏ ନାହିଁ । ଛିଣ୍ଡା ଯାଇଥିବା ଫୁଲ ଧୀରେ ଧୀରେ ପାଣିରେ ପଚିସଢ଼ି ଜଳବାୟୁ ଦୂଷିତ କରେ ।

ଆମ ଦେଶରେ ସ୍ୱାମୀ ଦୟାନନ୍ଦଙ୍କ ପୂର୍ବରୁ କୌଣସି ସାଧୁ ସନ୍ଥ ଆମ ମୂଳଶାସ୍ତ୍ର ବେଦରୁ ଉଦାହରଣ ଦେଇ ନିର୍ଭୀକ ଓ ମୁକ୍ତ କଣ୍ଠରେ ପ୍ରତିମା-ପୂଜାର ହାନି ବିଷୟରେ ଜନସାଧାରଣଙ୍କ ଆଗରେ ଆଲୋ-ଚନା କରି ନ ଥିଲେ । ସମ୍ଭବତଃ ସେମାନେ ମୂର୍ତ୍ତିପୂଜାର ବିନାଶକାରୀ ସୁଦୂରପ୍ରସାରୀ ପରିଣାମ ଉପରେ ଦୂର ଦୃଷ୍ଟି ରଖି ନ ଥିଲେ ଓ ସେଥିପ୍ରତି ସେତେ ଗୁରୁତ୍ୱ ଦେଇ ନ ଥିଲେ । ଆଧୁନିକ ଭାରତର ଶିକ୍ଷିତ ସମାଜ ସାମାଜିକ କୁରୀତି ଦୂର କରିବା ପାଇଁ ଉଦାସୀନ । ଅଶିକ୍ଷିତ ସମାଜ ନାନା ମୂର୍ତ୍ତିକୁ ନାନା ଭଗବାନ ଭାବରେ ପୂଜା କରି ଈଶ୍ୱରପୂଜା ସମ୍ବନ୍ଧରେ ନିକୃଷ୍ଟ ଆଦର୍ଶ ପ୍ରତିପାଦନ ସଙ୍ଗେ ସଙ୍ଗେ ସାଂପ୍ରଦାୟିକ ବିବାଦ ସୃଷ୍ଟି କରିବାରେ ବ୍ୟସ୍ତ । ଶିକ୍ଷିତ ବ୍ୟକ୍ତିମାନଙ୍କ ଦୃଷ୍ଟିରେ ମୂର୍ତ୍ତିପୂଜା କରିବା ହାନିକାରକ ନୁହେଁ ଓ ନ କରିବା ପାପ

ନୁହେଁ । କୌଣସି ମନ୍ଦିର ବା ମୂର୍ତ୍ତି ସମ୍ମୁଖରେ ଯିବାବେଳେ ନମସ୍କାର-ଟିଏ କରିବା ଛଡା ମୂର୍ତ୍ତି ବା ମୂର୍ତ୍ତିପୂଜା ସହିତ ସେମାନଙ୍କର ସମ୍ବନ୍ଧ ନାହିଁ । ଏହି ପ୍ରଥା ଉଚିତ କି ନୁହେଁ—ଏ ବିଷୟରେ ଯୁକ୍ତିତର୍କ କରିବା ପାଇଁ ସେମାନେ ଆଗ୍ରହୀ ନୁହନ୍ତି । ଧର୍ମ ଏକ ବ୍ୟକ୍ତିଗତ ବିଷୟ ଓ ସାମାଜିକ ଅବସ୍ଥା ସହିତ ତାହାର କୌଣସି ପ୍ରଭାବ ନାହିଁ ବୋଲି ସେମାନେ ବିଚାର କରନ୍ତି ।

ସ୍ୱାମୀ ଦୟାନନ୍ଦଙ୍କଦ୍ୱାରା ସ୍ଥାପିତ ଆର୍ଯ୍ୟସମାଜ ମୂର୍ତ୍ତିପୂଜା, ଅବତାରବାଦ, ଜନ୍ମଗତ ଜାତିପ୍ରଥା, ସ୍ତ୍ରୀ ନିର୍ଯାତନା ଆଦି କୁଣ୍ଡିତ ଗୁଡ଼ିକ ବିରୁଦ୍ଧରେ ପ୍ରଶଂସନୀୟ କାର୍ଯ୍ୟ କରୁଅଛି । ଏହି ସଂଗଠନ ଆମର ପ୍ରାଚୀନ ଧର୍ମଗ୍ରନ୍ଥଗୁଡ଼ିକର ବିଶ୍ଳେଷଣ, ପ୍ରକାଶନ ଓ ପ୍ରଚାର କରି ଜନସାଧାରଣଙ୍କ ମଧ୍ୟରେ ଧାର୍ମିକ ଜାଗରଣ ଆଣିବାରେ ଯଥେଷ୍ଟ ସଫଳ ହୋଇଛି ।

ଆଧୁନିକ ଭାରତର ଅନ୍ୟ ଜଣେ ମହାପୁରୁଷ ମହାତ୍ମା ଗାନ୍ଧୀ ସମାଜର ଅସ୍ପୃଶ୍ୟତା ଓ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ସଂସ୍କୃତ ଭାଷା କିମ୍ବା ପ୍ରାଚୀନ ଧର୍ମଶାସ୍ତ୍ର-ଗୁଡ଼ିକରେ ବିଶେଷ ଦକ୍ଷତା ନ ଥିଲା ; ସମ୍ଭବତଃ ସେଥିପାଇଁ ସେ ଧାର୍ମିକ ବିଚାରରେ ପ୍ରାୟ ଅନାସକ୍ତ ଥିଲେ । ସେ ସ୍ୱୟଂ ମୂର୍ତ୍ତିପୂଜକ ନ ଥିଲେ ଓ ମୂର୍ତ୍ତିପୂଜାରେ ବିଶ୍ୱାସ କରୁ ନ ଥିଲେ ; କିନ୍ତୁ ମୂର୍ତ୍ତିପୂଜାକୁ ପାପ ବୋଲି ଭାବୁ ନ ଥିଲେ । ୟଙ୍ଗ ଇଣ୍ଡିଆରେ ଏକ ସ୍ଥଳରେ ଗାନ୍ଧୀଜୀ ଲେଖିଛନ୍ତି—'ଜଣେ ଭାଇ ମୋ ପାଖକୁ ସମ୍ବାଦପତ୍ରରୁ ଏକ ସମ୍ବାଦ କାଟି ପଠାଇଛନ୍ତି । ସେଥିରେ ଲେଖାଅଛି ଯେ ମୋ ନାମରେ ଏକ ମନ୍ଦିର ତୋଳା ଯାଇଛି । ସେଠାରେ ମୋର ମୂର୍ତ୍ତିପୂଜା କରା ଯାଉଛି ।

ଯେଉଁମାନେ ଏହି ମନ୍ଦିର ତୋଳାଇଛନ୍ତି, ସେମାନେ ନିଜ ଧନ ନଷ୍ଟ କରିଛନ୍ତି, ଗ୍ରାମର ସରଳ ଲୋକଙ୍କୁ ଭୁଲ ରାସ୍ତା ଦେଖାଇଛନ୍ତି ତଥା ମୋ ଜୀବନର ଭୁଲ ଚିତ୍ର ଅଙ୍କନ କରି ମୋର ଅପମାନ କରିଛନ୍ତି । ଏହିପରି ମୂର୍ତ୍ତିପୂଜା ଅନର୍ଥ ଅଟେ । ମନୁଷ୍ୟର ଭଲ ଗୁଣଗୁଡ଼ିକର ଅନୁକରଣ କରିବା ତାଙ୍କର ପ୍ରକୃତ ପୂଜା ଅଟେ । ଜୀବନ୍ତ ମନୁଷ୍ୟ-ମାନଙ୍କର ମୂର୍ତ୍ତି ତିଆରି କରି ପୂଜା କରିବାଦ୍ୱାରା ଆମେ ହିନ୍ଦୁଧର୍ମକୁ ପତନର ଶେଷ ସୀମାରେ ପହଞ୍ଚାଇ ଦେବା । କେବଳ ପରମାତ୍ମା ହିଁ ମନୁଷ୍ୟର ହୃଦୟକୁ ଜାଣି ପାରନ୍ତି । ତେଣୁ କୌଣସି ଜୀବିତ ଓ ମୃତ ବ୍ୟକ୍ତିକୁ ପୂଜା କରିବା ଅପେକ୍ଷା, ଯେଉଁ ପରମାତ୍ମା ପୂର୍ଣ୍ଣ ତଥା ସତ୍ୟସ୍ୱରୂପ ତାହାଙ୍କର ଉପାସନା କରିବା କର୍ତ୍ତବ୍ୟ । ମୋ' ନାମରେ ତୋଳାଇଥିବା ମନ୍ଦିରର ମାଳିକ ମୂର୍ତ୍ତିକୁ ବାହାର କରି ସେଠାରେ ଖଦୀ କେନ୍ଦ୍ର ଖୋଲିବା, ଗରିବ ଲୋକଙ୍କୁ ନିଯୁକ୍ତି ଦେବା ଆଦି ସତ୍‌କାର୍ଯ୍ୟ ଗୀତାର କର୍ମଯୋଗ ଅଟେ ।'

ଗାନ୍ଧିଜୀ ଅନେକ ୟୁରୋପୀୟ ବିଦ୍ୱାନଙ୍କ ପରି ରାମାୟଣ ଓ ମହାଭାରତକୁ ଐତିହାସିକ ଗ୍ରନ୍ଥ ବୋଲି ମାନୁ ନ ଥିଲେ । ଅବତାରବାଦ ଉପରେ ଆଲୋଚନା କରି ସ୍ୱରଚିତ ଗୀତାଭାଷ୍ୟରେ ସେ ଲେଖିଛନ୍ତି—"ଯେଉଁ ପୁରୁଷ ନିଜ ଯୁଗର ଶ୍ରେଷ୍ଠ ଜନନାୟକ ହୁଅନ୍ତି, ତାହଙ୍କୁ ଭବ ଜନସାଧାରଣ ଈଶ୍ୱରଙ୍କ ଅବତାର ରୂପରେ ପୂଜା କରନ୍ତି ।" ଅନ୍ୟ ଏକ ସ୍ଥଳରେ ସେ ଲେଖିଛନ୍ତି—"ଈଶ୍ୱର ଅବିନାଶୀ, ଅଗୋଚର, ସର୍ବବ୍ୟାପକ, ନିରାକାର ଓ ନିରବୟବ ଅଟନ୍ତି । ସେ ବିନା ଆଖିରେ ଦେଖିପାରନ୍ତି ଓ ବିନା କାନରେ ଶୁଣିପାରନ୍ତି । ସେ ଅଜନ୍ମା ଅଟନ୍ତି । ତାଙ୍କର କେହି ପିତା, ମାତା ବା ପୁତ୍ର ନ ଥିଲେ ମଧ୍ୟ ଲୋକେ ତାହାଙ୍କୁ ପିତା, ମାତା, ସ୍ତ୍ରୀ, ପୁତ୍ର ଆଦି ସାଂସାରିକ

ବନ୍ଧନରେ ଆବଦ୍ଧ ବୋଲି କଳ୍ପନା କରି ପୂଜା କରନ୍ତି । କିନ୍ତୁ ନିର୍ବିକାର ପରମାତ୍ମା ସାଂସାରିକ ବନ୍ଧନରୁ ସଂପୂର୍ଣ୍ଣ ଭାବରେ ମୁକ୍ତ ଅଟନ୍ତି ।"

୧୯୨୮ ମସିହାରେ 'ନବଜୀବନ' ସମ୍ବାଦପତ୍ରରେ ଗାନ୍ଧିଜୀ ଲେଖିଥିଲେ—"ଆମେ ଯେଉଁ ରାମଙ୍କ ଗୁଣଗାନ କରୁ, ସେ ବାଲ୍ମୀକି ରାମାୟଣ ତଥା ତୁଳସୀ ରାମାୟଣର ରାମ ନୁହନ୍ତି । ସେ ଦଶରଥଙ୍କ ପୁତ୍ର କିମ୍ବା ସୀତାଙ୍କ ପତି ମଧ୍ୟ ନୁହନ୍ତି ; ଯେଉଁ ରାମ ଆମ ହୃଦୟ ମଧ୍ୟରେ ବିଦ୍ୟମାନ, ସେ ଦେହଧାରୀ ରାମ ହୋଇ ନ ପାରନ୍ତି ।" ଏହା ଲେଖି ସୁଦ୍ଧା ଗାନ୍ଧିଜୀ ନିଜ ପ୍ରାର୍ଥନା 'ରଘୁପତି ରାଘବ ରାଜା ରାମ, ପତିତ ପାବନ ସୀତାରାମ'ରେ ରାମଙ୍କୁ ରାଘବ, ରଘୁପତି, ସୀତାପତି ଆଦି ବିଶେଷଣ ଦେଇ ଆନନ୍ଦ ପାଉଥିଲେ । ଜନସାଧାରଣ ଏବେ ମଧ୍ୟ ରାମଙ୍କୁ ରାମାୟଣର ରାମ ବୋଲି ସ୍ୱୀକାର କରନ୍ତି । ବାଲ୍ୟ-କାଳରେ ଗାନ୍ଧିଜୀ ତୁଳସୀ ରାମାୟଣ ପାଠ କରୁଥିଲେ ଓ ସେହି ସଂସ୍କାର ତାଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା ।

ମୂର୍ତ୍ତିପୂଜା କିପରି ଆରମ୍ଭ ହେଲା, ଆଧୁନିକ କାଳରେ ତାହାର ଏକ ଦୃଷ୍ଟାନ୍ତ ବୁଝିବାକୁ ହେଲେ ଦିଲ୍ଲୀସ୍ଥିତ ରାଜଘାଟରେ ମହାତ୍ମା ଗାନ୍ଧୀଙ୍କ ସମାଧିପୀଠ ଦେଖିବା ଆବଶ୍ୟକ । ଗାନ୍ଧୀଙ୍କ ସମାଧି ମଣ୍ଡପରେ ପ୍ରତିଦିନ ଶହ ଶହ ଯାତ୍ରୀ ଫୁଲ ଚଢ଼ାନ୍ତି । କେତେକ ତାହାଙ୍କ ତାମ୍ରଚିତ୍ର ନିକଟରେ ଦାନଦକ୍ଷିଣା ଦିଅନ୍ତି । ଗାନ୍ଧିଜୟନ୍ତୀ ଦିବସରେ ସେଠାରେ ମୂର୍ତ୍ତି ସ୍ଥାପନା କରାଯାଇ ପୂଜା-ଅର୍ଚ୍ଚନା କରାଯାଏ । ବୋଧହୁଏ ଏପରି ଏକ ଦିନ ଆସିବ, ଯେତେବେଳେ ଲୋକେ ଗାନ୍ଧିଜୀଙ୍କୁ ଈଶ୍ୱରଙ୍କ ଅବତାର ରୂପେ ପୂଜା କରିବେ । ବୀରପୂଜା ନାମରେ ଶ୍ରୀରାମଚନ୍ଦ୍ର, ଶ୍ରୀକୃଷ୍ଣ ଆଦି ମହାପୁରୁଷଙ୍କ ପୂଜାପଦ୍ଧତି ଆରମ୍ଭ ହୋଇଥିଲା । ଗାନ୍ଧିଜୀଙ୍କ ଗୁଣାବଳୀ ଆଲୋଚନା ଓ ଅନୁକରଣ କରିବ

ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ଅଟେ । ତାହା ଅବଶ୍ୟ କର୍ତ୍ତବ୍ୟ । ପରନ୍ତୁ ତାଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କ ମୂର୍ତ୍ତି ଗଠନ କରି ପୂଜା କରିବା ମୂର୍ତ୍ତିପୂଜା ରୂପକ କୁସଂସ୍କାରକୁ ପ୍ରୋତ୍ସାହନ ଦେବା ସଙ୍ଗେ ସମାନ । ଯେଉଁମାନେ ବିଚାରନ୍ତି ଯେ ଏହା କରିବାଦ୍ୱାରା ସେମାନେ ଗାନ୍ଧିଜୀଙ୍କ ପ୍ରତି ଭକ୍ତି ଜାଗ୍ରତ କରନ୍ତି ଓ ଜନସାଧାରଣ ସେହି ମହା-ପୁରୁଷଙ୍କ ଉପଦେଶାବଳୀ ଅନୁସରଣ କରିବେ, ସେମାନଙ୍କ ଧାରଣା ଦୁରାଶା ହୋଇ ରହିବ । ମୂର୍ତ୍ତିପୂଜାର ଇତିହାସ ଏହାର ସାକ୍ଷୀସ୍ୱରୂପ ରହିଛି ।



# ବେଦରେ ମୂର୍ତ୍ତିପୂଜାର ଭ୍ରାନ୍ତି

କେତେକ ପାଶ୍ଚାତ୍ୟ ପଣ୍ଡିତ ଓ ସେମାନଙ୍କ ଅନୁଗାମୀ ଭାରତୀୟ ଲେଖକମାନେ ବେଦରେ ମୂର୍ତ୍ତିପୂଜାର ସଂକେତ ପାଇବା ପାଇଁ ଉଦ୍ୟମ କରିଛନ୍ତି । ମୂର୍ତ୍ତିପୂଜାର ସମର୍ଥକ ପୌରାଣିକ ପଣ୍ଡିତମାନେ ନିଜ ପକ୍ଷ ସିଦ୍ଧ କରିବା ପାଇଁ ଏହି ସବୁ ମନ୍ତ୍ର ଉଲ୍ଲେଖ କରନ୍ତି । ବେଦାର୍ଥ ପ୍ରକ୍ରିୟାରେ ଅନଭିଜ୍ଞତା ଯୋଗୁଁ ହେଉ, ଅଥବା ପକ୍ଷପାତିତା ଓ ସ୍ୱାର୍ଥପରତା ଯୋଗୁଁ ହେଉ ଏହି ଶ୍ରେଣୀର ଲୋକେ ଏଭଳି ପ୍ରୟାସ କରନ୍ତି । ଉବଟଙ୍କଠାରୁ ସାୟଣଙ୍କ ପର୍ଯ୍ୟନ୍ତ ସମସ୍ତ ବେଦଭାଷ୍ୟକର୍ତ୍ତା ପରମାତ୍ମାଙ୍କୁ ନିରାକାର ଓ ଅମୂର୍ତ୍ତ ରୂପରେ ସ୍ୱୀକାର କରିଛନ୍ତି । କେହି କେହି ଭ୍ରାନ୍ତିବଶତଃ ବେଦମନ୍ତ୍ରରୁ ଏକେଶ୍ୱର ବାଦର ସ୍ଥଳରେ ବହୁ ଦେବତା ବିଶ୍ୱାସ କରୁଥିଲେ ସୁଦ୍ଧା କୌଣସି ଭାଷ୍ୟକର୍ତ୍ତା ମୂର୍ତ୍ତିପୂଜା ବିଷୟ କଳ୍ପନା ମଧ୍ୟ କରି ନାହାନ୍ତି ।

ପାଶ୍ଚାତ୍ୟ ଲେଖକ ଓ ସେମାନଙ୍କ ଅନୁଗାମୀମାନେ ଋଗ୍‌ବେଦର ଯେଉଁ ଦୁଇ ବେଦମନ୍ତ୍ରରୁ ଲିଙ୍ଗପୂଜା ବିଷୟ ପ୍ରଚାର କରନ୍ତି, ସେହି ମନ୍ତ୍ର ଦୁଇଟିର ପ୍ରକୃତ ଅର୍ଥ ନିମ୍ନରେ ବୁଝାଇ ଦିଆ ଯାଉଛି ।

> ନ ଯାତବ ଇନ୍ଦ୍ର ଜୂଜୁବୁର୍ନୋ ନ ବନ୍ଦନା ଶବିଷ୍ଠ ବେଦ୍ୟାଭିଃ ।
> ସ ଶର୍ଧଦର୍ଯୋ ବିଷୁଣସ୍ୟ ଜନ୍ତୋର୍ମା
> ଶିଶ୍ନଦେବା ଅପି ଗୁଃରୃତଂ ନଃ । (ଋଗ୍‌ବେଦ ୭, ୨୧, ୫)

ଏହି ମନ୍ତ୍ରର ଅର୍ଥ—

(ଇନ୍ଦ୍ର ଯାତବ ନ ଜୂଜୁବୁଃ) ହେ ଶାସକ ! ଆକ୍ରମଣକାରୀ ଆମକୁ ଆଘାତ ନ କରନ୍ତୁ ! (ଶବିଷ୍ଠ ବେଦ୍ୟାଭିଃ ନଃ ବନ୍ଦନା ନ

କୃଜୁରୁଃ) ହେ ବଳଶାଳନ୍ ! ପୀଡ଼ାକାରୀ ଆମର ଉତ୍ତମ କାର୍ଯ୍ୟରେ ଆଘାତ ନ କରନ୍ତୁ । (ଅର୍ଯଃ ବିଷୂଣସ୍ୟ ଜନ୍ତୋଃ ଶର୍ଧତ) ଉପସ୍ଥେନ୍ଦ୍ରିୟର ବିଳାସୀ ଅର୍ଥାତ୍ କାମୁକମାନେ ସଦ୍-ବ୍ୟବହାର ପ୍ରାପ୍ତ ନ କରନ୍ତୁ ।

ଏଠାରେ 'ଶିଶ୍ନଦେବାଃ' ପଦର ଅର୍ଥ ଉପସ୍ଥେନ୍ଦ୍ରିୟର ରମଣେକାରୀ ଅର୍ଥାତ୍ ଅତ୍ୟନ୍ତ କାମାତୁର ପୁରୁଷଗଣ । ବେଦର ସମସ୍ତ ଭାଷ୍ୟକର୍ତ୍ତା ଏଭଳି ଅର୍ଥ କରିଛନ୍ତି । ଶୈବମାନେ ଏଥିରୁ ଶିବଲିଙ୍ଗ ପୂଜାର ସଂକେତ କିପରି ପାଉଛନ୍ତି, ତାହା ବୁଝିହୁଏ ନାହିଁ ।

ସେହିପରି ଋଗ୍‌ବେଦର ଅନ୍ୟ ଏକ ମନ୍ତ୍ର ଉଲ୍ଲେଖ କରାଯାଉଅଛି—

ସ ବାଜଂ ଯାତାପଦୁଷ୍ପଦା ଯନ୍
ସ୍ୱର୍ଷାତା ପରି ଷଦତ୍ ସନିଷ୍ୟନ୍ ।
ଅନର୍ବା ଯଚ୍ଛତ ଦୁରସ୍ୟ ବେଦୋଘ୍ନନ୍
ଶିଶ୍ନଦେବାନ୍ ଅଭି ବର୍ପସା ଭୂତ୍ ।

(ଋଗ୍‌ବେଦ ୧୦, ୯୯, ୩)

ଏହି ମଂନ୍ତ୍ରର ଅର୍ଥ—

(ସଃ ବାଜଂ ଯାତା) ସେ ଐଶ୍ୱର୍ଯ୍ୟ ପ୍ରାପ୍ତ ହୁଏ । (ଅପ ଦୁଃ ପଦା ଯନ୍ ସ୍ୱଃ ଷାତା ପରି ସଦତ୍) ସେ ଦୁଃଖରହିତ ଶୁଦ୍ଧ କଲ୍ୟାଣ ମାର୍ଗରେ ଗତି କରେ । (ଯତ୍ ଅନର୍ବା ଶତ ଦୁରସ୍ୟ ବେଦଃ ସନିଷ୍ୟନ୍) ଯେ ହିଂସାରହିତ ଶତସହସ୍ର ଜ୍ଞାନ ଲାଭ କରେ, ସେ (ବର୍ପସା ଶିଶ୍ନ-ଦେବାନ୍ ଘ୍ନନ୍ ଅଭି ଭୂତ୍) ନିଜ ବଳରେ କାମ ଭାବନାକୁ ନାଶ କରି ସମର୍ଥଶୀଳ ହୁଏ ।

ଉକ୍ତ ବେଦମନ୍ତ୍ରରେ 'ଶିଶ୍ନଦେବାନ୍'ର ଅର୍ଥ 'କାମଭାବନାକୁ'— ଏପରି ସମସ୍ତ ଭାଷ୍ୟକର୍ତ୍ତା ଅର୍ଥ କରିଛନ୍ତି ।

ଶିବଲିଙ୍ଗ ପୂଜା ଆଦି ଅଶୋଭନୀୟ କାର୍ଯ୍ୟର ସମର୍ଥକମାନେ ନିଜ ସପକ୍ଷରେ ଉଲ୍ଲିଖିତ ଦୁଇଟି ମନ୍ତ୍ର ଦର୍ଶାଇଥାନ୍ତି ଯଦ୍ୟପି ସେଥିରେ ଶିବ-ଲିଙ୍ଗର ଲେଶ ମାତ୍ର ବର୍ଣ୍ଣନା ନାହିଁ ।

ପ୍ରତିମାପୂଜକମାନେ ଆଉ କେତେକ ବେଦମନ୍ତ୍ରର ଉଦାହରଣ ଦେଇ ବେଦରେ ମୂର୍ତ୍ତିପୂଜା ଥିବା ବିଷୟ ଚର୍ଚ୍ଚା କରନ୍ତି । ଯଥା:

ସହସ୍ରସ୍ୟ ପ୍ରମାସି ସହସ୍ରସ୍ୟ ପ୍ରତିମାସି ।
ସହସ୍ରସ୍ୟୋନ୍ମାସି ସାହସ୍ରୋଽସି ସହସ୍ରାୟ ତ୍ୱା ॥
(ଯଜୁ ୧୫, ୬୫)

ଏହାର ଅର୍ଥ—

ହେ ମନୁଷ୍ୟ ! (ସହସ୍ରସ୍ୟ ପ୍ରମାସି) ତୁମେ ଅସଂଖ୍ୟ ପଦାର୍ଥର ପ୍ରମାଣ ଅଟ, (ସହସ୍ରସ୍ୟ ପ୍ରତିମାସି) ଅସଂଖ୍ୟ ଐଶ୍ୱର୍ଯ୍ୟର ମାପକ ଅଟ (ସହସ୍ରସ୍ୟ ଉନ୍ମା ଅସି) ଅସଂଖ୍ୟ ଜୀବଙ୍କ ମଧ୍ୟରେ ଉତ୍ତମ ଅଟ (ସାହସ୍ରଃ ଅସି) ଅସଂଖ୍ୟ ଶକ୍ତିର ଧାରଣକର୍ତ୍ତା ଅଟ । (ସାହସ୍ରାୟ ତ୍ୱା) ମୁଁ ତୁମକୁ ଅସଂଖ୍ୟ ପ୍ରୟୋଜନ ପାଇଁ ସୃଷ୍ଟି କରିଅଛି ।

ମନ୍ତ୍ରରେ ଥିବା ପ୍ରତିମା ଶବ୍ଦରୁ ମୂର୍ତ୍ତିପୂଜାର ପ୍ରମାଣ କେଉଁ-ଠାରେ ରହିଛି, ତାହା ପୌରାଣିକମାନେ ହିଁ ଜାଣନ୍ତି । ଏଠାରେ ପ୍ରତିମାର ଅର୍ଥ ପ୍ରତିମାନ ଓ ମାପକ । ମନୁଷ୍ୟର ଅନ୍ତଃକରଣରେ ବିଶ୍ୱର ଆକାଶ, ପ୍ରାଣରେ ବାୟୁ, ବାଣୀରେ ଅଗ୍ନି ଓ ଚକ୍ଷୁରେ ସୂର୍ଯ୍ୟଙ୍କ ପ୍ରତିମାନ ରହିଛି ।

ସେହିପରି ଅନ୍ୟ ଏକ ବେଦମନ୍ତ୍ର—

ସଂ ବତ୍ସରସ୍ୟ ପ୍ରତିମାଂ ଯାଂ ତ୍ୱା ରାତ୍ର୍ୟୁପାସ୍ମହେ ।
ସାନ ଅୟୁଷ୍ମତୀଂ ପ୍ରଜାଂ ରାୟସ୍ପୋଷେଣ ସଂସୃଜ ॥

ଅର୍ଥାତ୍—ହେ ରାତ୍ରି ! ଆମେ ତୁମର ସେବନ କରୁ । ତୁମେ ସମ୍ବତ୍ସର ବା ବର୍ଷର ପ୍ରତିମା ଅର୍ଥାତ୍ ମାପକ । ହେ ରାତ୍ରି ! ପ୍ରଜାଙ୍କୁ ଧନ-ଧାନ୍ୟରେ ପୋଷଣ କର ।

ପାରସ୍କର ଗୃହ୍ୟସୂତ୍ରକାର ଲେଖିଛନ୍ତି—ଯେଉଁ ରାତ୍ରିରେ ମନୁଷ୍ୟ ଆନନ୍ଦ ପାଏ, ଯେଉଁ ରାତ୍ରି ଗୋ-ସମାନ ଦୁଗ୍ଧବତ୍ ଶାନ୍ତି ପ୍ରଦାନ କରେ, ସେ ସଂବତ୍ସରର ମାପକ । ଏଭଳି ରାତ୍ରିକୁ ଆମ୍ଭେମାନେ ସେବନ କରୁ । ମନ୍ତ୍ରରେ ଥିବା 'ପ୍ରତିମା' ଶବ୍ଦରୁ ମୂର୍ତ୍ତିପୂଜାର ଆଦୌ ସୂଚନା ମିଳେ ନାହିଁ ।

ସେହିପରି ଋଗ୍‌ବେଦ ଦଶମ ମଣ୍ଡଳରେ କୁହାଯାଇଛି—

କାସୀତ୍ ପ୍ରମା ପ୍ରତିମା କିଂ ନିଦାନମାଜ୍ୟଂ
କିମାସୀତ୍ ପରିଧିଃ କ ଆସୀତ୍ ।
ଛନ୍ଦଃ କିମାସୀତ୍ ପ୍ରଉଗଂ କିମୁକ୍ଥଂ
ଯଦ୍ଦେବା ଦେବମଯଜନ୍ତ ବିଶ୍ବେ ॥
(ଋଗ୍‌ବେଦ ୧୦, ୧୩୦, ୩)

ଏହି ମନ୍ତ୍ରରେ ଥିବା ପ୍ରତିମା ଶବ୍ଦରୁ ମୂର୍ତ୍ତିପୂଜା ସିଦ୍ଧ ହୁଏ ନାହିଁ । ସାୟଣାଚାର୍ଯ୍ୟ ଏହାର ଭାଷ୍ୟରେ ଲେଖିଛନ୍ତି—ତଦାନୀଂ ତସ୍ୟ ଯଜ୍ଞସ୍ୟ ପ୍ରମା ପ୍ରମାଣ ଇୟତ୍ତା କା କଥଂ ଭୂତାସୀତ୍ । ତଥା ପ୍ରତିମା ହବିଃ

ପ୍ରତିଯୋଗିତ୍ୱେନ ମୀୟତେ ନିର୍ମୀୟତ ଇତି ପ୍ରତିମା ଦେବତା ସା ବା ତସ୍ୟ ସଙ୍ଗସ୍ୟ କାପିତ୍ !

ଏହିଠାରେ ସାୟଣ ପ୍ରତିମାର ଅର୍ଥ ସଙ୍ଗର ହବିଃସ୍ଥାମୀୟ ପ୍ରତିନିଧି ମାନିଛନ୍ତି । ଯଥାର୍ଥରେ ଏହି ମନ୍ତ୍ରରେ ସୃଷ୍ଟିଯଙ୍କର ପରିଧି, ହବି ଆଦି ପଦାର୍ଥ କଅଣ ତାହା ପ୍ରଶ୍ନ ରୂପରେ ପଚରା ଯାଇଛି ।

ଅମରକୋଷରେ ପ୍ରତିମାର ଆଠୋଟି ନାମ, ଯଥା: ପ୍ରତିମାନ, ପ୍ରତିବିମ୍ବ, ପ୍ରତିମା, ପ୍ରତିଯାତନା, ପ୍ରତିଚ୍ଛାୟା, ପ୍ରତିକୃତି, ଅର୍ଚ୍ଚା ଓ ପ୍ରତିନିଧି କୁହାଯାଇଛି । ମନୁସ୍ମୃତିରେ ପ୍ରତିମାନ ଶବ୍ଦର ଅର୍ଥ ତୁଳାବାଟ ବଟକରା । ଯେପରି

ତୁଳାମାନଂ ପ୍ରତିମାନଂ ସର୍ବଂ ଚ ସ୍ୟାତ୍ ସୁଲକ୍ଷିତମ୍ ।
ଷଟ୍ସୁ ଷଟ୍ସୁ ଚ ମାସେଷୁ ପୁନରେବ ପରୀକ୍ଷୟେତ୍ ॥
(ମନୁ ୮, ୪୦୩)

ଅର୍ଥାତ୍ ତରାଜୁ, ବଟକରା ଆଦି ଠିକ୍ ଭାବରେ ପରୀକ୍ଷିତ ହେବା ଆବଶ୍ୟକ ! ପ୍ରତି ଛଅ ମାସରେ ଥରେ ଏସବୁ ତନଖି କରିବା ଉଚିତ ।

ଯଜୁର୍ବେଦର ନିମ୍ନଲିଖିତ ମନ୍ତ୍ରରୁ ମୂର୍ତ୍ତିପୂଜକମାନେ ତିନିଚକ୍ଷୁ ବିଶିଷ୍ଟ ଶିବଙ୍କ କଳ୍ପନା କରନ୍ତି—

ତ୍ରୈମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟି ବର୍ଦ୍ଧନମ୍ ।
ଉର୍ବାରୁକମିବ ବନ୍ଧନାତ୍ ମୃତ୍ୟୋର୍ମୁକ୍ଷୀୟ ମାଽମୃତାତ୍ ॥
(ଯଜୁ ୩, ୬୦)

ଏହାର ଅର୍ଥ—ତ୍ର୍ୟମ୍ବକ ପ୍ରଭୁଙ୍କୁ ଉପାସନା କରୁଅଛୁ । ସୁଗନ୍ଧିତ, ପୁଷ୍ଟିକାରକ ପାଚିଲା ତରଭୁଜ ପରି ମୃତ୍ୟୁବନ୍ଧନରୁ ଆମେ ମୁକ୍ତ ହେଉ ଓ ଅମୃତ ଲାଭ କରୁ ।

ତ୍ର୍ୟମ୍ବକର ଅର୍ଥ ତ୍ରିକାଳଦର୍ଶୀ ପରମାତ୍ମା—ପୃଥିବୀ, ଅନ୍ତରିକ୍ଷ ଓ ଦ୍ୟୁଲୋକରେ ବ୍ୟାପକ ପ୍ରଭୁ । ସାୟଣ ମଧ୍ୟ ଏହାର ଅର୍ଥ କରିଛନ୍ତି— ବ୍ରହ୍ମା ବିଷ୍ଣୁ ରୁଦ୍ରାଣାଂ ଅମ୍ବକଂ ପିତରଂ ହବାମହେ ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରଙ୍କ ଯେ ପିତା ତାହାଙ୍କୁ ଯଜନ କରୁଅଛୁ । ଏଠାରେ ତ୍ର୍ୟମ୍ବକ (ଅ-ଉ-ମ) ଓଁକାର ରୂପକ ପରମେଶ୍ୱର । ଏଠାରେ ଶିବଙ୍କ ତିନି ନୟନ କଥା ଆଦୌ କୁହାଯାଇ ନାହିଁ । ପରମାତ୍ମା ସହସ୍ରାକ୍ଷ ଅର୍ଥାତ୍ ସର୍ବଦ୍ରଷ୍ଟା । ତାହାଙ୍କ ତିନି ଚର୍ମ ଚକ୍ଷୁ ନାହିଁ ।

ନିମ୍ନଲିଖିତ ବେଦମନ୍ତ୍ରରୁ ପୌରାଣିକମାନେ ଗିରିବାସୀ ଶିବଙ୍କ ବର୍ଣ୍ଣନା କରନ୍ତି—

ଯା ତେ ରୁଦ୍ର ଶିବା ତନୂରଘୋର ପାପ କାଶିନୀ ।
ତୟା ନସ୍ତନ୍ୱା ଶନ୍ତମୟା ଗିରିଶନ୍ତାଭି ଚାକଶୀହି ॥
(ଯଜୁ ୧୬-୨)

ଏହାର ଅର୍ଥ—ହେ (ରୁଦ୍ର)ଶତ୍ରୁଙ୍କୁ ରୋଦନ କରାଉଥିବା ପରମାତ୍ମନ୍, ତୁମର (ଯା ଶିବା ତନୂରଘୋର ପାପ କାଶିନୀ) ଯେଉଁ କଲ୍ୟାଣକାରିଣୀ, ସୌମ୍ୟା, ନିଷ୍ପାପଯୁକ୍ତ ବ୍ୟବସ୍ଥା (ତୟା ଶନ୍ତମୟା ଗିରିଶନ୍ତାଭି ଚାକଶୀହି) ସେ ଶାନ୍ତିର ବିସ୍ତାରକର୍ତ୍ତ୍ରୀ ବାଣୀଦ୍ୱାରା ସମସ୍ତଙ୍କୁ ଦେଖ ।

ମନ୍ତ୍ରରେ ଥିବା 'ଗିରିଶନ୍ତଃ'ର ଅର୍ଥ ମହୀଧର ପରି ପୌରାଣିକ ପଣ୍ଡିତ ମଧ୍ୟ ଗିର ବା ବାଣୀରେ ସ୍ଥିତ ହୋଇ ଶାନ୍ତି ବିସ୍ତାର କରୁଥିବା ପ୍ରଭୁଙ୍କ ଅର୍ଥ କରିଛନ୍ତି । ଏଠାରେ ଗିରିବାସୀ ଓ କଳ୍ପିତ ଦେହଧାରୀ ଶିବଙ୍କୁ ବୁଝିବା ଅସଂଗତ ଓ ପ୍ରକରଣ ବିରୁଦ୍ଧ ।

ନିମ୍ନଲିଖିତ ବେଦମନ୍ତ୍ରରୁ ପ୍ରତିମାପୂଜକମାନେ ବିଷ୍ଣୁଙ୍କ ଶ୍ରୀ ଓ ଲକ୍ଷ୍ମୀ ନାମକ ଦୁଇ ପତ୍ନୀଙ୍କ ବିଷୟ ପ୍ରଚାର କରନ୍ତି—

ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟା ବହୋରାତ୍ରେ ପାର୍ଶ୍ବେ ନକ୍ଷତ୍ରାଣି ରୂପ
ମାଶ୍ବିନୌବ୍ୟାତ୍ତମ୍ । ଇଷ୍ଣନ୍ନିଷାଣାମୁଂ ମଇଷାଣ
ସର୍ବଲୋକଂ ମଇଷାଣ ॥ (ଯଜୁ ୩୧, ୨୨)

ମହୀଧର ମନ୍ତ୍ରର ଅର୍ଥ କରିଛନ୍ତି—ଯାହାଙ୍କ ଆଶ୍ରୟରେ ମନୁଷ୍ୟମାନେ ରହନ୍ତି, ସେହି ଧନସମ୍ପତ୍ତି ହେଉଛୁ ଶ୍ରୀ । ଯାହାଙ୍କୁ ସେମାନେ ଲକ୍ଷ୍ୟ ରଖନ୍ତି ସେ ଲକ୍ଷ୍ମୀ ବା ସୌନ୍ଦର୍ଯ୍ୟ । ଧନ ଓ ସୌନ୍ଦର୍ଯ୍ୟ ପ୍ରଭୁଙ୍କ ଦୁଇ ପତ୍ନୀ ସଦୃଶ । ସ୍ୱାମୀ ଦୟାନନ୍ଦ ମନ୍ତ୍ରର ଅର୍ଥ କରିଛନ୍ତି—ହେ ଜଗଦୀଶ୍ୱର ! ସୃଷ୍ଟିର ଶୋଭା ଓ ସୌନ୍ଦର୍ଯ୍ୟ ଆପଣଙ୍କ ଦୁଇ ପତ୍ନୀତୁଲ୍ୟ ବର୍ତ୍ତମାନ । ଏଠାରେ ବିଷ୍ଣୁ ଶବ୍ଦ ମିଳେ ନାହିଁ ଅଥବା ଶ୍ରୀ ଓ ଲକ୍ଷ୍ମୀ ସ୍ତ୍ରୀ ବିଶେଷ ନୁହନ୍ତି ।

ଅଥର୍ବ ବେଦର ନିମ୍ନ ମନ୍ତ୍ର ପଢ଼ି ମୂର୍ତ୍ତିପୂଜକମାନେ ମୂର୍ତ୍ତିର ପ୍ରତିଷ୍ଠା କରନ୍ତି—

ଏହ୍ୟଶ୍ମାନମା ତିଷ୍ଠାଶ୍ମା ଭବତୁ ତେ ତନୂଃ ।
କୃଣ୍ୱନ୍ତୁ ବିଶ୍ୱେଦେବା ଆୟୁଷ୍ଟେ ଶରଦଃ ଶତମ୍ ॥

ସାୟଣାଚାର୍ଯ୍ୟ ମନ୍ତ୍ରର ଅର୍ଥ କରିଛନ୍ତି—'ହେ ମାଣବକଃ ! ଏହି ଆଗଚ୍ଛ । ଅଶ୍ମାନମ୍ ଆତିଷ୍ଠ ଦକ୍ଷିଣେନ ପାଦେନ କ୍ରମ । ତେ ତବ ତନୂଃ ଶରୀରଂ ଅଶ୍ମା ଭବତୁ । ଅଶ୍ମାବତ୍ ରୋଗାଦ୍ୟବିନମ୍ରକଂ ଦୃଢ଼ ଭବତୁ । ବିଶ୍ୱେଦେବାଶ୍ଚ ତେ ଶତ ସଂବତ୍ସର ପରିମିତଂ ଆୟୁ କୃଣ୍ୱନ୍ତୁ' ଅର୍ଥାତ୍ ହେ ବିଦ୍ୟାର୍ଥୀ ! ଆସ । ପ୍ରସ୍ତରକୁ ଦକ୍ଷିଣ ପାଦରେ କ୍ରମଣ କର । ତୁମର ଦେହ ରୋଗରହିତ ଓ ଦୃଢ଼ ହେଉ । ବାୟୁଜଳାଦି ଦ୍ରବ୍ୟପଦାର୍ଥ ତୁମକୁ ଶହେ ବର୍ଷ ଆୟୁ ପ୍ରଦାନ କରନ୍ତୁ ।

ଉକ୍ତ ମନ୍ତ୍ରରେ ମୂର୍ତ୍ତିର ପ୍ରାଣ ପ୍ରତିଷ୍ଠା ବିଷୟ ଆଦୌ କୁହା ଯାଇନାହିଁ । ନୀଳଗ୍ରୀବ ପଦ ଥିବା ଏକ ମନ୍ତ୍ରରୁ ପ୍ରତିମାପୂଜକମାନେ ଶିବଙ୍କ ବର୍ଣ୍ଣନା କରନ୍ତି । ପରନ୍ତୁ ବେଦ ମନ୍ତ୍ରରେ ସେ ବିଷୟର ଲେଶମାତ୍ର ସମ୍ବନ୍ଧ ନାହିଁ । ଉବଟ ଯଜୁର୍ବେଦ (୧୬, ୫୬) ଏହି ମନ୍ତ୍ରରେ ଥିବା ନୀଳଗ୍ରୀବ ପଦର ଅର୍ଥ କରିଛନ୍ତି—'ନୀଳଗ୍ରୀବଃ ଦ୍ୟୁସ୍ଥାନା ଉଚ୍ୟତେ' ଅର୍ଥାତ୍ ନୀଳଗ୍ରୀବ ଦ୍ୟୁସ୍ଥାନୀୟ ଅର୍ଥାତ୍ ଆକାଶୀୟ । ଯେତେବେଳେ ସୂର୍ଯ୍ୟ ପଶ୍ଚିମ ଆକାଶକୁ ଲୁଚି ଯାଆନ୍ତି, ନୀଳଗ୍ରୀବ ପରି ଦେଖାଯାନ୍ତି । ସୁତରାଂ ଅସ୍ତମିତ ସୂର୍ଯ୍ୟ ନୀଳଗ୍ରୀବ । ମନ୍ତ୍ରରେ ଥିବା ଅନ୍ୟ ପଦଗୁଡ଼ିକ ଆକାଶୀୟ ଅର୍ଥର ଦ୍ୟୋତକ । ଏଠାରେ ପୁରାଣ କଳ୍ପିତ ମହାଦେବଙ୍କ ବର୍ଣ୍ଣନା ନାହିଁ ।

ନିମ୍ନଲିଖିତ ବେଦମନ୍ତ୍ରରୁ ପ୍ରତିମାପୂଜକମାନେ ଗର୍ଭରେ ଈଶ୍ୱରଙ୍କ ଆଗମନ ଓ ଅବତାରବାଦ ବର୍ଣ୍ଣନା କରନ୍ତି—

ଏଷୋ ହ ଦେବଃ ପ୍ରଦିଶୋଽନୁ ସର୍ବାଃ ପୂର୍ବୋ ହ ଜାତଃ
ସଉ ଗର୍ଭେଽଅନ୍ତଃ । ସଏବ ଜାତଃ ସ ଜନିଷ୍ୟମାଣଃ
ପ୍ରତ୍ୟଙ୍ ଜନାସ୍ତିଷ୍ଠତି ସର୍ବତୋମୁଖଃ ॥ (ଯଜୁ ୩୨, ୪)

ଅର୍ଥାତ୍ ଏହି ପରମଦେବ ସର୍ବଦିଶାରେ ବ୍ୟାପ୍ତ । ସେ ସର୍ବପ୍ରଥମେ ପ୍ରକଟିତ ହୁଅନ୍ତି । ସେ ଗର୍ଭମଧ୍ୟରେ ସ୍ଥିତ । ସେ ସମସ୍ତ ଲୋକରେ ପ୍ରକାଶିତ । ସେ ଭବିଷ୍ୟତ୍ କାଳରେ ମଧ୍ୟ ବିଦ୍ୟମାନ । ସେ ସର୍ବଦ୍ରଷ୍ଟା ।

ମନ୍ତ୍ରସ୍ଥିତ 'ଗର୍ଭେ ଅନ୍ତଃ'ର ଅର୍ଥ ପୌରାଣିକମାନେ ପରମାତ୍ମା ଗର୍ଭକୁ ଆସି ଅବତାର ଗ୍ରହଣ କରନ୍ତି ବୋଲି କହନ୍ତି । ଏଠାରେ ସେ ବିଷୟ ଆଦୌ କୁହାଯାଇନାହିଁ । ଏହାର ଠିକ୍ ପୂର୍ବବର୍ତ୍ତୀ

ମନ୍ତ୍ରରେ 'ନ ତସ୍ୟ ପ୍ରତିମା ଅସ୍ତି' କୁହା ଯାଇଛି । ଅର୍ଥାତ୍ ପ୍ରଭୁଙ୍କ ପ୍ରତିମା, ପ୍ରତିନିଧି, ପ୍ରତିମାନ ନାହିଁ ।

ଯଜୁର୍ବେଦର ଏକ ବେଦମନ୍ତ୍ର ସହିତ କେତେକ ପଣ୍ଡିତ ପୁରାଣବର୍ଣ୍ଣିତ ବାମନାବତାର କଥାକୁ ଯୋଡ଼ିବାକୁ ଚେଷ୍ଟା କରନ୍ତି । ମନ୍ତ୍ର ହେଉଛି—

ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେ ପଦମ୍ ।
ସମୂଢ଼ମସ୍ୟ ପାଂସୁରେ ସ୍ୱାହା ॥ (ଯଜୁ ୫, ୧୫)

ମନ୍ତ୍ରରେ ଥିବା ବିଷ୍ଣୁ ଓ ପଦ—ଏହି ଦୁଇ ଶବ୍ଦକୁ ନେଇ ବାମନ କଳ୍ପନା କରାଯାଇଛି । ବିଷ୍ଣୁ ଶବ୍ଦର ଅର୍ଥ ବ୍ୟାପକ । ଯାସ୍କାଚାର୍ଯ୍ୟ କହିଛନ୍ତି ଯାହାଙ୍କ ପଦ ବା କିରଣ ସବୁଆଡ଼େ ବ୍ୟାପି ରହିଛି, ସେ ପରମାତ୍ମା ବିଷ୍ଣୁ ଅଟନ୍ତି । କେହି କେହି ଆଚାର୍ଯ୍ୟ ତିନି ପାଦରୁ ପ୍ରାତଃ, ମଧ୍ୟାହ୍ନ ଓ ଅସ୍ତ ସମୟର ସୂର୍ଯ୍ୟକିରଣ ଅର୍ଥ କରିଛନ୍ତି । ଦୁର୍ଗାଚାର୍ଯ୍ୟ କହିଛନ୍ତି ଯେ ସୂର୍ଯ୍ୟର ଏକ କିରଣ ଆକାଶରେ ଅଦୃଶ୍ୟ । ଯେପରି ଧୂଳି ଉଡ଼ିଲେ ପାଦଚିହ୍ନ ଦେଖାଯାଏ ନାହିଁ, ସେହିପରି ଏହି ପ୍ରକାର କିରଣ ଦୃଶ୍ୟ ହୁଏ ନାହିଁ । ମନ୍ତ୍ରରେ ଏହାକୁ 'ସମୂଢ଼ସ୍ୟ ପାଂସୁରେ' କୁହାଯାଇଛି । ମହୀଧର ତିନି ପାଦର ଅର୍ଥ କରିଛନ୍ତି—ଅଗ୍ନି, ବାୟୁ ଓ ସୂର୍ଯ୍ୟ । ପୁଣି ବିଷ୍ଣୁର ଅର୍ଥ କରିଛନ୍ତି ପରମାତ୍ମା । ଉବ୍ବଟ କହିଛନ୍ତି ପରମାତ୍ମା (ବିଷ୍ଣୁ) ହିଁ ଭୂମି, ଅନ୍ତରିକ୍ଷ ଓ ଦ୍ୟୁଲୋକରେ ଅଗ୍ନି, ବାୟୁ ଓ ସୂର୍ଯ୍ୟ ରୂପକ ନିଜର ପାଦ ରଖନ୍ତି । ସମ୍ଭବତଃ ପୁରାଣକର୍ତ୍ତା ଏହି ପ୍ରାକୃତିକ ଦୃଶ୍ୟକୁ ପୁରୁଷାକୃତି କରି କଳ୍ପିତ ବିଷ୍ଣୁ ଦେବତା ବାମନ ହୋଇ ତିନି ଚରଣରେ ତିନି ଲୋକକୁ ମାପିବା ଗଳ୍ପ ଗଢ଼ିଛନ୍ତି ।

ଅଥର୍ବବେଦର ଏକ ମନ୍ତ୍ର ସହିତ କେତେକ ପୌରାଣିକ ପଣ୍ଡିତ ବରାହ ଅବତାରକୁ ଯୋଡ଼ି ଦିଅନ୍ତି ।

ମଲ୍ଚଂ ବଭ୍ରତୀ ଗୁରୁଭୃଦ୍ ଭଦ୍ରପାପସ୍ୟ ନିଧନଂ ତିତିକ୍ଷୁଃ ।
ବରାହେଣ ପୃଥିବୀ ସଂବିଦାନା ସୂକରାୟ ବି ଜିହୀତେ ମୃଗାୟ ॥
(ଅଥର୍ବ ୧୨, ୧, ୪୮)

ଏହାର ଅର୍ଥ—ଯେଉଁ ପୃଥିବୀ ଭଲମନ୍ଦ, ମୂର୍ଖପଣ୍ଡିତ ସମସ୍ତଙ୍କୁ ଧାରଣ କରେ, ସେ ବରାହ ଆଦି ପଶୁଙ୍କ ସ୍ୱଚ୍ଛନ୍ଦ ବିଚରଣ ପାଇଁ ସୁଯୋଗ ଦିଏ ।

ଅନ୍ୟ ଅର୍ଥରେ ନିରୁକ୍ତକର୍ତ୍ତା ଲେଖିଛନ୍ତି—'ବରାହୋ ମେଘ ଭବତି' ଅର୍ଥାତ୍ ବରାହର ଅର୍ଥ ମେଘ । ବର୍ ଅର୍ଥାତ୍ ଜଳର ଆହାର ଯେ କରେ, ସେ ବରାହ ଅର୍ଥାତ୍ ମେଘ । ସେହି ଦୃଷ୍ଟିରୁ ମନ୍ତ୍ରର ଅର୍ଥ— ପୃଥିବୀ ସମସ୍ତଙ୍କୁ ଧାରଣ କରିବା ପରି ମେଘରୁ ଜଳାଦି ପ୍ରାପ୍ତ ହୁଏ । ଏଥିରୁ ବରାହ ଅବତାର କୌଣସି ପ୍ରକାରେ ସିଦ୍ଧ ହୁଏ ନାହିଁ ।

ବେଦରେ କୃଷ୍ଣ ଶବ୍ଦ ଦେଖାଯାଏ । ପରନ୍ତୁ ସେଥିରେ ବାସୁଦେବ କୃଷ୍ଣଙ୍କ ବିଷୟ ନାହିଁ । ବେଦ ସୃଷ୍ଟି ପ୍ରାରମ୍ଭର ଜ୍ଞାନ । ବାସୁଦେବ କୃଷ୍ଣ ପରକାଳୀନ ମହାପୁରୁଷ । ବେଦରେ ବ୍ୟବହୃତ କୃଷ୍ଣ ଶବ୍ଦର ଅର୍ଥ କଳାରଙ୍ଗ, ଆକର୍ଷକ କଳାମେଘ ଆଦି ।

କୃଷ୍ଣଂ ଅରୁଣଂ ଚ ବର୍ଣ୍ଣଂ । (ଋ ୧, ୧୭୩, ୭)
ଏଥିରେ କୃଷ୍ଣ = କଳାବର୍ଣ୍ଣ

ପ୍ରମନ୍ଦିନେ ଦଃ କୃଷ୍ଣଗର୍ଭା । (ଋ ୧, ୧୦୧, ୧)
ଏଥିରେ କୃଷ୍ଣଗର୍ଭା = ପାପଗର୍ଭା

କୃଷ୍ଣମନ୍ୟଦ୍ଧରିତଃ ସଂ ଭରନ୍ତି । (ଋ ୧, ୧୫, ୫)
ଏଥିରେ କୃଷ୍ଣ = ଆକର୍ଷକ

ଆକୃଷ୍ଣ ଋଜୂଃ । (ଋ ୪, ୧୬, ୧୪)

ଏଥିରେ କୃଷ୍ଣ = କଳାମେଘ

ଆକୃଷ୍ଣେନ ରଜସା । (ଯଜୁଃ ୩୩, ୪୩)

ଏଥିରେ କୃଷ୍ଣ = ଆକର୍ଷକ

ଏହାପରେ ପୌରାଣିକ ଭାଇମାନେ ବେଦୋକ୍ତ ରାମ ଶବ୍ଦରୁ ଦାଶରଥୀ ରାମ ବା ରାମାବତାରର ସ୍ୱପ୍ନ ଦେଖନ୍ତି । ଋଗ୍‌ବେଦର ଏକ ମନ୍ତ୍ର—

ଭଦ୍ରୋ ଭଦ୍ରୟା ସଚମାନ ଆଗାତ୍
ସ୍ୱସାରଂ ଜାରୋ ଅଭ୍ୟେତି ପଶ୍ଚାତ୍ ।

ମନ୍ତ୍ରର ଅର୍ଥ (ଜାରଃ ସ୍ୱସାରଂ ପଶ୍ଚାତ୍ ଅଭି ଏତି) ରାତ୍ରିର ବିନାଶକ ସୂର୍ଯ୍ୟ ନିଜ ଭଗିନୀଙ୍କୁ ବର୍ଷାକାଳ ପରେ ପରେ ଆଗମନ କରେ । (ଭଦ୍ରଃ ଭଦ୍ରୟା ସଚମାନଃ ଆଗାତ୍) ସୁଖକାରକ ସୂର୍ଯ୍ୟ କାନ୍ତିଯୁକ୍ତ ହୋଇ ପ୍ରବେଶ କରେ । (ଋଶଦ୍‌ଭିଃ ବର୍ଣ୍ଣୈଃ ରାମମ୍ ଅଭି ଅସ୍ଥାତ୍) ଉଜ୍ଜ୍ୱଳ ରଶ୍ମୀଦ୍ୱାରା ରାତ୍ରିର ଅନ୍ଧକାରକୁ ପରାଜିତ କରେ ।

ମନ୍ତ୍ରରେ ରାମ ଶବ୍ଦର ଅର୍ଥ ରାତ୍ରିର ଅନ୍ଧକାର । ନିତ୍ୟ ବେଦରେ ରାମଙ୍କ ଇତିହାସ ଖୋଜିବା ବ୍ୟର୍ଥତା ଓ ଅଜ୍ଞତା ।

ବେଦମନ୍ତ୍ରରୁ ଅନିତ୍ୟ ଭୂଗୋଳ ଓ ଇତିହାସ ଅନ୍ୱେଷଣ କରିବା ଅସଂଗତ ଓ ଅଯୌକ୍ତିକ । ବେଦ ନିତ୍ୟଜ୍ଞାନ । ପ୍ରତ୍ୟେକ ସୃଷ୍ଟିର ସୂର୍ଯ୍ୟଚନ୍ଦ୍ର ପରି ଈଶ୍ୱରୀୟ ବେଦଜ୍ଞାନ ଋଷିଙ୍କ ଅନ୍ତଃ-କରଣରେ ପ୍ରତିଭାତ ହୁଏ ।

ଯେଉଁ ବେଦଜ୍ଞାନ ଏକ, ଅଦ୍ୱିତୀୟ, ନିର୍ବିକାର, ସର୍ବବ୍ୟାପକ ଏବଂ ସର୍ବଶକ୍ତିମାନ୍ ପରମାତ୍ମାଙ୍କୁ ଉପାସନା କରିବା ପାଇଁ ଉପଦେଶ ପ୍ରଦାନ କରିଛନ୍ତି, ସେଥିରେ ମୂର୍ତ୍ତିପୂଜା ଓ ଅବତାରବାଦର ଲେଶମାତ୍ର ବର୍ଣ୍ଣନା ନାହିଁ ।

ବାସ୍ତବିକତା ହେଉଛି ଯେ ଆଳସ୍ୟ ଓ ପ୍ରମାଦ କାରଣରୁ ହଜାର ହଜାର ବର୍ଷ ହେଲା ଆମ ଦେଶର ପଣ୍ଡିତମାନେ ବେଦର ପଠନପାଠନରୁ ଦୂରେଇ ଯାଇଛନ୍ତି । ମଧ୍ୟକାଳୀନ ପୌରାଣିକ ଯୁଗରେ ଯଜ୍ଞାଦି କର୍ମକାଣ୍ଡରେ ବେଦମନ୍ତ୍ରଗୁଡ଼ିକୁ ବ୍ୟବହାର କରିବାରେ ବେଦପାଠ ସୀମିତ ରହିଲା । ବେଦାର୍ଥର ମୂଳ ସିଦ୍ଧାନ୍ତ ପ୍ରତି କେହି ଦୃଷ୍ଟିପାତ କଲେ ନାହିଁ । ପରିଣାମ ସ୍ୱରୂପ ଯାହା ହେବାର କଥା ହେଲା । ଲୌକିକ ସଂସ୍କୃତ ଭାଷାର ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ବେଦମନ୍ତ୍ରରେ ଥିବା ଶବ୍ଦଗୁଡ଼ିକୁ ନେଇ ଅଶୁଦ୍ଧ ବିନିଯୋଗ କଲେ । ଉଦାହରଣ ସ୍ୱରୂପ 'ଶନ୍ନୋଦେବୀରଭିଷ୍ଟୟ' ମନ୍ତ୍ରକୁ ଶନିଗ୍ରହ ପୂଜାରେ ବ୍ୟବହାର କଲେ । ଶନ୍ନୋ (ଶମ୍ + ନଃ)ର ଅର୍ଥ ଆମ୍ଭମାନଙ୍କୁ ଶାନ୍ତି ଲାଭ ହେଉ । ଏହା ସହିତ ଶନି ଗ୍ରହର ସମ୍ବନ୍ଧ ଆଦୌ ନାହିଁ । ଯେତେବେଳେ ଶନିଗ୍ରହ ପୂଜାର କଳ୍ପନା କରାଗଲା, ସେହି ପ୍ରଥାକୁ ପ୍ରସିଦ୍ଧ କରିବାପାଇଁ ବେଦମନ୍ତ୍ରରେ ଥିବା ସେହିପରି ଶବ୍ଦଗୁଡ଼ିକୁ ଖୋଜି ସମ୍ପୂର୍ଣ୍ଣ ମନ୍ତ୍ରର ଅର୍ଥ ପ୍ରତି ଦୃଷ୍ଟି ନ ଦେଇ ନିଜ ପକ୍ଷ ସମର୍ଥନ ପାଇଁ ସେହି ମନ୍ତ୍ରକୁ ପୂଜା ବିଧାନରେ ପ୍ରୟୋଗ କରାଗଲା । ଉକ୍ତ ପ୍ରଥାକୁ ପୁରାତନ ସିଦ୍ଧ କରିବା ପାଇଁ ଏହି ନୀତି ଅବଲମ୍ବନ କରାଗଲା । ସେହିପରି 'ଉଦ୍‌ବୁଧ ସ୍ୱାଗ୍ନେ' ମନ୍ତ୍ରରେ ନବଗ୍ରହର ବୁଧ ଦେବତାଙ୍କୁ ପୂଜା କରାଗଲା । ମନ୍ତ୍ରରେ ବୁଧଗ୍ରହ ବିଷୟ ଆଦୌ ଉଲ୍ଲେଖ ନାହିଁ । କୁହାଯାଇଛି—ହେ ଅଗ୍ନିସ୍ୱରୂପ ପ୍ରକାଶକ ପ୍ରଭୋ ! ମୋତେ ଉଦ୍‌ବୁଦ୍ଧ କର ।

କଳ୍ପିତ ଗଣେଶ ମୂର୍ତ୍ତିର ପୂଜାପାଇଁ 'ଗଣାନାଂ ତ୍ୱା ଗଣପତିଂ ହବାମହେ' ବେଦମନ୍ତ୍ର ପଢ଼ାଗଲା ଯଦିଓ ଏହି ମନ୍ତ୍ରରେ ପୌରାଣିକ ଗଣେଶ ମୂର୍ତ୍ତି ସହିତ କୌଣସି ସମ୍ବନ୍ଧ ନାହିଁ । ପୌରାଣିକ ପଣ୍ଡିତମାନଙ୍କ ଏହି ସବୁ ବିଧାନକୁ ଇଂରେଜ ଲେଖକମାନେ ଅନୁବାଦ କଲେ । ସଂସାରରେ ପ୍ରଚାରିତ ହେଲା ଯେ, ବେଦରେ ବହୁ ଭଗବାନ୍, ବହୁ ମୂର୍ତ୍ତି, ବହୁ ଅବତାରଙ୍କ ପୂଜାବିଧାନ ରହିଛି । ବେଦର ଗୌରବ ପ୍ରତି ସମ୍ମାନ ଦିଆଗଲା ନାହିଁ ।

ମହାଭାରତ ଯୁଗ ପରେ ଅର୍ଥାତ୍ ପ୍ରାୟ ପାଞ୍ଚହଜାର ବର୍ଷ ମଧ୍ୟରେ ସଂସାର ବେଦମାର୍ଗରୁ ଦୂରେଇ ଗଲା । ବେଦୋକ୍ତ ମାନବୀୟ ଧର୍ମର ପ୍ରଚାର ପରିବର୍ତ୍ତେ ବିଭିନ୍ନ ମହାପୁରୁଷଙ୍କ ନାମରେ ଧର୍ମମାନ ପ୍ରଚଳିତ ହେଲା । ଫଳରେ ମାନବସମାଜ ଏକ ହେବା ପରିବର୍ତ୍ତେ ବିଚ୍ଛିନ୍ନ ହେଲା । ଊନବିଂଶ ଶତାବ୍ଦୀରେ ଦୟାନନ୍ଦ ସରସ୍ୱତୀ ବେଦର ବୁଦ୍ଧିଗମ୍ୟ ଭାଷ୍ୟ ପ୍ରସ୍ତୁତ କରି ପ୍ରଚଳିତ ମତମତାନ୍ତର-ଗୁଡ଼ିକର ବ୍ୟର୍ଥତା ପ୍ରତିପାଦିତ କରିଥିଲେ । ବେଦ ମାନବସମାଜ ପ୍ରତି ପରମାତ୍ମାଙ୍କ ନିତ୍ୟବାଣୀ—ବେଦର ପଠନ ଓ ପାଠନରେ ସଂସାରର ସମସ୍ତ ନରନାରୀଙ୍କ ଅଧିକାର ରହିଛି—ବେଦ ଏକ ଅଦ୍ୱିତୀୟ ନିରାକାର ପରମାତ୍ମାଙ୍କ ଉପଦେଶ ଦିଏ—ଏ ସବୁ ବିଷୟର ଦୟାନନ୍ଦଙ୍କ ବେଦଭାଷ୍ୟ ପ୍ରକାଶିତ ହେବା ପରେ ପୁନଃ ପ୍ରଚାରିତ ହେଲା । ପାଶ୍ଚାତ୍ୟ ଆଲୋଚକମାନେ ବେଦକୁ ପ୍ରାଚୀନ ଭାରତୀୟମାନଙ୍କ ଗାଉଁଲି ଗୀତ ବୋଲି ଲେଖିଥିଲେ । ଦୟାନନ୍ଦଙ୍କ ବେଦଭାଷ୍ୟ ପରେ ସେମାନଙ୍କ ଦୁରାଗ୍ରହ ପ୍ରମାଣିତ ହେଲା । ମେକ୍ସମୁଲେର ଆଦି ପାଶ୍ଚାତ୍ୟ ପଣ୍ଡିତମାନେ ନିଜ ନିଜ ମତ ବଦଳାଇଲେ ।

ପୌରାଣିକ କାଳରେ ବେଦ ପ୍ରତି ଚରମ ଅବହେଳନା କରା ଯାଇଥିଲା । ପୁରାଣଗୁଡ଼ିକ ବେଦର ସ୍ଥାନ ନେଲେ । ପ୍ରସିଦ୍ଧ ପ୍ରସିଦ୍ଧ ଧର୍ମକ୍ଷେତ୍ରରେ ମଧ୍ୟ ବେଦପାଠ ହେଲାନାହିଁ । ସ୍ତ୍ରୀ-ଶୂଦ୍ର ବେଦପାଠରୁ ବଞ୍ଚିତ ହେଲେ । ଲୌକିକ ସଂସ୍କୃତର ପଣ୍ଡିତମାନେ ପୌରାଣିକ ଦେବଦେବୀଙ୍କ ସପକ୍ଷରେ ବେଦମନ୍ତ୍ରକୁ ଦୁରୁପଯୋଗ କଲେ । ଏହି ଅଧ୍ୟାୟରେ କେତୋଟି ବେଦମନ୍ତ୍ର ଉଲ୍ଲେଖ କରାଯାଇ ସେଥିରୁ କପଟ ଅଜ୍ଞାନବଶତଃ ମୂର୍ତ୍ତିପୂଜା ଓ ଅବତାରବାଦ ଅର୍ଥ କରିବା ଚେଷ୍ଟା କରାଯାଉଛି, ତାହାର ଦିଗ୍‌ଦର୍ଶନ ଦିଆଯାଇଛି ।



# ମାନବ ଜୀବନ ଉପରେ
# ମୂର୍ତ୍ତିପୂଜାର ପ୍ରଭାବ

ଦେହ ସହିତ ଆତ୍ମାର ସଂଯୋଗର ନାମ ହିଁ ଜୀବନ । ମୂର୍ତ୍ତିପୂଜା ମନୁଷ୍ୟର ଜୀବନକୁ ଅର୍ଥାତ୍ ତାହାର ଆତ୍ମା ଓ ଦେହକୁ କିଭଳି ପ୍ରଭାବିତ କରିଛି, ତାହାର ଅନୁଧ୍ୟାନ କଲେ ଏହି ପ୍ରଥାର ଅସାରତା ଅନୁଭୂତ ହେବ ।

ଈଶ୍ୱର-ଉପାସନା ଆତ୍ମୋନ୍ନତିର ସର୍ବୋତ୍ତମ ସାଧନ ଅଟେ । ସାଂସାରିକ ବାହ୍ୟ ଲାଳସା ଓ ବିଷୟ ଭୋଗରୁ ନିବୃତ୍ତ ହୋଇ ଅନ୍ତର୍ମୁଖୀ ହେବା ଓ ଈଶ୍ୱରଚିନ୍ତନରେ ଲୀନ ହେବା ଉପାସନା ଅଟେ । ଏହାଦ୍ୱାରା ଆତ୍ମା ଶୁଦ୍ଧ ହୁଏ ଏବଂ ଧୀରେ ଧୀରେ ଐଶ୍ୱରୀୟ ଗୁଣଗୁଡ଼ିକୁ ଗ୍ରହଣ କରିବା ପାଇଁ ଯୋଗ୍ୟ ହୁଏ । ଅନ୍ୟ ପକ୍ଷରେ ଜଡ଼ ପ୍ରତିମାକୁ ପରମାତ୍ମା ରୂପରେ ଧ୍ୟାନ କରିବାଦ୍ୱାରା ପୂଜକର ମନ ଓ ଆତ୍ମାରେ ରୂପ-ରସ-ଗନ୍ଧ ଆଦି ଜଡ଼ଗୁଣ ପ୍ରତିଭାତ ହୁଏ । ମୂର୍ତ୍ତିରେ ସଚ୍ଚିଦାନନ୍ଦ ପରମାତ୍ମାଙ୍କ ଗୁଣ ବା ଆକୃତି ଚିନ୍ତନ କରିବା ସମ୍ଭବ ନୁହେଁ । ତେଣୁ ଏହି ପ୍ରଣାଳୀକୁ ଈଶ୍ୱର-ପ୍ରାପ୍ତିର ମାଧ୍ୟମ ବୋଲି କୁହାଯିବା ସମୀଚୀନ ନୁହେଁ । ଚେତନ ଜୀବପାଇଁ ସଚ୍ଚିଦାନନ୍ଦ ସତ୍ତାର ଅନୁଭବ ଆବଶ୍ୟକ ; ଯଦ୍ଦ୍ୱାରା ସେ ମହତ୍ତର ଗୁଣ ଗ୍ରହଣ କରି ପାରେ । ଏହା ଯୋଗ ସାଧନାଦି ବେଦୋକ୍ତ କର୍ମଦ୍ୱାରା ସମ୍ଭବ—ପ୍ରତିମାପୂଜାଦ୍ୱାରା ନୁହେଁ ।

କୁହାଯାଏ ଯେ ଈଶ୍ୱରଙ୍କ ମୂର୍ତ୍ତିର କଳ୍ପନା ସମ୍ଭବ ନ ହେଲେ ସୁଦ୍ଧା ଈଶ୍ୱର-ଅବତାରମାନଙ୍କ ମୂର୍ତ୍ତିପୂଜା କରାଯାଇ ପାରେ । ପରନ୍ତୁ ଈଶ୍ୱରଙ୍କ ଅବତାର କଳ୍ପନା କରିବା ତାହାଙ୍କୁ ମନୁଷ୍ୟ ସ୍ତରକୁ ଅବନତ କରିବା ଅଟେ । ଏଭଳି ଭାବୁଥିବା ଲୋକଙ୍କ ମନୋବୃତ୍ତି ସମ୍ବନ୍ଧରେ ଗ୍ରୀକ ଦାର୍ଶନିକ ଜେନଫିନିଜ୍ ଲେଖିଛନ୍ତି—'ନିଗ୍ରୋ ନିଜର ଦେବତାଙ୍କୁ କୃଷ୍ଣକାୟ ଓ ଚେପଟାନାକ ଥିବା ରୂପ ପ୍ରଦାନ କରନ୍ତି । ଥ୍ରେସନିବାସୀ ନୀଳ ଆଖି ଓ ଲାଲ କେଶର ଦେବତା କଳ୍ପନା କରନ୍ତି । ବଳଦ, ଘୋଡ଼ା ଆଦି ପଶୁମାନେ ମଧ୍ୟ ଚିତ୍ର ଟାଣିବା ଜାଣିଥିଲେ, ସେମାନେ ମଧ୍ୟ ନିଜ ନିଜ ଆକୃତିବିଶିଷ୍ଟ ଦେବତାଙ୍କ ରଚନା କରିଥାନ୍ତେ ।' ଅବତାରବାଦୀ ଓ ମୂର୍ତ୍ତିପୂଜକମାନଙ୍କ ଅବସ୍ଥା ଠିକ୍ ସେହିପରି । ଭାରତର ପୁରାଣକର୍ତ୍ତାମାନେ ହୟଗ୍ରୀବ (ଘୋଡ଼ା ମୁଣ୍ଡଯୁକ୍ତ), ନରସିଂହ (ସିଂହ ମୁଣ୍ଡଯୁକ୍ତ), ଘୁଷୁରି, କଇଁଚ, ମାଛରୂପରେ ଈଶ୍ୱରଙ୍କ ଅବତାର କଳ୍ପନା କରିଛନ୍ତି ।

ମୂର୍ତ୍ତିପୂଜା ଯଦି ବୀରପୂଜା (Hero Worship)ରେ ହିଁ ସୀମିତ ଥାଆନ୍ତା, ତାହାହେଲେ ଭାରତୀୟଙ୍କ ଏତେ ଦୁରବସ୍ଥା ରହନ୍ତା ନାହିଁ । ପୂର୍ବବର୍ତ୍ତୀ ମହାପୁରୁଷମାନଙ୍କ ଚିତ୍ର କମ୍ବା ମୂର୍ତ୍ତି ଦେଖି ସେମାନଙ୍କ ବୀରତ୍ୱ ତଥା ମହାନତା ପ୍ରତି ଆଦର ଜାତ ହୁଏ ତଥା ସେମାନଙ୍କ ଆଦର୍ଶର ପଦାଙ୍କାନୁସରଣ କରିବାକୁ ଉତ୍ସାହ ଆସେ । କିନ୍ତୁ ମୂର୍ତ୍ତିକୁ ଚେତନ ସତ୍ତା ଭାବିବା ଓ ତାହାକୁ ସ୍ତୁତିପ୍ରାର୍ଥନା କରି ଜ୍ଞାନ, ଆନନ୍ଦ ଓ ସୁରକ୍ଷା ପାଇଁ ଆଶା ରଖିବା ଅଜ୍ଞାନତାର ନିଦର୍ଶନ ଅଟେ । ମୂର୍ତ୍ତିଗୁଡ଼ିକରେ ପ୍ରାଣପ୍ରତିଷ୍ଠା କରି ସେମାନଙ୍କର ନିତ୍ୟ ମାର୍ଜନ, ଆଭୂଷଣ, ଭୋଗରାଗ ଇତ୍ୟାଦି କ୍ରିୟାଦ୍ୱାରା ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ମୂର୍ତ୍ତିଗୁଡ଼ିକ ସେମାନଙ୍କ ରକ୍ଷା କରନ୍ତି ଓ ପୂଜାରେ ଅସନ୍ତୁଷ୍ଟ ହୋଇ ଅନିଷ୍ଟ ସାଧନ କରନ୍ତି । ଏଭଳି ବିଶ୍ୱାସଦ୍ୱାରା

ଅଦୃଶ୍ୟ, ନିରାକାର, ସର୍ବଶକ୍ତିମାନ ପରମାତ୍ମାଙ୍କ ଉପାସନା କରୁଅଛେ ଭାବିବା ହାସ୍ୟାସ୍ପଦ ଅଟେ । ଏହାଦ୍ୱାରା ହିନ୍ଦୁଜାତିର ଯେଉଁ ଅନିଷ୍ଟ ସାଧିତ ହୋଇଛି, ତାହା ମୁସଲମାନ ରାଜତ୍ୱରେ ଆମର ଅକଥନୀୟ ଦୁର୍ଦ୍ଦଶା ଓ ଅସହାୟ ପରାଧୀନତାରୁ ସ୍ପଷ୍ଟ ଜଣାପଡ଼େ । ଧର୍ମିକ ବିଶ୍ୱାସ ଆମର ବ୍ୟକ୍ତିଗତ ଜୀବନକୁ ପ୍ରଭାବିତ କରେ । ତାହା ଆମର ସାମାଜିକ ଉତ୍ଥାନ ଓ ରାଷ୍ଟ୍ରନିର୍ମାଣରେ ସହାୟକ ହୁଏ । ଅନ୍ୟ ପକ୍ଷରେ ଧାର୍ମିକ ବିଶ୍ୱାସର ଅସାରତା ସାମାଜିକ ବିକାଶରେ ପ୍ରତିବନ୍ଧକ ହୁଏ ।

ଧାର୍ମିକ ବିଶ୍ୱାସ ହିଁ ଆରବୀ, ତୁର୍କ, ମୋଗଲମାନଙ୍କ ପରି ବର୍ବର ଜାତିଗୁଡ଼ିକୁ ଏକାଠି କରିଥିଲା । ଧାର୍ମିକ ବିଶ୍ୱାସ ହିଁ ଜଗତ୍‌ର ପ୍ରସିଦ୍ଧ ପୁରାତନ ଆର୍ଯ୍ୟଜାତିକୁ ବିଭିନ୍ନ ସଂପ୍ରଦାୟ, ଜାତି, ଉପଜାତିରେ ଖଣ୍ଡ ବିଖଣ୍ଡିତ କରିଦେଲା । ଧର୍ମାନ୍ଧତା ଯୋଗୁ ବଡ଼ ଦାହିରଙ୍କର ପରାଜୟ ଘଟିଲା । ମହମ୍ମଦ ଗଜନୀ ହିନ୍ଦୁମାନଙ୍କ ଧର୍ମାନ୍ଧତାର ସୁଯୋଗ ନେଇ ସୋମନାଥ ମନ୍ଦିରରୁ ଅପର୍ଯ୍ୟାପ୍ତ ଧନରତ୍ନ ଲୁଣ୍ଠନ କଲେ । ସୀତ୍ର ରାଜପୁତ୍‌ମାନଙ୍କର ବିଶ୍ୱାସ ଥିଲା ଯେ, ସୋମନାଥ ସେମାନଙ୍କର ରକ୍ଷାକର୍ତ୍ତା । ତେଣୁ ମନ୍ଦିର ଧ୍ୱଂସ ହେବା ପରେ ସେମାନେ ନିଜକୁ ନିଃସହାୟ ମନେ କଲେ ଓ ପରାଜିତ ହେଲେ । ଯେଉଁମାନଙ୍କର ଈଶ୍ୱର ନିଜକୁ ରକ୍ଷା କରିବା ପାଇଁ ଅସମର୍ଥ, ସେ କିପରି ଭକ୍ତମାନଙ୍କୁ ରକ୍ଷା କରିବେ ? ଏଭଳି ବିଶ୍ୱାସ ସୃଷ୍ଟି କରିବା ପାଇଁ ସେତେବେଳେ ଦେଶଦ୍ରୋହୀ ଭବିଷ୍ୟତ ବକ୍ତାମାନଙ୍କର ଅଭାବ ନ ଥିଲା । ଏହି ପରିସ୍ଥିତିରେ ମହମ୍ମଦ ଘୋରୀ, ତୈମୁରଲଙ୍ଗ, ନାଦିରଶାହ ଆଦି ବୈଦେଶିକମାନେ ହିନ୍ଦୁଙ୍କର ଧର୍ମରେ ଅନ୍ଧବିଶ୍ୱାସ ଦେଖି ସେମାନଙ୍କୁ କୌଶଳରେ ପରାଜିତ କରିଥିଲେ । ସହସ୍ର ସଂଖ୍ୟାରେ ହିନ୍ଦୁମାନଙ୍କୁ ବନ୍ଦୀ କରି ଦୂରସ୍ଥ ଦେଶମାନଙ୍କୁ ନିଆ ଯାଇଥିଲା । ଶୁଣାଯାଏ ଯେ ତୈମୁରଲଙ୍ଗ ପାଖରେ ସହସ୍ରାଧିକ ହିନ୍ଦୁ ବନ୍ଦୀ ଖାଦ୍ୟାଭାବରୁ ପ୍ରାଣତ୍ୟାଗ

କଲେ । ହିନ୍ଦୁଜାତିର ସାମାଜିକ ଦୁରବସ୍ଥା ଓ ପତନ ପାଇଁ ସେମାନଙ୍କ ଧାର୍ମିକ ଅନ୍ଧବିଶ୍ୱାସ ଯେ ଅନେକ ପରିମାଣରେ ଦାୟୀ ଏଥିରେ ସନ୍ଦେହ ନାହିଁ ।

ଯେତେବେଳେ ମନୁଷ୍ୟ ନିଜ ରୁଚି ଅନୁସାରେ ଅନେକ ଈଶ୍ୱର, ଦେବଦେବୀ, ଗୁରୁ ଆଦି ରଚନା କରେ, ସେତେବେଳେ ସମାଜ ବିଭିନ୍ନ ସଂପ୍ରଦାୟରେ ବିଭକ୍ତ ହୁଏ ଓ ବିବାଦ ପ୍ରକାଶ ପାଏ । ବିଭାଜିତ ଗୋଷ୍ଠୀ ମଧ୍ୟରେ ଲୋଭ, ମୋହ, କ୍ରୋଧ ଓ ତିକ୍ତତାର ଫଳ ସ୍ୱରୂପ ସଂଘର୍ଷ ଦେଖାଦିଏ । ଏହି ପ୍ରକାରେ ଈଶ୍ୱର ଓ ଧର୍ମ ନାମରେ ହୋଇଥିବା ଅକଥନୀୟ ଶୋଷଣ, ଅତ୍ୟାଚାର ଓ ଅନ୍ୟାୟର ବିବରଣୀ ଇତିହାସରେ ଦେଖିବାକୁ ମିଳେ । ଭାରତରେ କାପାଳିକମାନେ ନିଜ ଅନୁରୂପ 'ଶିବ'ଙ୍କ କଳ୍ପନା କଲେ । ମାଂସ-ମଦିରା ପ୍ରେମୀମାନେ ନିଜ ରୁଚି ଅନୁସାରେ 'ଶକ୍ତି'ଙ୍କ ନିର୍ମାଣ କଲେ । ରସିକମାନେ 'ବିଷ୍ଣୁ' ତଥା ତାହାଙ୍କ ପୂର୍ଣ୍ଣାବତାର 'କୃଷ୍ଣ'ଙ୍କୁ ଜନ୍ମ ଦେଲେ । ବିଭିନ୍ନ ସଂପ୍ରଦାୟ ନିଜ ନିଜର ଉପାସ୍ୟ ଦେବତାଙ୍କ ଆକୃତି କଳ୍ପନା କଲେ ଓ ସେମାନଙ୍କ ପ୍ରଶଂସା ପାଇଁ ପୁରାଣ ପୁସ୍ତକ ରଚନା କଲେ । ଶୈବମାନଙ୍କ ଶିବଲିଙ୍ଗ, ଶାକ୍ତମାନଙ୍କ ବିକଟାଳରୂପୀ କାଳୀ ତଥା ବୈଷ୍ଣବମାନଙ୍କ ରସିକ ରାଧାବଲ୍ଲଭ କୃଷ୍ଣ ସେହି ସେହି ସଂପ୍ରଦାୟର ସ୍ୱଭାବର ପ୍ରତିଛାୟା ମାତ୍ର । ଆଜିକାଲି ଏସବୁଦ୍ୱାରା ସମାଜ ଉପରେ ବିଭିନ୍ନତାବାଦ ଓ ଅଶ୍ଳୀଳତା ପ୍ରତିଫଳିତ ହେଉଛି । ଈଶ୍ୱର ବିରୋଧୀ ଓ ଧର୍ମାନ୍ଧ ଜନସମାଜ ସୃଷ୍ଟି ହେଉଛି ।

କୌଣସି ମୂର୍ତ୍ତି ଅଥବା ଚିତ୍ରକୁ ଦେଖିଲେ ଦୁଇଟି ବିଚାର ଆସେ । ମୂର୍ତ୍ତି ବା ଚିତ୍ର ଯେଉଁ ବ୍ୟକ୍ତିଙ୍କର, ତାହାଙ୍କ ଜୀବନୀ ଜାଣିଥିଲେ ସଦ୍‌ଗୁଣସଂପନ୍ନ ବ୍ୟକ୍ତିଙ୍କ ପାଇଁ ଶ୍ରଦ୍ଧା ଓ ଦୁର୍ଗୁଣୀ ପାଇଁ ଘୃଣା ଜାତ

ହୁଏ । ମୂର୍ତ୍ତିର ସୁନ୍ଦରତା ବା ଅସୁନ୍ଦରତା ଉପରେ ନିର୍ଭର କରି ଅନ୍ୟ ଏକ ବସ୍ତୁର କଳାକାରର କଳା ସମ୍ବନ୍ଧରେ ଜ୍ଞାତ ହୁଏ । ପରନ୍ତୁ ପରମାତ୍ମା ଅଶରୀରୀ ହୋଇଥିବାରୁ ଯେ କୌଣସି କୁଶଳୀ କଳାକାରଙ୍କ କଳା ତାହାଙ୍କ ପ୍ରତିମା ବା ପ୍ରତିମାନ ରଚନା କରିବାରେ ସଫଳ ହୁଏ ନାହିଁ । ବିରାଟ ସୃଷ୍ଟିହିଁ ବିରାଟ ସ୍ରଷ୍ଟାଙ୍କ ଅପୂର୍ବ କଳା । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ନଦୀ, ପର୍ବତ, ପତ୍ର, ପୁଷ୍ପ—ଏସବୁ ମହାନ୍ ସ୍ରଷ୍ଟାଙ୍କ ସୃଷ୍ଟି । ସେହି ସୃଷ୍ଟିକୁ ଅନୁଧ୍ୟାନ କଲେ ସ୍ରଷ୍ଟା ଅନୁଭୂତ ହୁଅନ୍ତି । ତାହା ନ କରି ମନୁଷ୍ୟ ଗଠିତ ମୂର୍ତ୍ତିକୁ ଦେଖି ଈଶ୍ୱର ଦର୍ଶନ କରିବା ଇଚ୍ଛା ନିତାନ୍ତ ଭ୍ରମ ଅଟେ ।

ହିନ୍ଦୁମାନଙ୍କ ଅପାର ଧନରାଶି ପ୍ରତିବର୍ଷ ତୀର୍ଥସ୍ଥାନ ଭ୍ରମଣରେ ଖର୍ଚ୍ଚ ହୁଏ । ଜଳବାୟୁର ପରିବର୍ତ୍ତନ ପାଇଁ ଦେଶାଟନ ଆବଶ୍ୟକ—ଏଥିରେ ସଂଦେହ ନାହିଁ । ପରନ୍ତୁ ତୀର୍ଥ ନାମରେ ଧର୍ମାନ୍ଧତା, ପୁଣ୍ୟାର୍ଜନ—ଏସବୁ ବସ୍ତୁର ନିରର୍ଥକ । କୁମ୍ଭମେଳା ଆଦି ମହୋତ୍ସବରେ ଯାତ୍ରୀମାନେ ବହୁ ଅସୁବିଧାର ସମ୍ମୁଖୀନ ହୁଅନ୍ତି ଓ ଅନେକ ସଂକ୍ରାମକ ରୋଗରେ ଆକ୍ରାନ୍ତ ହୁଅନ୍ତି । ପଣ୍ଡା ପୂଜାରୀମାନେ ସରଳ ବିଶ୍ୱାସୀ ଯାତ୍ରୀମାନଙ୍କୁ ତୀର୍ଥସ୍ଥଳର କଳ୍ପିତ ଚମତ୍କାରିତା ବର୍ଣ୍ଣନା କରନ୍ତି, ସେମାନଙ୍କୁ ଭୟଭୀତ କରନ୍ତି ଓ ଧନ ଅପହରଣ କରନ୍ତି । ତୀର୍ଥ, ମନ୍ଦିର, ମଠ ଆଦି ଧର୍ମପୀଠର ଆଢ଼ୁଆଳରେ ଚାଲିଥିବା ଚରିତ୍ରହୀନ ଦୋଷ, ଲୁଣ୍ଠନ, ବ୍ୟଭିଚାର କାହାରିକୁ ଅବିଦିତ ନୁହେଁ । ବମ୍ବେର ବୈଷ୍ଣବ ସଂପ୍ରଦାୟର ବିଶିଷ୍ଟ ଗୁରୁ ମହାରାଜ ଲାଇବଲ କେସ୍, କଲିକତାର ଗୋବିନ୍ଦ ଭବନର କାହାଣୀ, ଶ୍ରୀନାଥ ମନ୍ଦିରର ମହନ୍ତ ଦାମୋଦରଲାଲଙ୍କ ଅଶ୍ଳୀଳତା—ଏ ସମସ୍ତ ଘଟଣା ଧର୍ମ-ପୁଣ୍ୟ ନାମରେ ଘଟିଛି । ମନ୍ଦିରର ଅନ୍ଧକାରମୟ କୋଠରୀରେ ଦିନ ଦିପହରରେ ଦୀପର ଆବଶ୍ୟକତା ହୁଏ । ଏହା ମୂର୍ତ୍ତିପୂଜାଦ୍ୱାରା

ବ୍ୟାପୁଥିବା ଅଜ୍ଞାନାନ୍ଧକାରର ପ୍ରତୀକ ଅଟେ । କୋଟି କୋଟି ମୁଦ୍ରାର ବ୍ୟୟରେ ନିର୍ମିତ ମନ୍ଦିରମାନଙ୍କରେ ଧ୍ୟାନ, ଉପାସନା, ସତ୍ସଙ୍ଗ, ସ୍ୱାଧ୍ୟାୟ ପାଇଁ ପରିବେଶ ନାହିଁ ।

ଦେଶର ଲକ୍ଷ ଲକ୍ଷ ଅନାଥ ଶିଶୁ କ୍ଷୁଧାର ଜ୍ୱାଳାରେ ସନ୍ତୁ ଥିବାବେଳେ ଧନୀ ସମାଜର ପାଷାଣ ହୃଦୟ ସେମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରୁନାହିଁ । ଏହି ଜୀବନ୍ତ ମୂର୍ତ୍ତିଗୁଡ଼ିକୁ ସେବା କରିବାପାଇଁ ଧନ ମିଳୁ ନାହିଁ । ଧର୍ମଧ୍ୱଜୀ ଲୋକଙ୍କ ଉପଭୋଗ ପରେ ବଳୁଥିବା ଖାଦ୍ୟ ସାମଗ୍ରୀ 'ମହାପ୍ରସାଦ' ନାମରେ ବଜାରରେ ବିକ୍ରି ହେଉଛି । ମୂର୍ତ୍ତିପୂଜାରେ ବ୍ୟୟିତ ହେଉଥିବା ଧନରାଶିକୁ ଶିକ୍ଷା ପ୍ରସାର ପାଇଁ ବିନିଯୋଗ କଲେ ସରକାରଙ୍କ ବିନା ସହାୟତାରେ ବହୁ ଆଦର୍ଶ ବିଶ୍ୱବିଦ୍ୟାଳୟ ପରିଚାଳିତ ହୋଇ ପାରନ୍ତା । ଆର୍ଯ୍ୟସଂସ୍କୃତିର ପୁନରୁଦ୍ଧାର ପାଇଁ ଅନେକ ଫଳପ୍ରଦ କାର୍ଯ୍ୟ କରାଯାଇ ପାରନ୍ତା । ଅନାଥ, ଅସହାୟ, ବୃଦ୍ଧ ଓ ବିଧବାଙ୍କ ପାଇଁ ସେବାସଦନ ନିର୍ମିତ ହୁଅନ୍ତା । ଦାତବ୍ୟ ଚିକିତ୍ସାଳୟ ଖୋଲାଯାଇ ବିନା ମୂଲ୍ୟରେ ଔଷଧ ବିତରଣ କରାଯାଇ ପାରନ୍ତା । ଏଭଳି ବହୁ ଲୋକହିତକର କାର୍ଯ୍ୟ ଧନାଭାବରୁ ହୋଇ ପାରୁ ନାହିଁ । ଏଥିପାଇଁ ଦାନ ମିଳୁ ନାହିଁ । ଅନ୍ୟ ପକ୍ଷରେ ଛଦ୍ମ କପଟଦ୍ୱାରା କଳ୍ପିତ ଈଶ୍ୱର ଓ ଧନ ନାମରେ ଯଥେଷ୍ଟ ଧନ ଲୁଣ୍ଠିତ ହେଉଛି ।

ସଂସ୍କାରଦ୍ୱେଷୀ ମୁଷ୍ଟିମେୟ ଲୋକଙ୍କଦ୍ୱାରା ଦୁଇ ତିନି ହଜାର ବର୍ଷ ହେଲା ପ୍ରଚଳିତ ଥିବା କୁପ୍ରଥା ଦୂର ହେବା ସହଜ ନୁହେଁ । ଯେଉଁ-ମାନଙ୍କ ଜୀବିକାର ଆଶ୍ରୟ ହେଉଛି ମୂର୍ତ୍ତିପୂଜା ଓ ଯେଉଁ ଅଗଣିତ ଜନ ସହଜ ସରଳ ଉପାୟରେ ପ୍ରତିମାପୂଜା କରି ଈଶ୍ୱରୋପାସନା କରୁଛନ୍ତି ବୋଲି ସନ୍ତୁଷ୍ଟ, ସେମାନଙ୍କୁ ବୁଝାଇବା କଷ୍ଟସାଧ୍ୟ । ମୁସଲମାନ ଯୁଗରେ

ଗୁରୁ ନାନକ ଓ କବୀର ଆଦି ସନ୍ଥମାନେ ମୂର୍ତ୍ତିପୂଜାର କୁପରିଣାମ ଦର୍ଶାଇ ଉପଦେଶ ଦେଇଥିଲେ । ସେମାନଙ୍କର ଅନୁଗାମୀମାନେ ଏହି ଦୁର୍ବଳ କୁପ୍ରଥାରେ ଗ୍ରସ୍ତ ହୋଇ କୌଣସି ନା କୌଣସି ରୂପରେ ମୂର୍ତ୍ତିପୂଜା ଆରମ୍ଭ କରିଗଲେ । ଗୁରୁଦ୍ୱାରମାନଙ୍କରେ ମୂର୍ତ୍ତି ସ୍ଥଳରେ ଗ୍ରନ୍ଥର ପୂଜା ଏହାର ଏକ ସ୍ପଷ୍ଟ ଉଦାହରଣ ଅଟେ ।

ମୂର୍ତ୍ତିପୂଜକମାନେ ଆଧୁନିକ ଭାରତର ପ୍ରଥମ ସମାଜ ସଂସ୍କାରକ ରାଜା ରାମମୋହନ ରାୟଙ୍କ ଘୋର ବିରୋଧ କରିଥିଲେ । ବେଦୋ-ଦ୍ଧାରକ ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କୁ ଏଥିପାଇଁ ବହୁବାର ବିଷ ପ୍ରୟୋଗ କରାଯାଇଥିଲା । ମୂର୍ତ୍ତିପୂଜା ହିନ୍ଦୁସମାଜର ଏକ ଅସାଧାରଣ ରୋଗ । ଏହାର ପ୍ରତିକାର ପାଇଁ ଅସାଧାରଣ ଚିକିତ୍ସାର ଆବଶ୍ୟକତା ରହିଛି ।



# ମୂର୍ତ୍ତିପୂଜା ଓ ଯୋଗ ସାଧନା

ଯୋଗ ସାଧନ ଈଶ୍ୱରପ୍ରାପ୍ତିର ଏକମାତ୍ର ବିଧି ଅଟେ । ଈଶ୍ୱର ପ୍ରାପ୍ତିର ଅନ୍ୟ ପ୍ରଚଳିତ ବିଧିଗୁଡ଼ିକ ଯୋଗ ସାଧନର ଗୋଟିଏ ଗୋଟିଏ ଅଙ୍ଗ ହୋଇପାରେ କିନ୍ତୁ ସର୍ବାଙ୍ଗ ନୁହେ । ପ୍ରସିଦ୍ଧ ଗ୍ରନ୍ଥ 'ଯୋଗଦର୍ଶନ'ରେ ମହର୍ଷି ପତଞ୍ଜଳି ଲେଖିଛନ୍ତି—'ଯୋଗଶ୍ଚିତ୍ତବୃତ୍ତି-ନିରୋଧଃ' ଅର୍ଥାତ୍ ଚିତ୍ତର ବୃତ୍ତିଗୁଡ଼ିକୁ ସଂଯମ କରିବା ବା ନିଜ ବଶରେ ରଖିବାର ନାମ ଯୋଗ ଅଟେ । ଯୋଗର ଆଠଟି ଅଙ୍ଗ ଅଛି—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ।

ଯୋଗଦର୍ଶନରେ କୁହାଯାଇଛି—'ଅହିଂସା ସତ୍ୟାସ୍ତେୟ ବ୍ରହ୍ମଚର୍ଯ୍ୟାପରିଗ୍ରହା ଯମାଃ' ଅର୍ଥାତ୍ ଅହିଂସା, ସତ୍ୟ, ଅସ୍ତେୟ (ଚୋରତ୍ୟାଗ), ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ (ନିର୍ଲିପ୍ତତା) ଏ ଗୁଡ଼ିକ 'ଯମ'ର ଅନ୍ତର୍ଗତ । ଶୌଚ ସନ୍ତୋଷତପଃ ସ୍ୱାଧ୍ୟାୟେଶ୍ୱର ପ୍ରଣି-ଧାନାନି ନିୟମାଃ'—ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱରାର୍ପଣ 'ନିୟମ' ଅଟେ । ସୁଖପୂର୍ବକ ଦେହକୁ ଏକ ଅବସ୍ଥାରେ ସ୍ଥିର ରଖିବାକୁ 'ଆସନ' କୁହାଯାଏ । ସେହିପରି ପ୍ରାଣକୁ ବଶରେ ରଖିବାର ବିଧି 'ପ୍ରାଣାୟାମ' । ଏକ ସ୍ଥଳରେ ମନକୁ ସ୍ଥିର ରଖିବାର ନାମ 'ଧାରଣା'। ମନକୁ ନିର୍ବିଷୟ କରିବା 'ଧ୍ୟାନ' ଓ ଈଶ୍ୱରଚିନ୍ତନରେ ସଂପୂର୍ଣ୍ଣ ନିମଗ୍ନ ରହିବା 'ସମାଧି' ।

ଉପର୍ଯୁକ୍ତ ଯୋଗସାଧନ ବିଧି ସର୍ବାଙ୍ଗପୂର୍ଣ୍ଣ ପରନ୍ତୁ କଷ୍ଟସାଧ୍ୟ । ଈଶ୍ୱର-ପ୍ରାପ୍ତି ମନୁଷ୍ୟର ସର୍ବୋଚ୍ଚ ଧ୍ୟେୟ ; ତେଣୁ ଅଷ୍ଟାଙ୍ଗ ଯୋଗବିଧି କଠିନ ହେବା ଅସ୍ୱାଭାବିକ ନୁହେ । ଆଜକାଲି ସଂପ୍ରଦାୟ-ବାଦୀମାନେ ଈଶ୍ୱର-ପ୍ରାପ୍ତିର ମିଥ୍ୟା ସାଧନଗୁଡ଼ିକରେ ଅଭ୍ୟସ୍ତ ହୋଇଗଲେଣି । ମୂର୍ତ୍ତିଦର୍ଶନ, ତୀର୍ଥସ୍ଥଳ ଭ୍ରମଣ, ନଦୀ-ପୁଷ୍କରିଣୀରେ ସ୍ନାନ, ତିଳକାଦି ଚିହ୍ନଧାରଣ, ମନ୍ତ୍ର ବା ନାମମାତ୍ରର ଉଚ୍ଚାରଣ ଆଦି ସରଳ ଉପାୟ ଯଦି ଈଶ୍ୱରପ୍ରାପ୍ତିର ସାଧନ ହୋଇପାରେ, ତେବେ ଦୁଷ୍କର ଯୋଗସାଧନା ଆଡ଼କୁ ଜନସାଧାରଣ ମନ ବଳାଇବେ କାହିଁକି ? ଆସନ-ପ୍ରାଣାୟାମ କରି ଦେହକୁ କ୍ଳେଶ ଦେବେ ବା କାହିଁକି ? ଧାରଣା-ଧ୍ୟାନ-ସମାଧି ଆଜି ଦେବଦୁର୍ଲ୍ଲଭ ବସ୍ତୁ । ମନ୍ଦିରକୁ ଯାଇ ଦର୍ଶନମାତ୍ରେ ଯଦି ପାପନାଶ ହୋଇ ପାରୁଛି, ତେବେ ସାଧନାର ଆବଶ୍ୟକତା କ'ଣ ?

ଆମର ସମାଜ ଅଷ୍ଟାଙ୍ଗଯୋଗ ପଦ୍ଧତି ଅପରିଚିତ ନ ହେଲେ ମଧ୍ୟ ଈଶ୍ୱର ପ୍ରାପ୍ତିର ଶସ୍ତା ସାଧନଗୁଡ଼ିକରେ ଲିପ୍ତ ରହୁଛି । ଏପରିକି ବିବେକୀ ଓ ଶିକ୍ଷିତ ଲୋକମାନେ ମଧ୍ୟ ଯୋଗସାଧନରୁ ବିମୁଖ ହେଉଛନ୍ତି ।

ଯୋଗସାଧନରେ ମୂର୍ତ୍ତିପୂଜାର କୌଣସି ଭୂମିକା ବା ଆବ-ଶ୍ୟକତା ନାହିଁ । ଆଜକାଲିର ଶିକ୍ଷିତବର୍ଗଙ୍କୁ ପ୍ରଭାବିତ କରିବା ପାଇଁ ମୂର୍ତ୍ତିରେ ମନ ସ୍ଥିର ହୁଏ ବୋଲି ପ୍ରଚାର କରା ଯାଉଛି । ପ୍ରଶ୍ନ ହୁଏ ଯଦି ମନ୍ଦିରଗୁଡ଼ିକରେ ମୂର୍ତ୍ତିପ୍ରତିଷ୍ଠା ହେବାର ଏତିକି ଉଦ୍ଦେଶ୍ୟ ଥାଆନ୍ତା, ତେବେ ମୂର୍ତ୍ତିର ପ୍ରାଣପ୍ରତିଷ୍ଠା, ସ୍ନାନ, ଚନ୍ଦନ ଲେପନ, ପରିଧାନ, ବିଭୂଷଣ, ଆରତି, ଧୂପ, ଭୋଗ ଆଦି ପ୍ରୟୋଜନ ହୁଅନ୍ତା ନାହିଁ । ମୂର୍ତ୍ତି ସମ୍ମୁଖରେ ମୁଣ୍ଡ ନୁଆଁଇବା, ସାଷ୍ଟାଙ୍ଗ ପ୍ରଣିପାତ କରିବା

ଉଦ୍ଦେଶ୍ୟ କ'ଣ ? ଘଣ୍ଟାବାଦ୍ୟ, ଶଙ୍ଖ ଆଦି କୋଳାହଳ ମଧ୍ୟରେ ଅସ୍ଥିର ମନ କ'ଣ ସ୍ଥିର ହେବା ସମ୍ଭବପର ? ମୂର୍ତ୍ତିପୂଜାର ସମର୍ଥକ ଓ ପ୍ରଚାରକ ପୁରାଣ ଗ୍ରନ୍ଥମାନଙ୍କରେ ମୂର୍ତ୍ତିପୂଜା ଦ୍ୱାରା ମନ ସ୍ଥିର ହୁଏ ବୋଲି ଯୁକ୍ତି ଉପସ୍ଥାପିତ କରାଯାଇ ନାହିଁ । କିମ୍ବା କୌଣସି ମନ୍ଦିରର ପ୍ରଚଳିତ ପୂଜାବିଧିରେ ଏହାର ସ୍ଥାନ ନାହିଁ ।

ମନ୍ଦିରଗୁଡ଼ିକର ନିର୍ମାଣଶୈଳୀ ଏପରି ଯେ ସେଠାରେ ମନକୁ ସ୍ଥିର ରଖିବା ଅସମ୍ଭବ ଅଟେ । ମୂର୍ତ୍ତି ନିକଟସ୍ଥ ସ୍ଥାନଗୁଡ଼ିକ ସଂକୀର୍ଣ୍ଣ, ଅନ୍ଧକାରମୟ ଓ ଅପରିଷ୍କୃତ ହୋଇଥିବାରୁ ସେଠାରେ ଅନେକ ଉପାସକ ଏକ ସଙ୍ଗରେ ବସି ଧ୍ୟାନ କରିବା ସମ୍ଭବପର ନୁହେ । ଯଦି କୌଣସି ପ୍ରକାର ଧ୍ୟାନ କରାଯାଏ, ତେବେ ଉପାସକ ବିଭିନ୍ନ ମୂର୍ତ୍ତି ମଧ୍ୟରୁ କେଉଁ ମୂର୍ତ୍ତିଠାରେ ଧ୍ୟାନ କରିବ ବା ମୂର୍ତ୍ତିର କେଉଁ ଅଙ୍ଗରେ ମନ ସ୍ଥିର କରିବ ତାହା ଚିନ୍ତା କରି ଦ୍ୱନ୍ଦ୍ୱରେ ପଡ଼େ । ଏଥିରୁ ଜଣାଯାଏ ଯେ ଏ ଦେଶରେ ମୂର୍ତ୍ତିପୂଜାର ପ୍ରଚାର ମନକୁ ସ୍ଥିର ରଖିବା ପାଇଁ କରାଯାଇ ନ ଥିଲା । ଯଦି ମୂର୍ତ୍ତିପୂଜାର ଉଦ୍ଦେଶ୍ୟ ଚିତ୍ତକୁ ସ୍ଥିର କରିବା ପାଇଁ ଉଦ୍ଦିଷ୍ଟ, ତେବେ ମୁକ୍ତ ସ୍ଥଳମାନଙ୍କରେ ମୂର୍ତ୍ତିସ୍ଥାପନ କରାଯାଇ ଶାନ୍ତ ପରିବେଶରେ ଉପାସନା ପାଇଁ ଯୋଜନା କରାଯାଇଥାନ୍ତା । ତେଣୁ ମୂର୍ତ୍ତିର ପୂଜାବିଧି ଓ ମନ୍ଦିରଗୁଡ଼ିକର ନିର୍ମାଣଶୈଳୀରୁ ଏହା ପ୍ରମାଣିତ ହୁଏ ଯେ ମୂର୍ତ୍ତିପୂଜା ସହିତ ଯୋଗସାଧନର କୌଣସି ସମ୍ବନ୍ଧ ନ ଥିଲା । ବରଂ ମୂର୍ତ୍ତିପୂଜାର ସମର୍ଥକ ପୁରାଣଗୁଡ଼ିକ ଈଶ୍ୱର ପ୍ରାପ୍ତିର ଉପାୟ ବିଷୟରେ ସରଳ ଜନସାଧାରଣଙ୍କୁ ବିଭ୍ରାନ୍ତିକର ତଥ୍ୟ ପ୍ରଦାନ କରିଥିଲେ । ସେ ମଧ୍ୟରୁ କେତେଗୁଡ଼ିଏ ଉଦାହରଣ ନିମ୍ନରେ ଦିଆଯାଉଛି ।

ଭବିଷ୍ୟପୁରାଣ ୧୭ ଅଧ୍ୟାୟରେ ଲେଖାଅଛି—

ନୈରନ୍ତର୍ଯେଣ ଯଃ କୁର୍ଯ୍ୟାତ୍ ପକ୍ଷଂ ସମ୍ମାର୍ଜନାର୍ଚନମ୍ ।
ଯୁଗ କୋଟିଶତଂ ସ ତତ୍ର ବ୍ରହ୍ମଲୋକେ ମହୀୟତେ ॥

ଅର୍ଥ—ଯଦି କୌଣସି ବ୍ୟକ୍ତି ଏକ ପକ୍ଷ ପର୍ଯ୍ୟନ୍ତ ବ୍ରହ୍ମାଙ୍କ ମନ୍ଦିରରେ ଝାଡ଼ୁ ଦିଏ, ସେ ଏକଶହ କୋଟି ଯୁଗ ବ୍ରହ୍ମଲୋକରେ ରହେ ।

କପଟେନାପି ଯଃ କୁର୍ଯ୍ୟାତ୍ ବ୍ରହ୍ମଣଃ ନାଂ ସୁଖାନଦ ।
ସଂମାର୍ଜନାଦି ବୈ କର୍ମ ସୋଽପି ତତ୍ ଫଳମାପ୍ନୁୟାତ୍ ॥

ଅର୍ଥ--କପଟୀ ଓ ଛଳ ମଧ୍ୟ ବ୍ରହ୍ମା ମନ୍ଦିର ଝାଡ଼ୁ କଲେ ସେହି ଫଳ ପାଏ, ଯାହା କଣେ ଶ୍ରଦ୍ଧାଳୁ ଲାଭ କରେ ।

କଲ୍ପକୋଟି ସହସ୍ରୈସ୍ତୁ ଯତ୍ ପାପଂ ସମୁପାର୍ଜିତମ୍ ।
ପିତାତଦହଧିସ୍ନାନଂ ଦହତ୍ୟଗ୍ନିରିବେନ୍ଧନମ୍ ॥

ଅର୍ଥ—କୋଟି କୋଟି କଲ୍ପରେ ମନୁଷ୍ୟ ଯେଉଁ ପାପ ଅର୍ଜନ କରେ, ବ୍ରହ୍ମାଙ୍କ ମୂର୍ତ୍ତିକୁ ଘିଅରେ ସ୍ନାନ କରାଇଲେ ତାହା ଦୂର ହୁଏ ।

ମୂର୍ତ୍ତିପୂଜକମାନେ ଏହିପରି ନିଜ ନିଜ ପୁରାଣମାନଙ୍କରେ ମୂର୍ତ୍ତିର ସ୍ନାନ, ମାର୍ଜନ, ଆଚମନ, ଧୂପ, ଦୀପ, ମନ୍ଦିର ନିର୍ମାଣ ଆଦି ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ମୂର୍ତ୍ତିପୂଜା ସହିତ ଯୋଗଦର୍ଶନରେ ବର୍ଣ୍ଣିତ 'ଧାରଣା'ର ସଂପର୍କ କେଉଁଠାରେ ମଧ୍ୟ ଦେଖାଯାଏ ନାହିଁ । ଚତୁର ମୂର୍ତ୍ତିପୂଜକଗଣ ବୁଦ୍ଧିମାନ ଲୋକମାନଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ନାନାପ୍ରକାର କଲ୍ପନାପୂର୍ଣ୍ଣ ଯୁକ୍ତି ଉପସ୍ଥାପିତ କରନ୍ତି । ତେଣୁ ଧାରଣା, ଧ୍ୟାନ ଓ ସମାଧିର ଦାର୍ଶନିକ ଦୃଷ୍ଟିକୋଣ ବୁଝିନେବା ଉଚିତ ।

ଯୋଗଦର୍ଶନରେ କୁହାଯାଇଛୁ—'ଦେଶବନ୍ଧଶ୍ଚିତ୍ତସ୍ୟ ଧାରଣା' ଅର୍ଥାତ୍ ଚିତ୍ତକୁ କୌଣସି ସ୍ଥଳରେ ବାନ୍ଧି ରଖିବାକୁ ଧାରଣା କୁହାଯାଏ । 'ତତ୍ର ପ୍ରତ୍ୟୟୈକତାନତା ଧ୍ୟାନମ୍' ଅର୍ଥାତ୍ ଧାରଣାରେ ଜ୍ଞାନ ଏକାକାର ହୋଇ ରହିଲେ ତାହାକୁ ଧ୍ୟାନ କୁହାଯାଏ । ସେହି ପରି ଧ୍ୟାନ ସମ୍ପର୍କରେ ଯେତେବେଳେ ଧ୍ୟାତା ଶୂନ୍ୟରୂପ ହୋଇଯାଏ ଓ ଧ୍ୟେୟ ହିଁ ପ୍ରକାଶିତ ଥାଏ, ତାହା ସମାଧି ଅଟେ—'ତଦେବାର୍ଥ ମାତ୍ର ନିର୍ଭାସଂ ସ୍ୱରୂପ ଶୂନ୍ୟମିବ ସମାଧି' । ଚିତ୍ତକୁ ଏକାଗ୍ର କରିବା ପାଇଁ ଦେହର ନାଭିଚକ୍ର, ହୃଦସ୍ଥ କମଳ, ଭ୍ରୂମଧ୍ୟ, ନାସିକା ତଥା ଜିହ୍ୱାର ଅଗ୍ରଭାଗ ଆଦି ସ୍ଥଳ ପ୍ରସିଦ୍ଧ ଅଟେ । କିନ୍ତୁ 'ଯଥାଭିମତଧ୍ୟାନଦ୍ୱା' ଅର୍ଥାତ୍ ଇଚ୍ଛାନୁଯାୟୀ ଯେ କୌଣସି ବସ୍ତୁଠାରେ ଧ୍ୟାନ କଲେ ମନ ସ୍ଥିର ହୋଇପାରେ ବୋଲି ଯୋଗଦର୍ଶନରେ କୁହାଯାଇଛି । ଉପର୍ଯୁକ୍ତ ଯୁକ୍ତିକୁ କେନ୍ଦ୍ରକରି ମୂର୍ତ୍ତିପୂଜକମାନେ ମୂର୍ତ୍ତିଠାରେ ଧ୍ୟାନ କରିବାର ଯଥାର୍ଥତା ଦର୍ଶାଇଥାନ୍ତି । କିନ୍ତୁ ବାହ୍ୟ ବସ୍ତୁଠାରେ ଧ୍ୟାନ କଲେ ସେହି ବସ୍ତୁର ଜ୍ଞାନପ୍ରାପ୍ତି ସମ୍ଭବ କିନ୍ତୁ ପରମାତ୍ମାଙ୍କର ନୁହେ । ଯୋଗସାଧନର ସମାଧି ଅବସ୍ଥା ପାଇଁ ବାହ୍ୟ ବସ୍ତୁରେ ଧ୍ୟାନ କରିବା ବିଘ୍ନ ଅଟେ ।

ଯୋଗଦର୍ଶନ ଓ ସାଂଖ୍ୟଦର୍ଶନରେ ଧ୍ୟାନର ଦୁଇଟି ଲକ୍ଷଣ କୁହାଯାଇଛି । ପରମାତ୍ମାଙ୍କ ଧ୍ୟାନ ବିଷୟରେ ସାଂଖ୍ୟଦର୍ଶନରେ ଲେଖାଅଛି—'ଧ୍ୟାନଂ ନିର୍ବିଷୟଂ ମନଃ' ଅର୍ଥାତ୍ ସଂପୂର୍ଣ୍ଣ ସାଂସାରିକ ବିଷୟଗୁଡ଼ିକରୁ ମନକୁ ଦୂରେଇ ନେବାର ନାମ ଧ୍ୟାନ ଅଟେ । ଈଶ୍ୱରଙ୍କଠାରେ ଧ୍ୟାନ କଲେ ଈଶ୍ୱରଙ୍କର, ଜୀବଠାରେ ଧ୍ୟାନ କଲେ ଜୀବର ତଥା ପ୍ରାକୃତିକ ବସ୍ତୁଠାରେ ଧ୍ୟାନ କଲେ ସେହି ବାହ୍ୟ ବସ୍ତୁର ଜ୍ଞାନ ପ୍ରାପ୍ତ ହୁଏ । ଯୋଗଦର୍ଶନରେ କୁହା ଯାଇଛି—'ନାଭିଚକ୍ରେ କାୟବ୍ୟୂହ ଜ୍ଞାନମ୍' ଅର୍ଥାତ୍ ନାଭିଚକ୍ରରେ ଧ୍ୟାନ, ଧାରଣା ଓ ସମାଧି

କଲେ ଶରୀର ଗଠନର ସମ୍ୟକ୍ ଜ୍ଞାନ ଲାଭ ହୁଏ । ସେହିପରି 'ସୂର୍ଯ୍ୟେ ସଂଯମାତ୍ ଭୁବନ ଜ୍ଞାନମ୍' ଅର୍ଥାତ୍ ସୂର୍ଯ୍ୟଠାରେ ସଂଯମ କଲେ ଭୁବନର ଜ୍ଞାନ ପ୍ରାପ୍ତ ହୁଏ । 'କଣ୍ଠକୂପେ କ୍ଷୁତ୍ପିପାସାନିବୃତ୍ତି' — ଅର୍ଥାତ୍ କଣ୍ଠ କୂପର ନାଡ଼ିରେ ସଂଯମ କଲେ କ୍ଷୁଧା-ପିପାସାର ନିବୃତ୍ତି ହୁଏ । ଏହିପରି ଅନେକ ସୂତ୍ରରେ ବିଭିନ୍ନ ଉପାୟଦ୍ୱାରା ବହୁ ବୈଜ୍ଞାନିକ ସିଦ୍ଧି ତଥା ବିଦ୍ୟାପ୍ରାପ୍ତି ବିଷୟ ଉଲ୍ଲେଖ କରାଯାଇଛି । ଏହି ସିଦ୍ଧି ଗୁଡ଼ିକଦ୍ୱାରା ବାହ୍ୟଜ୍ଞାନ ଲାଭ ହୁଏ କିନ୍ତୁ ଈଶ୍ୱର ପ୍ରାପ୍ତି ପାଇଁ ଏଗୁଡ଼ିକ ଯଥେଷ୍ଟ ନୁହେଁ । ଏଥିରୁ ପ୍ରଶିତ ହୁଏ ଯେ ମୂର୍ତ୍ତିପୂଜାଦ୍ୱାରା ମୂର୍ତ୍ତିର ଗଠନବିଧି, ସୁନ୍ଦରତା, କଳା ଓ ଐତିହାସିକ ଘଟଣାବଳୀର ଜ୍ଞାନ ମିଳେ ; ଈଶ୍ୱରଙ୍କର ନୁହେଁ ।

ବର୍ତ୍ତମାନ ଯୁଗର ବୈଜ୍ଞାନିକ ଆବିଷ୍କାରଗୁଡ଼ିକ ଚିତ୍ତର ସଂଯମ ଓ ଏକାଗ୍ରତାର ଫଳ ଅଟେ । ପାଶ୍ଚାତ୍ୟ ଦେଶଗୁଡ଼ିକରେ ଯୋଗ ବିଦ୍ୟା ପ୍ରସିଦ୍ଧ ଲାଭ କରୁଥିବା ବେଳେ, ତାହାର ଉତ୍ପତ୍ତିସ୍ଥଳ ଭାରତ ବର୍ଷରେ ତାହାର ହ୍ରାସ ଘଟୁଅଛି । ଆସନ, ପ୍ରାଣାୟାମ, ଧ୍ୟାନ ଆଦି ଯୌଗିକ କ୍ରିୟାଗୁଡ଼ିକ ପାଶ୍ଚାତ୍ୟ ଦେଶବାସୀଙ୍କୁ ଶାନ୍ତି ଓ ଆନନ୍ଦ ପ୍ରଦାନ କରୁଥିବାବେଳେ ଆମ ଦେଶର ସେ ସବୁର ସ୍ଥାନରେ ମୂର୍ତ୍ତିପୂଜା, ଅବତାର କଳ୍ପନା ଆଦି ଅବୈଦିକ ବିଧାନ ସ୍ଥାନ ପାଇଛି । ପ୍ରାଚୀନ ଋଷିମାନେ କହିଥିଲେ ଯେ ପରମାତ୍ମା ହିଁ ସ୍ଥାୟୀ ସୁଖ ଓ ଆନନ୍ଦର ସ୍ରୋତ । ତେଣୁ ଚିତ୍ତର ଏକାଗ୍ରତା ଭୌତିକ ବସ୍ତୁଠାରେ ନ ରଖି ଅନ୍ତରାତ୍ମା ପରମାତ୍ମାଙ୍କଠାରେ ରଖିବା ଉଚିତ । ଯୋଗୀ ପାଇଁ ବାହ୍ୟ ବସ୍ତୁରେ ବା ଦେହର କୌଣସି ଅଙ୍ଗରେ ମନ ସ୍ଥିର କରି ସିଦ୍ଧିଲାଭ କରିବା ଈଶ୍ୱରପ୍ରାପ୍ତିର ମାର୍ଗରେ ବାଧକ ଅଟେ । ଚିତ୍ତ ଏକାଗ୍ର ହେଲେ ଚିରସ୍ଥାୟୀ ସୁଖ ପ୍ରାପ୍ତ ହୁଏ ନାହିଁ । କାରଣ ବାହ୍ୟ ବିଷୟରେ ମଧ୍ୟ ତାହାକୁ କିଛି ସମୟ ଏକାଗ୍ର କରି ପାରିଲେ ସାମୟିକ

ସୁଖ ମିଳେ । ଯେତେବେଳେ ପର୍ଯ୍ୟନ୍ତ ମନ ପ୍ରାକୃତିକ ବସ୍ତୁଠାରେ ଲିପ୍ତ ଥାଏ, ସେ ପର୍ଯ୍ୟନ୍ତ ପରମ ଆନନ୍ଦ ମିଳେ ନାହିଁ । ଏହି କ୍ଷେତ୍ରରେ ଈଶ୍ୱରପ୍ରାପ୍ତିର ମାର୍ଗରେ ମୂର୍ତ୍ତିପୂଜାର କୌଣସି ଭୂମିକା ନାହିଁ । ଯୋଗଦର୍ଶନର କୌଣସି ପ୍ରାଚୀନ ଭାଷ୍ୟକାର ଏହାକୁ ଧ୍ୟାନଯୋଗ୍ୟ ବିଷୟ ଭାବରେ ଗଣନା କରି ନାହାନ୍ତି ।

ମେସ୍‌ମେରିଜମ୍ ଯୋଗର ଏକ ବିକୃତ ରୂପ ଅଟେ । ଏଥିରେ ଏକ ଗୋଲାକାର ସ୍ଥଳକୁ ଦୂରରେ ରଖି ଧ୍ୟାନ କରାଯାଏ । ଧୀରେ ଧୀରେ ଅଭ୍ୟାସଦ୍ୱାରା ସେହି ସ୍ଥଳକୁ ସଂକୀର୍ଣ୍ଣ କରାଯାଏ । ପରିଶେଷରେ ତାହା ଦୃଶ୍ୟ ହୁଏ ନାହିଁ । ମନକୁ କେନ୍ଦ୍ରୀଭୂତ କରିବା ପାଇଁ ସୂକ୍ଷ୍ମରୁ ସୂକ୍ଷ୍ମତର ବସ୍ତୁର ଆବଶ୍ୟକତା ରହିଛି । ତଦ୍ୱାରା ମନ ଇତସ୍ତତଃ ହେବାପାଇଁ ସୁଯୋଗ ପାଏ ନାହିଁ । ପରନ୍ତୁ ପ୍ରତିମା ପୂଜା ସମୟରେ ମୂର୍ତ୍ତିର ଅବୟବ, ବେଶଭୂଷା, ନିର୍ମାଣ ଶୈଳୀ ଆଦି ମନକୁ ଚଞ୍ଚଳ କରିଦିଏ । କୌଣସି ମହାପୁରୁଷଙ୍କ ପ୍ରତିମୂର୍ତ୍ତି ତାଙ୍କ ଐତିହାସିକ ଘଟଣାବଳୀର ସ୍ମୃତି ଆଣିଦିଏ । ତଦ୍ୱାରା ମନ ଅସ୍ଥିର ହେବା ସ୍ୱାଭାବିକ ହୋଇପଡ଼େ । ଏପରି ଭାବରେ ସାଧକ ନିଜର ଉଦ୍ଦେଶ୍ୟ ସିଦ୍ଧ କରି ନ ପାରି ସେଥିରୁ ଦୂରେଇ ଯାଏ । ତେଣୁ ଯୋଗ ସାଧନର ବିକଳ୍ପ ରୂପରେ ମୂର୍ତ୍ତିପୂଜାକୁ ଗ୍ରହଣ କରିବା ଅନିଷ୍ଟ-କାରକ । ଯୋଗ ସହିତ ଏହି ପୂଜାବିଧିର ସମ୍ବନ୍ଧ ସ୍ଥାପନ କରିବାପାଇଁ ପ୍ରଯତ୍ନ ଅନୁଚିତ । ତାହା ସ୍ୱାର୍ଥପୂର୍ଣ୍ଣ ସାଂପ୍ରଦାୟିକ ପ୍ରବୃତ୍ତି ଅଟେ । ପ୍ରାଚୀନ ଯୋଗବିଧି ଉପାସନାପାଇଁ ଏକ ସଂପୂର୍ଣ୍ଣ ସୃଷ୍ଟିର ମାର୍ଗ । ତାହା ଅନୁସରଣ କରି ସାଧାରଣ ବ୍ୟକ୍ତିଠାରୁ ଉଚ୍ଚ ବିଦ୍ୱାନ୍ ପର୍ଯ୍ୟନ୍ତ ସମସ୍ତେ ଉପକୃତ ହୋଇ ପାରନ୍ତି ।

—o—

# ମୂର୍ତ୍ତିପୂଜା : ଶଂକା ସମାଧାନ

ମୂର୍ତ୍ତିପୂଜା କେବେଠାରୁ ପ୍ରଚଳିତ ହେଲ, ଏହି ପ୍ରଥା କିଏ ଆରମ୍ଭ କଲେ ତଥା ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏହାର ସମର୍ଥନ ମିଳେ କି—ଏ ବିଷୟରେ ଆଲୋଚନା କରିବା ପାଇଁ ମୂର୍ତ୍ତିପୂଜକମାନେ ଉତ୍ସାହୀ ନାହାନ୍ତି । ଏହା ନ ଜାଣି ଏହି ପ୍ରଣାଳୀର ସପକ୍ଷରେ କେତେକ ଯୁକ୍ତି ବାଢ଼ିଥାନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ପ୍ରଥାକୁ ପ୍ରାଚୀନ ପରମ୍ପରା ବିବେଚନା କରି ଶ୍ରଦ୍ଧା ଓ ବିଶ୍ୱାସ ସହିତ ଅନୁସରଣ କରନ୍ତି । ମୂର୍ତ୍ତି ସ୍ୱୟଂ ଈଶ୍ୱରଙ୍କର କି ଅଥବା ସେଥିରେ ପ୍ରାଣପ୍ରତିଷ୍ଠାଦ୍ୱାରା ଐଶ୍ୱରୀୟ ଶକ୍ତି ସନ୍ନିବିଷ୍ଟ କରାଯାଇଛି, ସେମାନେ ଏହି ବିଷୟ ବିଚାରନ୍ତି ନାହିଁ । ମୂର୍ତ୍ତି କୌଣସି ଦେବତାଙ୍କର ବା ଅବତାରଙ୍କର ଏହା ବୁଝିବାରେ ସେମାନଙ୍କର ପ୍ରୟୋଜନ ନ ଥାଏ । ସେ ସେମାନଙ୍କର ପ୍ରାର୍ଥନା ଶୁଣିବାରେ ସକ୍ଷମ କି ନୁହେ—ଏହା ଚିନ୍ତା କରିବା ପାଇଁ ସେମାନଙ୍କର ଇଚ୍ଛା ନ ଥାଏ । ଏହି ପ୍ରଣାଳୀକୁ ସେମାନେ ଈଶ୍ୱର-ଉପାସନା ବୋଲି ବିଶ୍ୱାସ କରନ୍ତି । ଏହା ସମ୍ବନ୍ଧରେ କୌଣସି ବିବାଦରେ ପଡ଼ିବା ସେମାନେ ଉଚିତ ମଣନ୍ତି ନାହିଁ । ସେମାନଙ୍କ ବିଚାରରେ ତର୍କ ଓ ବୁଦ୍ଧିବାଦ ଧର୍ମର ପ୍ରତିପକ୍ଷୀ । ଭକ୍ତି ଓ ତର୍କ—ଏହି ଦୁଇ ପରସ୍ପର ବିରୋଧୀ । ତେଣୁ ସେମାନେ ବ୍ୟର୍ଥ ବିରୋଧରେ ପଡ଼ି ମନକୁ କଷ୍ଟ ଦିଅନ୍ତି ନାହିଁ ।

ସେମାନଙ୍କ ପୂର୍ବଜ ଯାହା କରି ଆସୁଛନ୍ତି, ସେଥିରେ ସେମାନେ ସନ୍ତୁଷ୍ଟ । ଏହି ବିଷୟରେ ଅଧିକ ପ୍ରଶ୍ନ କଲେ ସେମାନେ ସରଳତାପୂର୍ବକ ନିଜର ଅନଭିଜ୍ଞତା ସ୍ୱୀକାର କରନ୍ତି । ଅନ୍ଧକାରରେ

ଅଣ୍ଡାଳି ହୋଇ ସନ୍ତୁଷ୍ଟ ରହିବା ବ୍ୟକ୍ତିର ଦଶା ଯାଏ, ଏମାନଙ୍କର ଅବସ୍ଥା ଠିକ୍ ସେହିପରି । ସୁପ୍ରସିଦ୍ଧ ଦାର୍ଶନିକ ପଣ୍ଡିତ ଗଙ୍ଗାପ୍ରସାଦ ଉପାଧ୍ୟାୟ ଏହି ପ୍ରକାର ବ୍ୟକ୍ତି ବିଷୟରେ ବର୍ଣ୍ଣନା କରିଛନ୍ତି—

"ସେ (ମୂର୍ତ୍ତିପୂଜକ) ଅନ୍ଧକାର ମଧ୍ୟରେ ଥାଏ ଓ ସେଥିରେ ରହିବା ପାଇଁ ଇଚ୍ଛା କରେ । ସେ ଆଲୋକ ଲୋଡ଼େ ନାହିଁ । କଥାବାର୍ତ୍ତା କରି ଏ ସମ୍ବନ୍ଧରେ କିଛି ବୁଝାଇଲେ, ତାହାକୁ ରୁଚିକର ବୋଧ ହୁଏ ନାହିଁ ଓ ସେ ବିରକ୍ତି ପ୍ରକାଶ କରେ । ତାର ଉପରେ ଯେ ତାତ୍ତ୍ୱିକ ଅନୁଶୀଳନ କଲେ ସେ ମୂର୍ତ୍ତିପ୍ରତି ଅବିଶ୍ୱାସ ପୋଷଣ କରିବ । ତେଣୁ ସେ ସେଥିରୁ ଦୂରରେ ରହିବା ପାଇଁ ଇଚ୍ଛା କରେ । ତର୍କବିତର୍କ କରିବା ଯୋଗ୍ୟତା ଥିଲେ ସୁଦ୍ଧା ସେ ସେଥିରେ ପଶେ ନାହିଁ । ମୂର୍ତ୍ତିପୂଜକଙ୍କ ମଧ୍ୟରେ ଖ୍ୟାତ ତାର୍କିକ ବୁଦ୍ଧିସମ୍ପନ୍ନ ଆଇନଜୀବୀ, ସୂକ୍ଷ୍ମ ଦୋଷଦର୍ଶନ ତର୍କଶାସ୍ତ୍ରର ପ୍ରବୀଣ ଅଧ୍ୟାପକ, ଗୁହ୍ୟ ବିଷୟକୁ ଧରି ପାରୁଥିବା ବିଚକ୍ଷଣ ରାଜନୈତିକ ବ୍ୟକ୍ତି, ସଂସାରର ସବୁ ବାଣିଜ୍ୟ ବ୍ୟବସାୟକୁ ଦୃଷ୍ଟିରେ ରଖିପାରିଥିବା କୁଶଳ ବଣିକ, ଶୋଷକବର୍ଗକୁ ଭଲ ଭାବରେ ବୁଝି ପାରୁଥିବା ଅର୍ଥନୀତିଜ୍ଞ, ଆକାଶର ଜ୍ୟୋତିଷ୍କମାନଙ୍କୁ ସ୍ପଷ୍ଟ ଭାବରେ ବୁଝି ପାରୁଥିବା ଜ୍ୟୋତିଷୀ, ଗଣିତ ବିଦ୍ୟାର ସୂକ୍ଷ୍ମ ତତ୍ତ୍ୱରେ ପ୍ରବେଶ କରିଥିବା ଗଣିତଜ୍ଞ—ଏଭଳି ବୁଦ୍ଧିମାନ ବ୍ୟକ୍ତି ରହିଛନ୍ତି । ଏମାନେ ଅନ୍ୟମାନଙ୍କ ସହିତ ଅନିଶ୍ଚିତ ବୁଦ୍ଧି ଓ ଭକ୍ତି ଭାବନା ସହିତ ମୂର୍ତ୍ତିପୂଜା କରୁଥିବା ଦେଖାଯାଏ ।" †

---

† He is in the dark and wishes to remain in the dark. He does not want light. If you throw any beam of light upon him by interrogation, he resents it and shudders.

ଉଲ୍ଲିଖିତ ଉଦାହରଣ ମୂର୍ତ୍ତିପୂଜକଙ୍କ ମନୋବୃତ୍ତିକୁ ଉତ୍ତମ ଭାବରେ ପ୍ରକାଶ କରେ । ଅନେକେ ମୂର୍ତ୍ତିପୂଜା ସପକ୍ଷରେ ଶୁଷ୍କ ଦାର୍ଶନିକ ଯୁକ୍ତି ଗୁଡ଼ିଏ ପରିବେଷଣ କରନ୍ତି । ପରନ୍ତୁ ମନ୍ଦିର ମଧ୍ୟରେ ପୂଜା ଆରାଧନା କରିବାବେଳେ ସେମାନଙ୍କ ତର୍କବିତର୍କର କୌଣସି

---

at it. He feels that mental analysis might make him a renegrade and therefore he avoids it. Not that he cannot reason. Among idolators you will find best lawyers whose legal acumen is awe inspiring, professors of logic whose fallacy detecting capacity is unquestionable, shrewd politicians who clearly see the invisible forces working in the domain of world politics, traders from whose keen eye no corner of the world market is hidden, financiers who can successfully combat the dodges of exploiters, astronomers whose knowledge of the heavenly bodies is much more clear than of their own house, and mathematicians well-versed in the intricacies of mathematical calculations. They are all intellectuals and you will find them worshipping in temples as devoutedly as their uneducated brothers and sisters, side by side with them and as vaguely too.

ଆଧାର ନ ଥାଏ । ଦାର୍ଶନିକ, ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ଯୁକ୍ତି-ଗୁଡ଼ିକ ବାଣୀରେ ହିଁ ସୀମାବଦ୍ଧ ଥାଏ ।

ଏଭଳି ଅନେକ ଲୋକ ଅଛନ୍ତି ଯେଉଁମାନେ ମୂର୍ତ୍ତିପୂଜାର ଦୋଷତ୍ରୁଟି ବୁଝିଲେ ସୁଦ୍ଧା ସ୍ୱାର୍ଥବଶତଃ ଅର୍ଥହୀନ ଯୁକ୍ତିମାନ କରିଥାନ୍ତି । ଜୀବିକା କାରଣରୁ ସେମାନେ ଜାଣି ବୁଝି ଏହା କରନ୍ତି । ଏହି ଅଧ୍ୟାୟରେ ମୂର୍ତ୍ତିପୂଜା ସପକ୍ଷରେ କରା ଯାଉଥିବା କେତେକ ଯୁକ୍ତି ବିଷୟରେ ଆଲୋଚନା କରା ଯାଉଅଛି ।

—୧—

"ଈଶ୍ୱର ଅନନ୍ତ ଓ ଆମ୍ଭେମାନେ ସୀମାବଦ୍ଧ । ସୀମାବଦ୍ଧ ଜୀବ ଅନନ୍ତ ପରମାତ୍ମାଙ୍କ ବାସ୍ତବିକ ସ୍ୱରୂପ ବୁଝିବାରେ ଅକ୍ଷମ । ତେଣୁ ମୂର୍ତ୍ତିପୂଜାଦ୍ୱାରା ଅନନ୍ତ ପରମାତ୍ମାଙ୍କୁ ସୀମାବଦ୍ଧ କରି ତାହାଙ୍କ ଆଶ୍ରୟ ପ୍ରାପ୍ତି ପାଇଁ ଉଦ୍ୟମ କରାଯାଏ ।"

ପରମାତ୍ମା ଅନନ୍ତ । ସେ ସବୁ କାଳରେ ଅନନ୍ତ ହୋଇ ରହନ୍ତି । ମୂର୍ତ୍ତିଦ୍ୱାରା ତାହାଙ୍କୁ ପରିମିତ କରିବା କଳ୍ପନା ହାସ୍ୟାସ୍ପଦ । ଯେଉଁ ବସ୍ତୁ ଯେଉଁପରି, ତାହାକୁ ସେହିପରି ବୁଝିବା ଜ୍ଞାନ ଅଟେ । ତାହାର ବିପରୀତ ଅଜ୍ଞାନ । ଉପାସନା କହିଲେ ସେହି ଅନନ୍ତ ପରମାତ୍ମାଙ୍କ ଅନ୍ୱେଷଣ । ମୂର୍ତ୍ତିଦ୍ୱାରା ଆମ୍ଭେମାନେ ମୂର୍ତ୍ତି ସମ୍ବନ୍ଧରେ ହିଁ ଜ୍ଞାନଲାଭ କରିପାରୁ ; ଅନନ୍ତ ପରମାତ୍ମାଙ୍କ ସମ୍ବନ୍ଧରେ ନୁହେ । ମୂର୍ତ୍ତିପୂଜକ ସେହିପରି ରହେ; ଅଗ୍ରସର ହୋଇ ପାରେ ନାହିଁ ।

ସୀମାଯୁକ୍ତ ମନୁଷ୍ୟ ଅନନ୍ତ ପରମାତ୍ମାଙ୍କୁ ଅନୁଭବ କରି ପାରେ ନାହିଁ—ଏଭଳି କହିବା ଶବ୍ଦଜାଲ ମାତ୍ର । ପୁଣି ତାହାଙ୍କୁ ଉପଲବ୍ଧି

କଲେ ସେ ସୀମାବଦ୍ଧ ହୋଇଯାଆନ୍ତି—ଏହା ମଧ୍ୟ ଅସତ୍ୟ । ପକ୍ଷୀ ଅନନ୍ତ ଆକାଶରେ ଉଡ଼ି ଉଡ଼ି ସୀମା ପାଏ ନାହିଁ । ସେ ବୁଝେ ସେ ଆକାଶ ଅନନ୍ତ । ଜୀବ ସେହିପରି ପରମାତ୍ମାଙ୍କ ଅନ୍ତ ନ ପାଇ କ୍ଲାନ୍ତ ହୁଏ, ଅର୍ଥାତ୍ ଅନନ୍ତତ୍ୱ ଅନୁଭବ କରେ । ଉପାସନାର ଅର୍ଥ ପରମାତ୍ମାଙ୍କ ଅନନ୍ତତ୍ୱ ବୁଝିବା । ତାହାଙ୍କ ସମ୍ବନ୍ଧରେ ସବୁ କିଛି ଜାଣିବା ସମ୍ଭବ ନୁହେ । ଆମର ବିକାଶ ପାଇଁ ଯେତିକି ଆବଶ୍ୟକ, ତାହାଙ୍କ ସମ୍ବନ୍ଧରେ ସେତିକି ଜାଣିବା ଯଥେଷ୍ଟ । ତାଙ୍କୁ ଜାଣିବା ପାଇଁ ତାଙ୍କଠାରେ ବିପରୀତ ବିରୁଦ୍ଧ ଗୁଣ ଆରୋପ କରିବା ଉଚିତ ନୁହେ । ତାଙ୍କ ସମ୍ବନ୍ଧରେ ଆମେ କିଛି ଜାଣି ନାହୁଁ କହିବା ଅସତ୍ୟ । ସେହିପରି ତାଙ୍କ ସମ୍ବନ୍ଧରେ ଆମର ସମ୍ପୂର୍ଣ୍ଣ ଜ୍ଞାନ ଅଛି କହିବା ଭ୍ରାନ୍ତି ଅଟେ ।

—୨—

"ଈଶ୍ୱର ନିରାକାର । ନିରାକାର ଅଦୃଷ୍ଟ । ତେଣୁ ତାହାଙ୍କ ମୂର୍ତ୍ତି ନିର୍ମାଣ କରାଯାଏ ଯଦ୍ଦ୍ୱାରା ଆମ୍ଭମାନଙ୍କର ପ୍ରଭୁଦର୍ଶନର ଲାଳସା ଚରିତାର୍ଥ ହୁଏ ।"

ଶବ୍ଦ ଅଥବା ପ୍ରତିମା କୌଣସି ଆକାର ବସ୍ତୁର ସମ୍ଭବ । କୌଣସି ମୂର୍ତ୍ତିଦର୍ଶନଦ୍ୱାରା ସେହି ମୂର୍ତ୍ତିର ଆକାର ଓ ରୂପରଙ୍ଗ ପରି-ଦୃଷ୍ଟ ହୁଏ ; ପରମାତ୍ମାଙ୍କର ନୁହେ । ମୂର୍ତ୍ତିଦର୍ଶନ ଈଶ୍ୱର ଦର୍ଶନ ନୁହେ ; ତାହା ମୂର୍ତ୍ତିଦର୍ଶନ । ଯେଉଁମାନେ ମୂର୍ତ୍ତିଦର୍ଶନ କରି ପର-ମାତ୍ମାଙ୍କୁ ଦେଖିଛନ୍ତି ବୋଲି ଭାବନ୍ତି, ସେମାନେ ସତ୍ୟର ବହୁ ଦୂରରେ ଥାଆନ୍ତି । ଧର୍ମଶାସ୍ତ୍ରମାନଙ୍କରେ ଉଲ୍ଲେଖ ଥିବା ଈଶ୍ୱରଦର୍ଶନର ଅର୍ଥ ହେଉଛି ଆତ୍ମବୋଧ । ତାହା ଚର୍ମଚକ୍ଷୁରେ ଦେଖିବା ନୁହେ ।

ଯାହାଙ୍କୁ ଚର୍ମଚକ୍ଷୁରେ ଦେଖି ହୁଏ ନାହିଁ ତାହାଙ୍କୁ ଦେଖିବା ପାଇଁ; ଯାହାଙ୍କୁ କାନରେ ଶୁଣି ହୁଏ ନାହିଁ ତାହାଙ୍କୁ ଶୁଣିବା ପାଇଁ ମନୁଷ୍ୟ ଅଜ୍ଞତାବଶତଃ ବ୍ୟାକୁଳ ହୁଏ । ସତ୍ୟଦ୍ରଷ୍ଟା ଋଷି କହିଛନ୍ତି 'ଅଶବ୍ଦମସ୍ପର୍ଶମରୂପମବ୍ୟୟମ୍' (କଠୋପନିଷଦ) ଅର୍ଥାତ୍ ସେ ଶବ୍ଦ, ସ୍ପର୍ଶ ରୂପାଦି ବିଷୟ ନୁହନ୍ତି । ଈଶ୍ୱରଦର୍ଶନ ନାମରେ ସଂପ୍ରଦାୟ-ବାଦୀମାନେ ନାନା ଭ୍ରାନ୍ତି ସୃଷ୍ଟି କରିଛନ୍ତି । ପୁରାଣ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଅଛି ଯେ ଭକ୍ତମାନେ ଶରୀରଯୁକ୍ତ ଭଗବାନଙ୍କୁ ଦେଖିଛନ୍ତି । ଅନେକ ସନ୍ଥ ସମ୍ବନ୍ଧରେ ଏଭଳି ଦନ୍ତକଥା ପ୍ରଚଳିତ ଅଛି । କୋରାନରେ ବର୍ଣ୍ଣିତ ଅଛି ମହମ୍ମଦ ଘୋଡ଼ା ଉପରେ ଚଢ଼ି ସ୍ୱର୍ଗକୁ ଯାଇ ଈଶ୍ୱରଙ୍କ ସହିତ ବାର୍ତ୍ତାଳାପ କରିଥିଲେ, ପରନ୍ତୁ ଏ ସବୁ କଳ୍ପନା ମାତ୍ର । ବହୁ ଲୋକ ଏଭଳି ଭ୍ରମରେ ପଡ଼ି ଠକି ହୁଅନ୍ତି । ଅନେକ ସମୟରେ କେତେକ ଗୁରୁ ଶିଷ୍ୟମାନଙ୍କୁ ଆଖି ବନ୍ଦ କରାଇ ଇଷ୍ଟ ଦେବତାଙ୍କ ଦର୍ଶନ ମିଳୁଛି କି ନାହିଁ ପ୍ରଶ୍ନ କରନ୍ତି । ଆଖି ବନ୍ଦ କଲେ ମଧ୍ୟା ଦୃଷ୍ଟିଶକ୍ତି ଅନ୍ତର୍ମୁଖୀ ହୋଇ ଅସ୍ପଷ୍ଟ ଦୃଶ୍ୟମାନ ଦେଖା-ଯାଏ । ଶିଷ୍ୟମାନେ ତାହାକୁ ଦେବତା ଦର୍ଶନ ବୋଲି ମନେନ୍ତି । ସେହିପରି କାନକୁ ଆଙ୍ଗୁଠି ଆଦି ଦ୍ୱାରା ବନ୍ଦ କଲେ ବାହ୍ୟ ଶବ୍ଦ ନ ଶୁଭିଲେ ମଧ୍ୟା ଆନ୍ତରିକ ଶବ୍ଦ ଶୁଣାଯାଏ । ତାହାକୁ କେହି କେହି ଐଶ୍ୱରୀୟ ବାଣୀ ବୋଲି ପ୍ରଚାର କରନ୍ତି । ପ୍ରକୃତ ପକ୍ଷରେ ରୂପ ଓ ଶବ୍ଦ ଉଭୟ ଭୌତିକ ବସ୍ତୁ । ମୁହୁର୍ମୁହୁ କୌଣସି ଚିତ୍ର ବା ମୂର୍ତ୍ତି ଦର୍ଶନ କଲେ ସ୍ୱପ୍ନାବସ୍ଥାରେ ମଧ୍ୟ ତାହା ଦିଶେ । ଏହାକୁ ମଧ୍ୟ କେହି କେହି ଦେବତା ଦର୍ଶନ କହିଥାନ୍ତି । ଯେ ପର୍ଯ୍ୟନ୍ତ ଈଶ୍ୱରଙ୍କ ସମ୍ବନ୍ଧରେ ଯଥାର୍ଥ ଜ୍ଞାନ ପ୍ରଚାର କରା ନ ଯାଏ, ସ୍ୱାର୍ଥୀ ଓ ଅଜ୍ଞ ଲୋକେ ଏଭଳି ବିଭିନ୍ନ ପ୍ରଚାର କରି ସଂପ୍ରଦାୟ ବୃଦ୍ଧି କରନ୍ତି ।

—ଗ—

"ମୂର୍ତ୍ତି ଈଶ୍ୱରଙ୍କ ଆକୃତି ନୁହେଁ ଏହା ସତ୍ୟ ହେଲେ ସୁଦ୍ଧା ମନକୁ ଏକାଗ୍ର କରିବା ପାଇଁ ମୂର୍ତ୍ତିର ଆବଶ୍ୟକତା ରହିଛି । ଚଞ୍ଚଳ ମନ ସାକାର ବସ୍ତୁରେ ସ୍ଥିର ରହେ ; ନିରାକାରରେ ନୁହେଁ । ଏହି କାରଣରୁ ହିନ୍ଦୁମାନେ ରାମକୃଷ୍ଣାଦି ମହାପୁରୁଷଙ୍କ ମୂର୍ତ୍ତି ନିର୍ମାଣ କରି ପୂଜା କରନ୍ତି ।"

ସାକାର ବସ୍ତୁରେ ମନ ସ୍ଥିର ରହୁଥିଲେ, ସଂସାରର ସମସ୍ତଙ୍କ ମନ ସ୍ଥିର ହୋଇଯାନ୍ତା । କାରଣ ସମସ୍ତ ସଂସାର ସାକାର ଅଟେ । ପରନ୍ତୁ ତାହାର ବିପରୀତ ଦେଖାଯାଏ । ମନୁଷ୍ୟ ଯେତିକି ସାଂସାରିକ କାର୍ଯ୍ୟରେ ଲିପ୍ତ ରହେ, ତାହାର ମନ ସେତିକି ବିକ୍ଷିପ୍ତ ହୁଏ । ମନୁଷ୍ୟ ଯେତେବେଳେ ନିର୍ବିଷୟ ହୋଇ ଈଶ୍ୱରଚିନ୍ତନ କରେ, ତାହାର ମନ ସେତିକି ନିଶ୍ଚଳ ହୁଏ । ତେଣୁ ମୂର୍ତ୍ତି କଦାପି ମନକୁ ସ୍ଥିର କରିବା ପାଇଁ ସାଧନ ହୋଇ ନ ପାରେ । ମୂର୍ତ୍ତିପୂଜକ ମୂର୍ତ୍ତିର ସମସ୍ତ ବିଷୟର କଳ୍ପନା କରେ । ସେ ମୂର୍ତ୍ତିର ରୂପ ଦେଖେ । ମୂର୍ତ୍ତିକୁ ଦିଆଯାଉଥିବା ଭୋଗରୁ ରସ ପାଏ । ଧୂପ, ପୁଷ୍ପାଦି ସାମଗ୍ରୀରୁ ଗନ୍ଧ ଗ୍ରହଣ କରେ । ସେ ବିଶ୍ୱାସରେ ଯେ ମୂର୍ତ୍ତି ତାହାର ସାଷ୍ଟାଙ୍ଗ ଦଣ୍ଡବତ, ସ୍ତୁତିପ୍ରାର୍ଥନା ବୁଝୁଛନ୍ତି । ଉପାସକର ମନ ଏଭଳି ନାନା ବିଷୟରେ ଆସକ୍ତ ରହେ ।

ରାମଚନ୍ଦ୍ର, ଶ୍ରୀକୃଷ୍ଣ ଆଦି ମହାପୁରୁଷ ନିରାକାର ପରମେଶ୍ୱରଙ୍କ ଉପାସନା ପାଇଁ ସନ୍ଧ୍ୟାବନ୍ଦନ ଓ ଧ୍ୟାନ କରୁଥିଲେ । ସମୀପରେ ଥିବା ବନ୍ଧୁବାନ୍ଧବଙ୍କ ମାନସିକ ଚଞ୍ଚଳତାକୁ ଦୂର କରିବା ପାଇଁ ସେମାନେ କେତେକ ସମୟରେ ଅସମର୍ଥ ହୋଇଥିଲେ । ଶ୍ରୀରାମଙ୍କ ମନ ସୀତାଙ୍କ ବିଚ୍ଛେଦରେ ଅସ୍ଥିର ହୋଇଥିଲା । ଶ୍ରୀକୃଷ୍ଣଙ୍କ ଉପସ୍ଥିତିରେ ଅର୍ଜୁନଙ୍କ ମନ ଚଞ୍ଚଳ ହୋଇଥିଲା । ଯାଦବମାନେ ଶ୍ରୀକୃଷ୍ଣଙ୍କ ନିତ୍ୟ ଦର୍ଶନ କରି

ମଧ୍ୟ ବ୍ୟନଷ୍ଟ ହେଲେ । ଏପରି ସ୍ଥଳେ ସେମାନଙ୍କର ମୂର୍ତ୍ତିର ଦର୍ଶନ ଓ ପୂଜାଦ୍ୱାରା ଆତ୍ମାର ଉତ୍‌ଥାନ ହୁଏ ବୋଲି କପରି ସ୍ୱୀକାର କରାଯିବ ?

ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ସମ୍ବୋଧନ କରି ଗୀତାରେ କହିଛନ୍ତି—

ଚଂଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍ ଦୃଢ଼ମ୍ ।
ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୋରିବ ସୁଦୁଷ୍କରମ୍ ॥

—ହେ କୃଷ୍ଣ ! ମନ ନିଶ୍ଚିତ ଭାବରେ ଚଂଚଳ । ତାହା ଶରୀର ଓ ଇନ୍ଦ୍ରିୟଗୁଡ଼ିକୁ ଅସ୍ଥିର କରେ । ତାହା ଅତ୍ୟନ୍ତ ବଳବାନ୍ ଓ ଦୃଢ଼ । ତାହାର ନିଗ୍ରହ ବାୟୁ ସମାନ କଠିନ ।

ଶ୍ରୀକୃଷ୍ଣ ଏହାର ଉତ୍ତରରେ କହି ନ ଥିଲେ ଯେ ଅର୍ଜୁନ ତାହାଙ୍କଠାରେ ( ଶ୍ରୀକୃଷ୍ଣଙ୍କଠାରେ ) ମନ ସ୍ଥିର କଲେ, ତାହାର ଚଂଚଳତା ଦୂର ହେବ । ବରଂ ସେ କହିଥିଲେ—

ଅସଂଶୟଂ ମହାବାହୋ ମନୋଦୁର୍ନିଗ୍ରହଂ ଚଳମ୍ ।
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ॥

—ହେ ମହାବାହୋ ଅର୍ଜୁନ ! ମନ ଚଞ୍ଚଳ; ତେଣୁ ତାହାକୁ ସଂଯତ କରିବା କଠିନ । ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ତାହା ଶୃଂଖଳିତ ହୁଏ । ସାକ୍ଷାତ୍ କୃଷ୍ଣଙ୍କ ସମୀପରେ ରହି ସୁଦ୍ଧା ଅର୍ଜୁନଙ୍କ ମନ ଯେତେବେଳେ ନିଶ୍ଚଳ ହେଲା ନାହିଁ, ତାହାଙ୍କ ମୂର୍ତ୍ତି ଉପାସକର ମନ କପରି ଶାନ୍ତ ହେବ ?

—୪—

"ଈଶ୍ୱରଙ୍କ ସୃଷ୍ଟିରୁ ଆମ୍ଭେମାନେ ସ୍ରଷ୍ଟାଙ୍କ ବିଷୟ ବୁଝିପାରୁ । ମୂର୍ତ୍ତି କ'ଣ ଐଶ୍ୱରୀୟ ରଚନା ନୁହେ କି ? ତାହାଙ୍କୁ ଶ୍ରଦ୍ଧାପୂର୍ବକ ଦର୍ଶନ

କାଳେ ବ୍ୟାପକ ପରମାତ୍ମା ଓ ତାଙ୍କର ଅପାର ମହିମା ଜ୍ଞାତ ହୁଏ ।”

ମୃତ୍ତିକା, ପ୍ରସ୍ତର ଆଦି ଯେଉଁ ଉପାଦାନରେ ମୂର୍ତ୍ତି ଗଠିତ ହୁଏ, ସେ ସବୁ ଈଶ୍ବରଙ୍କ ରଚନା । ପରନ୍ତୁ ସେଥିରୁ ମୂର୍ତ୍ତିକାର ମୂର୍ତ୍ତି ଗଢ଼େ । ମୂର୍ତ୍ତିକୁ ଦେଖିଲେ ମୂର୍ତ୍ତିକାରର କୌଶଳ ମନେ ପଡ଼େ । ମୂର୍ତ୍ତି ଯେଉଁ ପଦାର୍ଥରେ ତିଆରି ଅଥବା ଯେଉଁ ପରମାତ୍ମା ସେ ସବୁ ପଦାର୍ଥ ସୃଷ୍ଟି କରିଛନ୍ତି, ସେ ସବୁ ପ୍ରତି ଆଦୌ ଦୃଷ୍ଟି ଯାଏ ନାହିଁ । ଆମ୍ଭେମାନେ ଚିତ୍ରକାରର ଚିତ୍ରକଳାକୁ ପ୍ରଶଂସା କରୁ । ଯାହାର ଚିତ୍ର ତାହା ସହିତ ସାଦୃଶ୍ୟ ଆଣିବା ପାଇଁ ଚିତ୍ରକାର ଚେଷ୍ଟା କରି କେତେ ନିଖୁଣ ଭାବରେ ନୈସର୍ଗିକତା ଫୁଟାଇଛନ୍ତି, ସେଥିପ୍ରତି ଆମର ଦୃଷ୍ଟି ଯାଏ । ନିଖୁଣ ଚିତ୍ରକୁ ଆମେ ସୁନ୍ଦର କହୁ । ତାହାକୁ ସ୍ୱାଭାବିକ କହୁ । ମାଟି, ପାଣି, ପଥର ଆଦି ଚିତ୍ରର ଉପାଦାନ ବିଗରେ କାହାର ମନ ଯାଏ ନାହିଁ ।

ଈଶ୍ବର-ବୋଧ ପାଇଁ ଆମ୍ଭେମାନେ ପ୍ରାକୃତିକ ରଚନାଗୁଡ଼ିକୁ ଦେଖିବା ଆବଶ୍ୟକ । ଯେଉଁଥିରେ ମନୁଷ୍ୟ ହସ୍ତକ୍ଷେପ କରି ନାହିଁ, ସେହି ଐଶ୍ବରୀୟ ପଦାର୍ଥଗୁଡ଼ିକ ନିରୀକ୍ଷଣ କଲେ ସ୍ରଷ୍ଟାଙ୍କ ସ୍ମରଣ ଆସେ । ମହାନ୍ ପ୍ରଭୁଙ୍କୁ ବୁଝିବା ପାଇଁ ଗୋଟିଏ ଘାସ, ଗୋଟିଏ ପତ୍ର, ଗୋଟିଏ ତାରା ଯଥେଷ୍ଟ । ଆକାଶର ସୂର୍ଯ୍ୟ, ଚନ୍ଦ୍ର, ତାରା ଦର୍ଶନ କଲେ ପ୍ରଭୁଙ୍କ ଅସ୍ତିତ୍ୱ ବୁଝି ହୁଏ । ପୃଥିବୀର ସମସ୍ତ ବୈଜ୍ଞାନିକ ସମସ୍ତ ସମ୍ବଳ ବ୍ୟୟ କରି ସୁଦ୍ଧା ଗୋଟିଏ ଘାସ ବା ଗୋଟିଏ ଫୁଲ ତିଆରି କରି ପାରନ୍ତି ନାହିଁ ।

ମୂର୍ତ୍ତିକୁ ଦର୍ଶନ କରିବା ସମୟରେ ସେଥିରେ ବ୍ୟାପକ ଥିବା ପରମାତ୍ମାଙ୍କ ମହିମା ବୋଧ ହୁଏ ବୋଲି ଯେଉଁ ଯୁକ୍ତି କରାଯାଏ

ତାହା ନିରାଧାର । ଦୁଧକୁ ଦେଖୁଥିବା ଲୋକ ସେଥିରେ ବ୍ୟାପକ ଥିବା ଘୃତକୁ ଦେଖିପାରେ ନାହିଁ । ସେହିପରି କଳରେ ଥିବା ତେଲ ଦେଖାଯାଏ ନାହିଁ । ଚର୍ମଚକ୍ଷୁରେ ବ୍ୟାପ୍ୟକୁ ଦେଖି ବ୍ୟାପକ ବିଷୟରେ ଜ୍ଞାନ ମିଳେ ନାହିଁ । ସେଥିପାଇଁ ଜ୍ଞାନଚକ୍ଷୁର ଆବଶ୍ୟକତା ହୁଏ । ମୂର୍ତ୍ତିପୂଜା କରିବା ବେଳେ ଆମ୍ଭମାନଙ୍କ ମନୋବୃତ୍ତି ବହୁମୁଖୀ ଥାଏ । ତେଣୁ ପ୍ରଭୁଦର୍ଶନ ପାଇଁ ନିତ୍ୟ ଉଦିତ ହୋଇ ସମସ୍ତ ସଂସାରକୁ ଅବଲୋକନ କରୁଥିବା ସୂର୍ଯ୍ୟ ଆଡ଼କୁ ଦୃଷ୍ଟିପାତ କର । ବଣ ଉଦ୍ୟାନରେ ଫୁଟିଥିବା ଫୁଲକୁ ଦେଖ । ଶ୍ୱାପଦ ହିଂସ୍ର, ପାଟକ ଜନ୍ତୁ ଆଦି ଅତ୍ୟନ୍ତ କ୍ଷୁଦ୍ର ଦେହରେ ସମ୍ପାଦିତ ହେଉଥିବା କୀଟ ପତଙ୍ଗଙ୍କୁ ଦେଖ । ସେତେବେଳେ ସ୍ରଷ୍ଟାଙ୍କ ମହିମା ବୋଧ ହେବ । ଅନ୍ୟଥା ଚିତ୍ର ଓ ମୂର୍ତ୍ତିରେ ଜଣେ ସାଧାରଣ ଚିତ୍ରକାର ବା ମୂର୍ତ୍ତିକାରର ନଗଣ୍ୟ କୌଶଳ ହିଁ ଦେଖାଯିବ ।

—୪—

"ଈଶ୍ୱର ସର୍ବବ୍ୟାପକ ଅଟନ୍ତି, ତେଣୁ ମୂର୍ତ୍ତିରେ ମଧ୍ୟ ଅଛନ୍ତି । ଆମ୍ଭେମାନେ ମୂର୍ତ୍ତିକୁ ପୂଜା କରୁ ନାହୁଁ, ବରଂ ମୂର୍ତ୍ତିରେ ଥିବା ବ୍ୟାପକ ପରମାତ୍ମାଙ୍କୁ ପୂଜା କରୁ ।"

ମୂର୍ତ୍ତିପୂଜକର ବ୍ୟବହାରରୁ ଏହାର ବିପରୀତ ଦେଖାଯାଏ । ଈଶ୍ୱର ସର୍ବବ୍ୟାପକ ; ତେଣୁ ସେ ମୂର୍ତ୍ତିରେ ଅଛନ୍ତି—ଏଥିରେ ସନ୍ଦେହ ନାହିଁ । ପରନ୍ତୁ ବ୍ୟାପକ ପାଇଁ ଯେ ସମସ୍ତ ବ୍ୟାପ୍ୟ ବସ୍ତୁ ପୂଜାର ଯୋଗ୍ୟ ହେବେ, ଏଥିରେ ଯୁକ୍ତି ନାହିଁ । ପରମାତ୍ମା ଫୁଲରେ ମଧ୍ୟ ବ୍ୟାପକ । ତାହା ହେଲେ ଫୁଲ ପୂଜାର ଯୋଗ୍ୟ । ତାହାକୁ ମୂର୍ତ୍ତି ଉପରେ କାହିଁକି ଚଢ଼ାଯାଏ ? ସେ ଜଳରେ ଅଛନ୍ତି । ମୂର୍ତ୍ତିକୁ ଜଳଦ୍ୱାରା କାହିଁକି ସ୍ନାନ କରାଯାଏ ? ସେ ଚନ୍ଦନରେ ଅଛନ୍ତି ।

ତାହାଙ୍କୁ କି ହେତୁ ଚନ୍ଦନ ଲେପନ କର୍‌ଯାଏ ? ଯଦି ମୂର୍ତ୍ତିପୂଜକ ମୂର୍ତ୍ତିରେ ବ୍ୟାପକ ପରମାତ୍ମାଙ୍କୁ ପୂଜା କରେ, ତାହାହେଲେ ଉଲ୍ଲିଖିତ କ୍ରିୟାକଳାପର ଆଶ୍ରୟ ନିଏ କିହେତୁ ? ତେଣୁ ସେ ମୂର୍ତ୍ତିକୁ ହିଁ ଭଗବାନ ବିଚାରେ । ମୂର୍ତ୍ତିପୂଜାର ଜନ୍ମଦାତା ପୁରାଣମାନଙ୍କରେ ମଧ୍ୟ ଅନେକ ସ୍ଥଳରେ ଉଲ୍ଲିଖିତ ଯୁକ୍ତିର ଖଣ୍ଡନ ଦେଖିବାକୁ ମିଳେ ।

ଭବିଷ୍ୟ ପୁରାଣରେ ଲେଖାଅଛି—

ବାସୁଦେବାଗ୍ରତଶ୍ଚାପି ରୁଦ୍ର ମାହାତ୍ମ୍ୟବର୍ଣ୍ଣନମ୍ ।
ରୁଦ୍ରାଗ୍ରେ ବାସୁଦେବସ୍ୟ କୀର୍ତ୍ତନଂ ପୁଣ୍ୟବର୍ଦ୍ଧନମ୍ ॥
ଦୁର୍ଗାଗ୍ରେ ଶିବସୂର୍ଯ୍ୟସ୍ଯ ବୈଷ୍ଣବାଖ୍ୟାନମେବ ଚ ।
ଯଃ କରୋତି ବିମୂଢ଼ାତ୍ମା ଗାର୍ଦ୍ଦଭୀଂ ଯୋନିମାବିଶେତ୍ ॥

ଅର୍ଥାତ୍—ଯେଉଁ ବ୍ୟକ୍ତି ବାସୁଦେବଙ୍କ ମୂର୍ତ୍ତି ଆଗରେ ଶିବଙ୍କ ସ୍ତୁତି କରେ, ଶିବଙ୍କ ଆଗରେ ବାସୁଦେବଙ୍କ କୀର୍ତ୍ତନ କରେ, ଦୁର୍ଗାଙ୍କ ଆଗରେ ଶିବ, ସୂର୍ଯ୍ୟ ଅଥବା ବିଷ୍ଣୁଙ୍କ ସ୍ତୁତି କରେ, ସେ ମୂର୍ଖ ଗଧ ଜନ୍ମ ପାଏ । ଯଦି ମୂର୍ତ୍ତିପୂଜାର ଉଦ୍ଦେଶ୍ୟ ମୂର୍ତ୍ତିରେ ବ୍ୟାପକ ପରମାତ୍ମାଙ୍କ ପୂଜା ହୋଇଥାନ୍ତା, ତାହାହେଲେ ଗୋଟିଏ ଦେବତା ସମ୍ମୁଖରେ ଅନ୍ୟ ଦେବତାଙ୍କ ସ୍ତୁତି ପ୍ରାର୍ଥନାକୁ ନିଷିଦ୍ଧ କରାଯାଇ ନ ଥାନ୍ତା ।

ଜୀବାତ୍ମା ଓ ପରମାତ୍ମାଙ୍କ ମିଳନ ହେଉଛି ପୂଜା । ଏହି ମିଳନର ନାମ ଯୋଗ । ଯେଉଁଠାରେ ଉଭୟ ବିଦ୍ୟମାନ, ସେଠାରେ ହିଁ ମିଳନ ହୁଏ । ମୂର୍ତ୍ତିରେ ପରମାତ୍ମା ଅଛନ୍ତି ପରନ୍ତୁ ସେଥିରେ ଉପାସକର ଜୀବାତ୍ମା ନାହିଁ । କେବଳ ମନୁଷ୍ୟର ହୃଦୟ ମଧ୍ୟରେ ଉଭୟ ଜୀବାତ୍ମା

ଓ ପରମାତ୍ମା ବିଦ୍ୟମାନ । ତେଣୁ ହୃଦୟ ମନ୍ଦିରରେ ଜୀବ ବ୍ରହ୍ମାଙ୍କ ସାକ୍ଷାତ୍ କରନ୍ତି । ବେଦ ଓ ଉପନିଷଦ ଏହି ସତ୍ୟ ନିରୂପଣ କରିଛନ୍ତି—

ବେନସ୍ତତ୍ ପଶ୍ୟନ୍ ମନସା ଗୁହାୟାମ୍ ॥ (ଯଜୁ ୩୨, ୮)

—ବିଦ୍ୱାନ୍ ପୁରୁଷ ହୃଦୟ ମଧ୍ୟରେ ପରମାତ୍ମାଙ୍କ ଦର୍ଶନ କରେ ।

ତମାତ୍ମସ୍ଥମନୁପଶ୍ୟନ୍ତି ଧୀରାସ୍ତେଷାଂ
ସୁଖଂଶାଶ୍ୱତଂ ନେତରେଷାମ୍ ॥ (କଠୋପନିଷଦ୍)

—ଯେଉଁ ଧୀର ପୁରୁଷ ଜୀବାତ୍ମା ମଧ୍ୟରେ ଥିବା ପରମାତ୍ମାଙ୍କ ଦର୍ଶନ କରେ, ସେ ଚିରକାଳ ପର୍ଯ୍ୟନ୍ତ ସୁଖ ପାଏ ।

—୭—

"ଜ୍ଞାନୀମାନଙ୍କ ପାଇଁ ମୂର୍ତ୍ତିପୂଜା ଉପଯୋଗୀ ହୋଇ ନ ପାରେ । ପରନ୍ତୁ ସାଧାରଣ ଲୋକଙ୍କ ପାଇଁ ଏହାର ଆବଶ୍ୟକତା ରହିଛି । ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରେ ଶିକ୍ଷିତ ହିନ୍ଦୁ ଯୁବକମାନେ ଈଶ୍ୱର ଓ ଧର୍ମ ପ୍ରତି ବିମୁଖ ହୋଇ ପଡ଼ୁଛନ୍ତି । ଯଦି ମୂର୍ତ୍ତିପୂଜା ଓ ମନ୍ଦିର ରହିବେ ନାହିଁ, ତାହା ହେଲେ ଈଶ୍ୱର ଓ ଧର୍ମ ପ୍ରତି ଲୋକଙ୍କର ଯେତିକ ବା ଶ୍ରଦ୍ଧା ରହିଛି, ତାହା ନଷ୍ଟ ହେବ । ସେମାନେ ନାସ୍ତିକ ହୋଇ ପଡ଼ିବେ । ତେଣୁ ମୂର୍ତ୍ତିପୂଜାର ପ୍ରଚଳନ ରହିବା ଉଚିତ । ନ ହେବା-ଠାରୁ କିଛି ହେବା ଶ୍ରେୟସ୍କର ।"

ମୂର୍ଖକୁ ପାଠ ନ ପଢ଼ାଇ ମୂର୍ଖ କରି ରଖିବା, ରୋଗୀକୁ ଚିକିତ୍ସା ନ କରି ରୋଗୀ କରି ରଖିବା ଉଚିତ ନୁହେଁ । ଜନ-ସାଧାରଣଙ୍କଠାରେ ଧାର୍ମିକ ଭାବନାର ଅଭାବ ନାହିଁ । ମନୁଷ୍ୟ

ସ୍ୱଭାବତଃ ଧାର୍ମିକ । ତାହାଙ୍କୁ ଈଶ୍ୱରୋପାସନାର ଯଥାର୍ଥ ପ୍ରଣାଳୀ ଶିକ୍ଷା ଦେଲେ, ସେ ଅବଶ୍ୟ ଉନ୍ନତ ସ୍ଥିତି ଲାଭ କରିବ । ପରନ୍ତୁ ସାଂପ୍ରଦାୟିକ ପୂଜକ, ପଣ୍ଡା ଆଦି ବହୁଧା ଏଥିରେ ବାଧକ ହୋଇଥାନ୍ତି । ସାଧାରଣତଃ ଲୋକଙ୍କୁ ସର୍ବଦା ଅନ୍ଧକାର ମଧ୍ୟରେ ରଖିବା ପାଇଁ ସେମାନେ ଚେଷ୍ଟାଶୀଳ । ମୂର୍ତ୍ତିପୂଜାରେ ଜୀବିକା ଅର୍ଜ୍ଜନ କରୁଥିବା ପଣ୍ଡାମାନେ ସାଧାରଣ ଲୋକଙ୍କୁ ବୁଝାଇ ଥାଆନ୍ତି ଯେ ମୂର୍ତ୍ତି ଆଗ ରେ ହାତ ଯୋଡ଼ି ଦକ୍ଷିଣା ଦେବା ହିଁ ଈଶ୍ୱରପୂଜା । ଏହି ଉଦ୍ଦେଶ୍ୟରେ ସେମାନେ ଶହ ଶହ ମାଇଲ ଦୂରରୁ ଯାତ୍ରୀମାନଙ୍କ ପିଛୁ ଧରନ୍ତି । ପ୍ରଶ୍ନ ହୁଏ, କ'ଣ ଏଥି ନିମନ୍ତେ ମୂର୍ତ୍ତିପୂଜାକୁ ଜୀବିତ ରଖିବା ପାଇଁ ଯୁକ୍ତି କରାଯାଏ ? ଏହି ପ୍ରକାର ଈଶ୍ୱରବିଶ୍ୱାସଦ୍ୱାରା ହିନ୍ଦୁସମାଜକୁ ରକ୍ଷା କରାଯାଇ ପାରେ କି ?

ମନୁଷ୍ୟର ଆତ୍ମା ଓ ବୁଦ୍ଧିକୁ ଉନ୍ନତ କରିବା ଈଶ୍ୱରୋପାସନାର ଉଦ୍ଦେଶ୍ୟ । ପରନ୍ତୁ ମୂର୍ତ୍ତିପୂଜା ଏପରି ଏକ ପ୍ରକ୍ରିୟା ଯଦ୍ୱାରା ଜନସାଧାରଣଙ୍କୁ ଚିରକାଳ ଅଜ୍ଞ ରଖା ଯାଇଥାଏ । ଏହା ଉପାସକକୁ ଅନ୍ଧ ବିଶ୍ୱାସୀ ଓ ଭୀରୁ କରି ଦିଏ । ଏହି କାରଣରୁ ମୂର୍ତ୍ତି ପାଖରେ ରହୁଥିବା ପଣ୍ଡା ପୂଜାରୀଙ୍କ ଜୀବନ ଶତାବ୍ଦୀ ଶତାବ୍ଦୀ ଧରି ମୂର୍ତ୍ତିକୁ ବେଳେବେଳେ ଦର୍ଶନ କରୁଥିବା ଭକ୍ତଙ୍କଠାରୁ ଶ୍ରେଷ୍ଠତର ନୁହେ । ମୂର୍ତ୍ତିର ସେବକ ନିଜପ୍ରତି ଅନ୍ୟାୟ କରେ ; ନିଜର ହାନି କରେ । ଏକ ଅସତ୍ୟ ମାର୍ଗରେ ଯାଇ ସୁଦ୍ଧା ସେ ସନ୍ତୁଷ୍ଟ ଥାଏ । ସେ ଈଶ୍ୱର ପୂଜା କରୁଛି ବୋଲି ଭାବୁଥିବା ସମସ୍ତ ଜୀବନ ସେଥିରେ କଟାଇ ଦିଏ । ଶିକ୍ଷିତ ସମୁଦାୟ କେତେକାଂଶରେ ପୂଜାରୀମାନଙ୍କ ଦୌରାତ୍ମ୍ୟ ବୁଝି ପାରନ୍ତି । ପରନ୍ତୁ ଅଶିକ୍ଷିତ ଲୋକେ ସେମାନଙ୍କଠାରେ ସବୁବେଳେ ଶିକାର ହୁଅନ୍ତି । ମୁସଲମାନ, ଖ୍ରୀଷ୍ଟିଆନ ଆଦି ସଂପ୍ରଦାୟ ମୂର୍ତ୍ତି ପୂଜକ ନୁହନ୍ତି । ସେ ସବୁ ସମାଜର ଲୋକେ କ'ଣ ନାସ୍ତିକ ଅଟନ୍ତି ?

ଅନେକ ସମୟରେ ଦେଖା ଯାଏ ଯେ ସେମାନଙ୍କ ଈଶ୍ୱରଭକ୍ତି ଓ ଆସ୍ତିକତା ବୃଦ୍ଧମାନଙ୍କଠାରୁ ବେଶୀ । ମୂର୍ତ୍ତିପୂଜା ନାସ୍ତିକତା । ଈଶ୍ୱର ଯେପରି ନୁହନ୍ତି, ସେପରି ତାହାଙ୍କୁ ବିଚାରିବା ଆସ୍ତିକତା ନୁହେଁ । ଯେପରି ଜଣେ ରାଜା ଥାଉ ଥାଉ ଅନ୍ୟ ଜଣକର ଅଧୀନତା ସ୍ୱୀକାର କରିବା ଓ ଆଜ୍ଞା ପାଳନ କରିବା ରାଜଦ୍ରୋହ, ସେହିପରି ଈଶ୍ୱରଙ୍କ ଉପସ୍ଥିତିରେ ଜଡ଼ମୂର୍ତ୍ତି ପୂଜା କରିବା ଈଶ୍ୱର-ବିଦ୍ରୋହ । ତାହାର ଅନ୍ୟ ନାମ ନାସ୍ତିକତା । ଏଭଳି କଳ୍ପିତ ଈଶ୍ୱରପୂଜାଦ୍ୱାରା ଶିକ୍ଷିତ ସମାଜ ଧର୍ମ ପ୍ରତି ଉପେକ୍ଷା କରୁଅଛି ।

ଏହା ଠିକ୍ ଯେ, ନ ହେବାଠାରୁ କିଛି ହେବା ଉତ୍ତମ । ପରନ୍ତୁ ଯାହା ହେଉଛି ତାହାର ଯଥାର୍ଥତା ବୁଝିବା ଆବଶ୍ୟକ । ଯଦି ତଦ୍ୱାରା ଆମର ଅନିଷ୍ଟ ଘଟୁଅଛି, ତାହାହେଲେ ତାହା ନ ହେବା ବରଂ ଭଲ । ଖାଇବା ପାଇଁ କୌଣସି ପଦାର୍ଥ ନାହିଁ ବୋଲି ବିଷ ଖାଇବା ଉଚିତ ନୁହେଁ । ଏଭଳି କଲେ ମୃତ୍ୟୁ ଅବଶ୍ୟମ୍ଭାବୀ ।

— ୭ —

"ମୂର୍ତ୍ତି ଈଶ୍ୱରଙ୍କର ନ ହେଲେ ସୁଦ୍ଧା, ସେଥିରେ ଈଶ୍ୱର ଭାବନା ରଖିଲେ ଅବଶ୍ୟ ଫଳ ମିଳେ । ମନୁଷ୍ୟର ଭାବନା ଯେଭଳି, ସେ ସେଭଳି ଫଳ ପାଏ । ମାନିଲେ ଦେବତା, ନ ହେଲେ ପଥର ।"

ଭାବନା ନାମରେ ଆମ୍ଭେମାନେ ବିଚିତ୍ର ଯୁକ୍ତି କରିଥାଉଁ । ଯେଉଁ ବସ୍ତୁ ଯେପରି, ତାହାକୁ ସେହିପରି ବୁଝିବା 'ଭାବ' ଅଟେ, ଅନ୍ୟଥା ବୁଝିବା 'ଅଭାବ' ଅଟେ । ଭାବନାଦ୍ୱାରା କୌଣସି ବସ୍ତୁର ବାସ୍ତବିକତାରେ ପରିବର୍ତ୍ତନ ହୋଇ ଯାଏ ନାହିଁ । ଚୂନ ପାଣିକୁ ଦୁଧ ବୋଲି ବିଚାରିଲେ ସେଥିରୁ ଲହୁଣୀ ବାହାରେ ନାହିଁ । ବାଲିକୁ ଚିନି

ବୋଲି ଭାବି ଖାଇଲେ ପାଣି ମିଠା ହୁଏ ନାହିଁ । ଜଳକୁ ଅଗ୍ନି ଭାବିଲେ, ତଦ୍ୱାରା ଆମର ଶୀତ ଯାଏ ନାହିଁ । ସଂସାରରେ ସବୁ ମନୁଷ୍ୟ ସୁଖର ଭାବନା କରନ୍ତି, ତଥାପି ଦୁଃଖ ପାଆନ୍ତି । ଅନେକ ସମୟରେ ରୋଗୀ ଭୁଲବଶତଃ ଔଷଧ ବଦଳରେ ବିଷ ଖାଇଦିଏ ଓ ମୃତ୍ୟୁ-ମୁଖରେ ପଡ଼େ । ବିଷକୁ ଔଷଧି ଭାବି ଖାଇବା ବେଳେ ସ୍ୱାସ୍ଥ୍ୟଲାଭର ଭାବନା ଥାଏ, ତେବେ ମୃତ୍ୟୁ ହୁଏ କାହିଁକି ? ଯେ କୌଣସି ବସ୍ତୁର ଗୁଣ-ଦୋଷ ଆମର ଭାବନାଦ୍ୱାରା ବଦଳି ଯାଏ ନାହିଁ । ପଥରକୁ ଈଶ୍ୱର ବିଚାରିଲେ ସୁଦ୍ଧା ତାହା ପଥର ହୋଇ ରହେ । ତାହାଠାରେ ଚେତନା ଆସି ଯାଏ ନାହିଁ ଅଥବା ସେ ଆମର ଇଷ୍ଟ-ଅନିଷ୍ଟ ସାଧନ କରି ପାରେ ନାହିଁ ।

ପ୍ରତ୍ୟେକ ହିନ୍ଦୁ ବୁଝେ ଯେ ମୂର୍ତ୍ତି ଆମର ରକ୍ଷା କରିବ, ପରନ୍ତୁ ପରିଣାମ କ'ଣ ହୋଇଛି ? ଆକ୍ରମଣକାରୀ ମନ୍ଦିର ଓ ମୂର୍ତ୍ତି ଗୁଡ଼ିକୁ ଭାଙ୍ଗିଦେଲେ ଓ ସେଠାର ଧନ ସମ୍ପତ୍ତି ଲୁଟି ନେଲେ । ଆମର ଯେଉଁ ଦୁର୍ଦ୍ଦଶା ଘଟିଲା, ଇତିହାସ ତାହାର ସାକ୍ଷୀ ରୂପରେ ରହିଛି । ଆମର ବିଶ୍ୱାସ ଓ ଭାବନା ଆମର ସହାୟକ ହେଲା ନାହିଁ ।



"ମୂର୍ତ୍ତିକୁ ଈଶ୍ୱର ବିଚାରି ପୂଜା ନ କଲେ ସୁଦ୍ଧା ଶାନ୍ତ ଓ ତପସ୍ୱୀ ମହାପୁରୁଷମାନଙ୍କ ମୂର୍ତ୍ତିକୁ ଦେଖିଲେ ମନ ଶାନ୍ତ ହୋଇଯାଏ । ଏହି କାରଣରୁ ମୂର୍ତ୍ତି ଅଥବା ମନ୍ଦିରକୁ ଦେଖି ଆନ୍ତରିକ ଶ୍ରଦ୍ଧା ଓ ଭକ୍ତି ଜାଗ୍ରତ ହୁଏ ।"

ଯେ କୌଣସି ମହାପୁରୁଷ ତଥା ପ୍ରାଣୀକ ସମ୍ବନ୍ଧରେ ପୂର୍ବରୁ ଜ୍ଞାନ ଅର୍ଥାତ୍ ମନରେ ସେ ସମ୍ବନ୍ଧରେ ସଂସ୍କାର ଥିଲେ, ତାହାଙ୍କ ମୂର୍ତ୍ତିଦର୍ଶନ ସମୟରେ ଦର୍ଶକ ପ୍ରଭାବିତ ହୁଏ । କେବଳ ମୂର୍ତ୍ତିଦ୍ୱାରା ନୁହେ ପରନ୍ତୁ ଯାହାଙ୍କର ମୂର୍ତ୍ତି

ତଙ୍କ ସମ୍ବନ୍ଧରେ ପଢ଼ିଥିଲେ ବା ଶୁଣିଥିଲେ ମୂର୍ତ୍ତି ଦେଖି ଶ୍ରଦ୍ଧା ବା ଅଶ୍ରଦ୍ଧା ଜାତ ହୁଏ । ଆମର ଭାବନା ତାଙ୍କ ପ୍ରତି ଉତ୍ତମ ଥିଲେ ଶ୍ରଦ୍ଧା ଜାତ ହୁଏ, ଭାବନା ନିକୃଷ୍ଟ ଥିଲେ ଅଶ୍ରଦ୍ଧା ଜାତ ହୁଏ । ହିନ୍ଦୁମାନେ ଯେଉଁ ମୂର୍ତ୍ତିକୁ ଶ୍ରଦ୍ଧା କରନ୍ତି, ମୁସଲମାନ ବା ଖ୍ରୀଷ୍ଟିଆନମାନେ ତାହା ପ୍ରତି ଅଶ୍ରଦ୍ଧା ଓ ଘୃଣା କରି ପାରନ୍ତି । କେବଳ ମୂର୍ତ୍ତିକୁ ଦେଖିବା ମାତ୍ରେ ମନ ପ୍ରଭାବିତ ହେଉଥିଲେ ମୁସଲମାନମାନେ ମଧ୍ୟ ପ୍ରଭାବିତ ହୁଅନ୍ତେ । ହିନ୍ଦୁ ପରିବାରମାନଙ୍କରେ ସନ୍ତାନମାନଙ୍କଠାରେ ଜନ୍ମ କାଳରୁ ମୂର୍ତ୍ତିପୂଜା ପ୍ରତି ଶ୍ରଦ୍ଧା ଓ ଭକ୍ତି ସୃଷ୍ଟି କରାଯାଏ । ଭାରତର ବହୁ ନଗରର ଉଦ୍ୟାନ ଓ ସଡ଼କ କଡ଼ରେ ବହୁ ଇଂରେଜ ବୀରଙ୍କ ମୂର୍ତ୍ତି ବ୍ରିଟୀଶ୍ ରାଜତ୍ୱ ସମୟରୁ ସ୍ଥାପିତ ହୋଇଛି । ପରନ୍ତୁ କୌଣସି ହିନ୍ଦୁ ସେ ଗୁଡ଼ିକୁ ଦେଖି ହାତ ଯୋଡ଼ନ୍ତି ନାହିଁ ଅଥବା ସାଷ୍ଟାଙ୍ଗ ଦଣ୍ଡବତ ହୁଅନ୍ତି ନାହିଁ । ସେମାନଙ୍କ ମନରେ ଶ୍ରଦ୍ଧା ଓ ଭକ୍ତି ଜାତ ହୁଏ ନାହିଁ । ବାଲ୍ୟ କାଳରୁ ହିନ୍ଦୁ ବାଳକ ବାଳିକାମାନଙ୍କ ମନରେ ମୂକ, ନିରୀହ ଓ ନିଃସହାୟ ପଶୁମାନଙ୍କ ରକ୍ତରଞ୍ଜିତ କାଳୀଙ୍କ ବିକରାଳ ମୂର୍ତ୍ତି ଆଗରେ ସାଷ୍ଟାଙ୍ଗ ପ୍ରଣିପାତ ହେବା ପାଇଁ ପ୍ରୋତ୍ସାହନ ଦିଆଯାଇ ନ ଥିଲେ, ସେମାନଙ୍କ ହୃଦୟରେ ନିଶ୍ଚିତ ଭାବରେ ଏହି ଦୃଶ୍ୟ ପ୍ରତି ଘୃଣା ଓ ଗ୍ଲାନି ସୃଷ୍ଟି ହୁଅନ୍ତା । ଭୈରବଙ୍କ ଭୟାନକ ମୂର୍ତ୍ତି ଅଥବା ଶିବଲିଙ୍ଗର ଲଜ୍ଜାପ୍ରଦ ଆକୃତି ମନରେ ଭୟ ଓ ଲଜ୍ଜା ଅତିରିକ୍ତ ଶ୍ରଦ୍ଧା ଓ ଭକ୍ତି ଜାତ କରନ୍ତା ନାହିଁ । ତେଣୁ ବାଲ୍ୟକାଳରୁ ମନର ଅଭ୍ୟାସ ଓ ସଂସ୍କାର ଫଳରୁ ମୂର୍ତ୍ତି ଅଥବା ମନ୍ଦିରକୁ ଦେଖି ଶ୍ରଦ୍ଧା ଉତ୍ପନ୍ନ ହୁଏ ।

—୯—

“ମୂର୍ତ୍ତିପୂଜା ଆମ ପୂଜକମାନଙ୍କ ପୂଜା । ମହାପୁରୁଷମାନଙ୍କ ପୂଜା ଦୋଷ ନୁହେଁ । ସଂସାରର ସବୁ ଜାତି ମଧ୍ୟରେ କୌଣସି ନା

କୌଣସି ରୂପରେ ପୂଜ୍ୟପୂଜା ଦେଖିବାକୁ ମିଳେ । ମୁସଲମାନ ଓ ଖ୍ରୀଷ୍ଟିଆନମାନଙ୍କ ମଧ୍ୟରେ ଏଭଳି ପୂଜା ପ୍ରଚଳିତ ରହିଛି । ଏଥିରୁ ସିଦ୍ଧ ହୁଏ ଯେ, ମୂର୍ତ୍ତିପୂଜା ମନୁଷ୍ୟ ହୃଦୟରେ ବୀଜରୂପରେ ବିଦ୍ୟମାନ ଓ ତାହାକୁ ସର୍ବଥା ନିର୍ମୂଳ କରାଯାଇ ନ ପାରେ ।"

ଏହି ସ୍ଥଳରେ ମୂର୍ତ୍ତି ଓ ପୂଜା ଏହି ଦୁଇଟି ବିଷୟ ଭଲ ଭାବରେ ବୁଝିବା ଆବଶ୍ୟକ । ଆକାରଯୁକ୍ତ ବା ଦେହଯୁକ୍ତ ବସ୍ତୁକୁ ମୂର୍ତ୍ତି କୁହାଯାଏ । ଏହା ଦୁଇ ପ୍ରକାର—ଜଡ଼ ଓ ଚେତନ । ସମସ୍ତ ଜୀବ ଚେତନ ମୂର୍ତ୍ତି ଓ ଜଡ଼ପଦାର୍ଥ ଜଡ଼ ମୂର୍ତ୍ତି । ପୂଜା ଶବ୍ଦର ଅର୍ଥ ଆଦର ସତ୍କାର । ଏହାର ଅନ୍ୟ ଅର୍ଥ ଉଚିତ ବ୍ୟବହାର ଓ ସୁରକ୍ଷା । ମାତା, ପିତା, ଗୁରୁ ଆଦି ଆମ୍ଭମାନଙ୍କର ପୂଜ୍ୟ । ଏହାର ଅଭିପ୍ରାୟ ହେଉଛି ସେମାନଙ୍କୁ ଅନ୍ନ, ଜଳ, ସେବା ଶୁଶ୍ରୂଷା ବସ୍ତ୍ରାଦିଦ୍ୱାରା ସନ୍ତୁଷ୍ଟ କରିବା ଓ ସେମାନଙ୍କୁ ପାଳନ କରିବା । ପରନ୍ତୁ ଜଡ଼ ବସ୍ତୁର ପୂଜାର ତାତ୍ପର୍ଯ୍ୟ ହେଉଛି ସେଗୁଡ଼ିକୁ ଉଚିତ ବ୍ୟବହାର କରିବା । ସେମାନଙ୍କ ଆଗରେ ହାତ ଯୋଡ଼ିବା, ଭୋଗ ଲଗାଇବା ପୂଜା ନୁହେଁ; କାରଣ ସେମାନେ ଦେଖନ୍ତି ନାହିଁ, ଶୁଣନ୍ତି ନାହିଁ କିମ୍ବା ଭୋଜନ କରନ୍ତି ନାହିଁ । ଜଡ଼ ବସ୍ତୁକୁ ଚେତନ ପରି ବ୍ୟବହାର କରିବା ଜ୍ଞାନଶୂନ୍ୟ କାର୍ଯ୍ୟ । ଏଭଳି ବିଶ୍ୱାସରୁ ଗଙ୍ଗା ନଦୀକୁ ଆରତୀ କରାଯାଏ, ସେଥିରେ ଦୁଧ ଢଳାଯାଏ । ରେଳରେ ଗଙ୍ଗାନଦୀ ପାର ହେବା ସମୟରେ ଲୋକେ ନଦୀରେ ଠଙ୍କା ପଇସା ପକାନ୍ତି । ବନ୍ୟା ସମୟରେ ଗଙ୍ଗା କୂଳବାସୀଙ୍କ ପ୍ରତି ଦୟାଳୁ ହୁଏ ନାହିଁ । ଜ୍ଞାନୀ ବିଜ୍ଞାନ ବଳରେ ନଦୀ ଜଳରୁ ବିଦ୍ୟୁତ୍ ଉତ୍ପାଦନ କରି ଲୋକ କଲ୍ୟାଣ କରନ୍ତି । ମୂର୍ତ୍ତିପୂଜାକୁ ପୂର୍ବପୁରୁଷଙ୍କ ପୂଜା କହିବା ବାକ୍‌ଚାତୁରୀ ଅଟେ । ପୂର୍ବପୁରୁଷଙ୍କ ଚିତ୍ରର ଯଥାଯୋଗ୍ୟ ବ୍ୟବହାରରେ କୌଣସି ଦୋଷ ନାହିଁ । ସେମାନଙ୍କ ଚିତ୍ର ରଖିବା, ସାର୍ବଜନୀନ

ସ୍ଥାନମାନଙ୍କରେ ମୂର୍ତ୍ତି ସ୍ଥାପନ କରିବା ଓ ସେ ସବୁ ଦେଖି ସେମାନଙ୍କ ସତ୍କାର୍ଯ୍ୟ ସ୍ମରଣ କରିବା ସର୍ବଥା ଉଚିତ । ପରନ୍ତୁ ସେ ସବୁ ଚେତନ ବୋଲି ବୁଝିବା, ଈଶ୍ୱରଙ୍କ ପ୍ରତିକୃତି ବୋଲି ମାନିବା, ଭୋଗ ଚଢ଼ାଇବା ଅନୁଚିତ । ଏହି କାର୍ଯ୍ୟକୁ ଈଶ୍ୱର ଉପାସନା ମଣିବା ଦୋଷ । ମୁସଲମାନମାନେ ମୂର୍ତ୍ତିପୂଜା ନ କଲେ ମଧ୍ୟ କାବାସ୍ଥିତ କଳାପଥରକୁ ଏକ ପ୍ରକାର ପୂଜା କରନ୍ତି । ଏକ ସମୟରେ ଆରବବାସୀ ମୂର୍ତ୍ତିପୂଜକ ଥିଲେ । ତେଣୁ ଆଜକାଲି ମୁସଲମାନଙ୍କ ସେହି ସଂସ୍କାର ରହି ଯାଇଛି । ନମାଜ ସମୟରେ ମୁଣ୍ଡ ନୁଆଁଇବାରୁ ଜଣାଯାଏ ଯେ ସେମାନଙ୍କ ଆଗରେ ମୂର୍ତ୍ତି ନାହିଁ କିନ୍ତୁ ମୂର୍ତ୍ତିପୂଜା ବିଧାନ ରହିଛି । ଧ୍ୟାନ ଓ ଉପାସନା ନାହିଁ । ମୃତ୍ୟୁ ପରେ ଜୀବ କବର ମଧ୍ୟରେ ରହି-ଥାଏ ବୋଲି ମୁସଲମାନମାନେ ବିଶ୍ୱାସ କରନ୍ତି । ଏହା ବିଗ୍ରହ କବର ନିକଟରେ ସ୍ତୁତି ପ୍ରାର୍ଥନା କରନ୍ତି । ଦାର୍ଶନିକ ବିଚାର ସୂକ୍ଷ୍ମ ଓ ଯଥାର୍ଥ ନ ହେଲେ ଲୋକେ ଏଭଳି ବ୍ୟବହାର କରନ୍ତି । ଏହା ସତ୍ତ୍ୱେ ମୁସଲମାନମାନେ ଏକେଶ୍ୱରବାଦୀ ; ସେମାନେ ଈଶ୍ୱରଙ୍କ ବଦଳରେ ଅନ୍ୟ କାହାକୁ ପୂଜା କରନ୍ତି ନାହିଁ ।

ରୋମେନ କେଥଲିକମାନେ ଖ୍ରୀଷ୍ଟ, ମେରି ଆଦି ପୂଜା କରନ୍ତି । ପ୍ରୋଟେଷ୍ଟାଣ୍ଟମାନେ ଏହା ଖ୍ରୀଷ୍ଟଧର୍ମର ବିରୁଦ୍ଧ ବୋଲି କହନ୍ତି । ସ୍ୱୟଂ ଯୀଶୁଖ୍ରୀଷ୍ଟ ମୂର୍ତ୍ତିପୂଜାର ଖଣ୍ଡନ କରିଥିଲେ । ପରନ୍ତୁ ପ୍ରାଚୀନ ୟୁରୋପରେ ମୂର୍ତ୍ତିପୂଜା ପ୍ରଚଳିତ ଥିବାରୁ ଖ୍ରୀଷ୍ଟମତର ପ୍ରଚାର ପରେ ମଧ୍ୟ ଯୀଶୁ ଓ ମେରିଙ୍କ ପୂଜା ପ୍ରଚଳିତ ଅଛି ।

କୌଣସି ମନୁଷ୍ୟଠାରେ ଅଥବା ସମାଜରେ ପ୍ରବଳ କୁସଂସ୍କାର ସଂକ୍ରମିତ ହେଲେ, ତାହାକୁ ଦୂର କରିବା ସହଜସାଧ୍ୟ ହୁଏ ନାହିଁ । କୁସଂସ୍କାର ପ୍ରାଚୀନ ବୋଲି ସ୍ୱୀକାର୍ଯ୍ୟ ନୁହେ । ପୁରୁଣା ଦୋଷ

ଗୁଣରେ ପରିଣତ ହୋଇଯାଏ ନାହିଁ । ବହୁ ଲୋକ ଯେଉଁଥିରେ ବିଶ୍ୱାସ କରନ୍ତି, ତାହା ଯେ ସତ୍ୟ, ଏହା କଦାପି ନୁହେ । ବହୁ ଲୋକ ପୀଡ଼ିତ ହେଉଥିବା ମହାମାରୀ ରୋଗ ସ୍ୱାସ୍ଥ୍ୟର ଚିହ୍ନ ନୁହେ । ଏଭଳି ବହୁ ପ୍ରସାରିତ ରୋଗକୁ ଦୂର କରିବା ଉଚିତ । ମହାପୁରୁଷମାନଙ୍କ ମୂର୍ତ୍ତି ସ୍ଥାପନଦ୍ୱାରା ସେମାନଙ୍କଠାରୁ ପ୍ରେରଣା ଲାଭ କରିବା ସର୍ବଥା ସ୍ପୃହଣୀୟ । ପରନ୍ତୁ ଚେତନ ବସ୍ତୁ ପରି ମୂର୍ତ୍ତିଗୁଡ଼ିକୁ ବ୍ୟବହାର କରି ପୂଜାପ୍ରାର୍ଥନା କରିବା ଉଚିତ ନୁହେ । ଆଜିକାଲି ମହାତ୍ମା ଗାନ୍ଧୀଙ୍କ ସମାଧିର ପୂଜା କରାଯାଉଛି । ସମାଧି ସ୍ଥଳକୁ ଫୁଲରେ ଭୂଷିତ କରାଯାଉଛି । ପରନ୍ତୁ ତାହାଙ୍କ ସଦ୍‌ଗୁଣ ଅନୁକରଣ କରି ଦର୍ଶକମାନେ ନିଜ ହୃଦୟର ବିକାର ଦୂର କରିବା ପାଇଁ ସେଭଳି ସଚେଷ୍ଟ ହେଉ ନାହାନ୍ତି ।

—୧୦—

"ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ଅବତାରୀ ପୁରୁଷଙ୍କ ମୂର୍ତ୍ତିପୂଜାଦ୍ୱାରା ମନରେ ପରମାତ୍ମାଙ୍କ ପ୍ରତି ଭକ୍ତି ଭାବନା ଜାଗ୍ରତ ହୁଏ ।"

ଏହି ପୁସ୍ତକରେ ପୂର୍ବରୁ ଆଲୋଚନା କରାଯାଇଛି ଯେ, ଈଶ୍ୱର ଅବତାର ନିଅନ୍ତି ନାହିଁ । ତାହାଙ୍କୁ ଅବତାର ନେବା ଆବଶ୍ୟକ ହୁଏ ନାହିଁ । ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ମହାପୁରୁଷଙ୍କ ଚିତ୍ର ରଖିବାରେ କୌଣସି ହାନି ନାହିଁ । ପରନ୍ତୁ ସେଗୁଡ଼ିକୁ ପରମାତ୍ମା ବିଚାରି ପୂଜା ଅର୍ଚ୍ଚନା କରିବାଦ୍ୱାରା ଉପାସକ, ଧର୍ମ ବା ରାଷ୍ଟ୍ର କାହାରି ଲାଭ ହୁଏ ନାହିଁ ।

—୧୧—

"ମୂର୍ତ୍ତିପୂଜା ଈଶ୍ୱର ପ୍ରାପ୍ତିର ପ୍ରଥମ ସୋପାନ ।"

ଏହି ଉପମା ଭ୍ରମପୂର୍ଣ୍ଣ ଅଟେ । ପାହାଚରେ ଚଢ଼ି ଚଢ଼ି ମନୁଷ୍ୟ ଉପରକୁ ଯାଏ । ପରନ୍ତୁ ମୂର୍ତ୍ତିପୂଜା ଉତ୍ଥାନ ବଦଳରେ ପତନ ଆଡ଼କୁ ନଏ । ଦେଖାଯାଉଅଛି ଯେ ମୂର୍ତ୍ତିପୂଜକ ଆଜନ୍ମ ମୂର୍ତ୍ତିପୂଜକ ହୋଇ ରହୁଅଛି । ମୂର୍ତ୍ତିର ମାଧ୍ୟମରେ ସେ ଧୀରେ ଧୀରେ ନିରାକାର ପ୍ରଭୁଙ୍କୁ ଭକ୍ତି କରିବା ଶିଖୁ ନାହିଁ । ପ୍ରାଣୀମାତ୍ରର ସେବା, ବିଦ୍ୱାନ ଆପ୍ତପୁରୁଷମାନଙ୍କ ଆଦର ସତ୍କାର, ସତ୍‌ସଙ୍ଗ, ଯମନିୟମାଦି ପାଳନ ଈଶ୍ୱର ପ୍ରାପ୍ତିର ସୋପାନ । ଅନ୍ୟ ପକ୍ଷରେ ମୂର୍ତ୍ତିପୂଜା ଏପରି ଏକ ଗର୍ତ୍ତ ଯେଉଁଥିରେ ପଡ଼ି ମନୁଷ୍ୟ କଦାପି ପରମାତ୍ମବୋଧ କରି ନ ପାରେ ।

—୧୨—

"ବେଦାନ୍ତ ଅନୁସାରେ ସମଗ୍ର ସଂସାର ବ୍ରହ୍ମ । ତେଣୁ ମୂର୍ତ୍ତିକୁ ବ୍ରହ୍ମ ମଣିବା ଦୋଷାବହ ନୁହେଁ ।"

ବେଦାନ୍ତର ରଚୟିତା ବ୍ରହ୍ମାଣ୍ଡକୁ ବ୍ରହ୍ମ କହି ନାହାନ୍ତି । ପରନ୍ତୁ ଉତ୍ତମ ଭାବରେ ଜୀବ ଓ ବ୍ରହ୍ମର ଭେଦ ପ୍ରକାଶ କରିଛନ୍ତି । ଶଙ୍କରାଚାର୍ଯ୍ୟ ଅବଶ୍ୟ ଏଭଳି ବିଶ୍ଳେଷଣ କରିଛନ୍ତି । ବୌଦ୍ଧ-ଜୈନ ଆଦି ଅନୀଶ୍ୱରବାଦକୁ ଖଣ୍ଡନ କରିବା ପାଇଁ ସେ ଏଭଳି ଯୁକ୍ତିର ଆଶ୍ରୟ ନେଇଛନ୍ତି । ଶ୍ରୀ ମାଧବାଚାର୍ଯ୍ୟଙ୍କ ପରି ବେଦାନ୍ତର ଅନ୍ୟ ଭାଷ୍ୟକର୍ତ୍ତାମାନେ ଶଙ୍କର ମତକୁ ଖଣ୍ଡନ କରିଛନ୍ତି । ଯଦି ଭକ୍ତ ଓ ଭଗବାନ ଏକ, ତାହା ହେଲେ ଉପାସକର କାଏ

ଉପାସ୍ୟ ହୋଇ ରହିବେ ? ମୂର୍ତ୍ତିପୂଜାର ଅର୍ଥ ବ୍ରହ୍ମ ବ୍ରହ୍ମଙ୍କୁ ପୂଜା କରିବା । ସେ ଯାହା ହେଉ ସ୍ୱୟଂ ଶଙ୍କରାଚାର୍ଯ୍ୟ ମଧ୍ୟ ମୂର୍ତ୍ତିପୂଜାର ଖଣ୍ଡନ କରିଛନ୍ତି ।

—୧୩—

"ଆମ୍ଭେମାନେ ନିରାକାର ଅକ୍ଷରକୁ ଆକାରଯୁକ୍ତ କରି ଲେଖୁଁ । ସେହିପରି ନିରାକାର ଈଶ୍ୱରଙ୍କୁ ସାକାର ମୂର୍ତ୍ତିରେ କଳ୍ପନା କଲେ କ୍ଷତି କଣ ?"

କୌଣସି ବସ୍ତୁର ଅଭାବ ବା ଅନୁପସ୍ଥିତିରେ ତାହାର କଳ୍ପନା କରାଯାଏ । ସେଥିପାଇଁ ନିରାକାର ଅକ୍ଷର ବା ଶବ୍ଦର ଅଭାବରେ ସାକାର ଅକ୍ଷରଗୁଡ଼ିକ ପରିକଳ୍ପିତ ହୁଏ । ଆମର ଶବ୍ଦ ସବୁଠାରେ ଓ ସବୁବେଳେ ଶୁଣାଯାଉଥିଲେ ଆକାରଯୁକ୍ତ ଅକ୍ଷରଗୁଡ଼ିକର ଆବଶ୍ୟକତା ରହନ୍ତା ନାହିଁ । ପରନ୍ତୁ ପରମାତ୍ମା ସର୍ବବ୍ୟାପକ ଓ ସର୍ବକାଳିକ । ତେଣୁ ତାହାଙ୍କ ପାଇଁ ଅନ୍ୟ କୌଣସି ବସ୍ତୁର କଳ୍ପନା କରିବା ପ୍ରଶ୍ନ ଉଠେ ନାହିଁ । ସେ ଦେଖାଯାଉ ନାହାନ୍ତି, ତେଣୁ ତାଙ୍କର ମୂର୍ତ୍ତି ଆବଶ୍ୟକ—ଏଭଳି ଯୁକ୍ତି ଠିକ୍ ନୁହେ । ଯାହା ଅଦୃଶ୍ୟ, ତାହାର ଅଭାବ ଥାଏ ବୋଲି କହିବା ଅସଙ୍ଗତ । ଆକାଶ ଓ ଶବ୍ଦ ଅଦୃଶ୍ୟ ବସ୍ତୁ, ତାହା ବୋଲି ସେଗୁଡ଼ିକର ଅସ୍ତିତ୍ୱ ନାହିଁ କହିବା ଅଯୌକ୍ତିକ । ବସ୍ତୁ ଓ ତାହାର କଳ୍ପନା ମାଧ୍ୟମରେ ସାଦୃଶ୍ୟ ରହିବା ଆବଶ୍ୟକ । ଅକ୍ଷର ବିଜ୍ଞମାନେ ଜାଣନ୍ତି ଯେ ସାକାର ଅକ୍ଷର ନିରାକାର ଅକ୍ଷରର ମୂର୍ତ୍ତି ନୁହେ । ଉଚ୍ଚାରଣ ସମୟରେ ଓଷ୍ଠ ଆଦି ଅଙ୍ଗର ଆକୃତି ଓ ପ୍ରଚେଷ୍ଟା ଅନୁସାରେ ବର୍ଣ୍ଣର ଆକୃତି ରଚିତ ହୋଇଅଛି । ଆଧୁନିକ ସମସ୍ତ ଭାଷାର ବର୍ଣ୍ଣଗୁଡ଼ିକର ଆକୃତି ଉଲ୍ଲିଖିତ ଆଦିମ ବର୍ଣ୍ଣର ଅପଭ୍ରଷ୍ଟ ରୂପ ।

କଳ୍ପନା ପାଇଁ ସାଦୃଶ୍ୟ ଆବଶ୍ୟକ । ପାହାଡ଼ ପରି ହାତୀ କୁହା-ଯାଇପାରେ । କିନ୍ତୁ ଗୋଟିଏ ପୋଖରୀ ପରି ହାତୀ ବୋଲି କେହି କହେ ନାହିଁ । ଈଶ୍ୱର ଓ ପାଷାଣ ମୂର୍ତ୍ତି ମଧ୍ୟରେ ଲେଶମାତ୍ର ସାଦୃଶ୍ୟ ନାହିଁ । ନିରାକାର ଈଶ୍ୱରଙ୍କୁ କଳ୍ପନା କରି ମୂର୍ତ୍ତି ଗଠନ କରାଯାଏ ନାହିଁ । ମନୁଷ୍ୟମାନଙ୍କୁ ଈଶ୍ୱରଙ୍କ ଅବତାର ଭାବି ସେମାନଙ୍କ କଳ୍ପନା କରା-ଯାଏ । ନିରାକାର ଶବ୍ଦ ଆଖିରେ ଦେଖାଯାଏ ନାହିଁ କିନ୍ତୁ କାନରେ ଶୁଣାଯାଏ । ସୁବିଧା ପାଇଁ କାନର ବିଷୟକୁ ସାକାର ଅକ୍ଷରମାନଙ୍କ କଳ୍ପନାଦ୍ୱାରା ଆଖିର ବିଷୟ କରି ଦିଆଯାଏ । ପରନ୍ତୁ ପରମାତ୍ମା କୌଣସି ହେଲେ ଇନ୍ଦ୍ରିୟର ବିଷୟ ନୁହନ୍ତି । ସେ କେବଳ ଅନୁଭୂତିର ବିଷୟ ।

— ୧୪ —

"ଯେଉଁ ପ୍ରକାରେ କାଳ ନିରାକାର ହେଲେ ହେଁ ସାକାର ଘଣ୍ଟାଦ୍ୱାରା ନିରାକାର ଘଡ଼ିର ଜ୍ଞାନ ମିଳେ, ସେହିପରି ମୂର୍ତ୍ତିଦ୍ୱାରା ପରମାତ୍ମାଙ୍କ ଜ୍ଞାନ ମିଳେ ।"

ଘଣ୍ଟା ଏକ ଯନ୍ତ୍ର ଅଟେ । ତାହା ପୃଥିବୀର ଘୂର୍ଣ୍ଣନଦ୍ୱାରା ଉତ୍ପନ୍ନ ହେଉଥିବା ଦିବସ ରାତିକୁ ବିଭାଜନ କରି ସମୟ ଦର୍ଶାଇ ଥାଏ । ଘଣ୍ଟା କାଳର ମୂର୍ତ୍ତି ନୁହେ । ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସମୟରେ ଠିକ୍ ମିଳାଇଲେ, ତାହା ସମୟର ପରିମାପ କରେ । ଯେଉଁ ଘଣ୍ଟା ବନ୍ଦ ଥାଏ, ତଦ୍ଦ୍ୱାରା ସମୟ ଜଣାଯାଏ ନାହିଁ । ତାହା ଏକ ପ୍ରକାରେ ସୂର୍ଯ୍ୟର ମୂର୍ତ୍ତି ହୋଇପାରେ ପରନ୍ତୁ ନିରାକାର କାଳର ମୂର୍ତ୍ତି କଦାପି ନୁହେ ।

—୧୫—

"ଯେଉଁପରି ମାନଚିତ୍ରକୁ ଦେଖି ବିଦ୍ୟାର୍ଥୀମାନେ ପାହାଡ଼ ବା ନଦୀର ଜ୍ଞାନ ପାଆନ୍ତି, ସେହିପରି ମୂର୍ତ୍ତିକୁ ଦେଖି ଈଶ୍ୱରଙ୍କର ଜ୍ଞାନ ମିଳେ ।"

ପାହାଡ଼, ନଦୀ, ପୃଥିବୀ ଆଦି ସାକାର ବସ୍ତୁ । ମାନଚିତ୍ର ସେମାନଙ୍କର ଲଘୁ ରୂପ । କିନ୍ତୁ ପରମାତ୍ମା ନିରାକାର । ଏପରି ଅବସ୍ଥାରେ ତାଙ୍କର ମୂର୍ତ୍ତି ଅଥବା ଚିତ୍ର କଳ୍ପନା କରାଯାଇ ନ ପାରେ ।

—୧୬—

"ଶବ୍ଦ ନିରାକାର । କିନ୍ତୁ ଗ୍ରାମୋଫୋନ୍ ରେକର୍ଡଦ୍ୱାରା ତାହାକୁ ମୂର୍ତ୍ତିମାନ କରାଯାଇ ଥାଏ । ଏହି ପ୍ରକାରେ ନିରାକାର ପରମାତ୍ମାଙ୍କ ମୂର୍ତ୍ତି ସ୍ଥାପନ କରାଯାଏ ।"

କଣ୍ଠଦ୍ୱାରା ହେଉ ବା ଗ୍ରାମୋଫୋନଦ୍ୱାରା ହେଉ, ଶବ୍ଦ ନିରାକାର ହୋଇ ରହେ । ତେଣୁ ତାହାକୁ ମୂର୍ତ୍ତିମାନ କରିବା ପ୍ରଶ୍ନ ଉଠୁ ନାହିଁ ।

—୧୭—

"ଗୋଟିଏ କାଗଜ ଖଣ୍ଡ ଅଥବା ଧାତୁ ଉପରେ ରାଜା ବା ଶାସକଙ୍କ ଚିତ୍ର ଆଙ୍କିଲେ, ତାହା ମୂଲ୍ୟବାନ ହୋଇଯାଏ । ସେହିପରି ମୂର୍ତ୍ତିକୁ ପରମାତ୍ମାଙ୍କର ବୋଲି ସ୍ୱୀକାର କରି ନେଲେ ତାହା ମାନ୍ୟ ଓ ପୂଜ୍ୟ ହୋଇଯାଏ ।"

ଗୋଟିଏ ନୋଟ ବା ମୋହର ସରକାରୀ ସ୍ୱୀକୃତି ପାଇଲେ, ତାହାକୁ ଲୋକେ ଅଙ୍ଗୀକାର କରନ୍ତି । ଗଳଶକ୍ତି ନୋଟ ବା ମୋହରର

ଉତ୍ତରଦାୟିତ୍ୱ ନେଇଥାନ୍ତି । ଅନେକଙ୍କ ସମ୍ମୁଖରେ ଶାସନକାର୍ଯ୍ୟ ବିପ୍ଳବ ହେଲେ ସେଗୁଡ଼ିକ ଚଳେ ନାହିଁ । ସେଗୁଡ଼ିକର ମୂଲ୍ୟ ରହେ ନାହିଁ । ପରମାତ୍ମାଙ୍କ ଆକୃତି ନାହିଁ । ତାଙ୍କର ମୂର୍ତ୍ତି ସମ୍ଭବ ନୁହେ । ତେଣୁ ଜାଲ ନୋଟର ପ୍ରଚଳନ ଯେପରି ବେଆଇନ ହୁଏ, ସେପରି ପରମାତ୍ମାଙ୍କ ମୂର୍ତ୍ତିପୂଜା ଦୋଷାବହ ।

—୧୮—

"ମୂର୍ତ୍ତି ପରମାତ୍ମାଙ୍କ ଶରୀର । ଶରୀରର ସେବା କଲେ ତାହା ପ୍ରସନ୍ନ ରହେ । ତେଣୁ ମୂର୍ତ୍ତିପୂଜା କରଣୀୟ ।"

ନ୍ୟାୟଦର୍ଶନ ଅନୁସାରେ ହିଷ୍ଟ, ଇନ୍ଦ୍ରିୟ ଓ ଅର୍ଥ—ଏହି ତିନି ପଦାର୍ଥର ଆଶ୍ରୟରେ ଶରୀର ତିଆରି ହୁଏ—'ଚେଷ୍ଟେନ୍ଦ୍ରିୟାର୍ଥା- ଶ୍ରୟଃ ଶରୀରମ୍' । ମୂର୍ତ୍ତିରେ ଶରୀରର ଏ ସବୁ ଲକ୍ଷଣ ପରିଦୃଷ୍ଟ ହୁଏ ନାହିଁ । ବ୍ରହ୍ମାଣ୍ଡକୁ ପରମାତ୍ମାଙ୍କ ଶରୀର କହିବା ଏକ ରୂପକ ଅଳଙ୍କାର । ଏଥିରେ ବାସ୍ତବିକତା ନାହିଁ । ତାହା ଯଥାର୍ଥ ହୋଇଥିଲେ ଆମେ ନିଜ ଦେହକୁ ପୂଜା କରି ପରମାତ୍ମାଙ୍କୁ ପ୍ରସନ୍ନ କରି ପାରିବା । ସେଥିପାଇଁ ମୂର୍ତ୍ତିର ଆବଶ୍ୟକତା ନାହିଁ । ସବୁ ପଦାର୍ଥରେ ପ୍ରଭୁ ବିଦ୍ୟମାନ । ସେ ସବୁ ପଦାର୍ଥ ପରମାତ୍ମାଙ୍କ ଶରୀର । ମୂର୍ତ୍ତି ତିଆରି କରି ପ୍ରାଣପ୍ରତିଷ୍ଠା କରିବାର କି ପ୍ରୟୋଜନ ?

—୧୯—

"ଯେପରି ଅଗ୍ନିର ଦୁଇଟି ରୂପ ଅଛି, ଯଥା—ନିରାକାର ଓ ସାକାର, ସେହିପରି ପରମାତ୍ମାଙ୍କ ଦୁଇଟି ରୂପ ନିରାକାର ଓ ସାକାର ।

ତେଣୁ ନିରାକାର ପରମାତ୍ମାଙ୍କୁ ନିର୍ଗୁଣ ଉପାସନା ଓ ସାକାର ପରମାତ୍ମାଙ୍କୁ ସଗୁଣ ଉପାସନ କରାଯାଏ । ମୂର୍ତ୍ତିପୂଜା ସଗୁଣ ଉପାସନା ।"

ରୂପ ହେଉଛି ଅଗ୍ନିର ସ୍ୱାଭାବିକ ଗୁଣ । ତେଣୁ ଅଗ୍ନି ନିରାକାର ହେବାର ପ୍ରଶ୍ନ ଉଠୁ ନାହିଁ । ଶାସ୍ତ୍ରମାନଙ୍କରେ ଅଗ୍ନିର ଦୁଇଟି ରୂପ, ଯଥା: ଉଦ୍‌ଭୂତ ଓ ଅନୁଦ୍‌ଭୂତ ବର୍ଣ୍ଣନା କରାଯାଇଛି । କେତେବେଳେ ଅଗ୍ନି ଦେଖାଯାଏ ନାହିଁ, କେତେବେଳେ ଦେଖାଯାଏ । ଦେଖା ନ ଯିବାବେଳେ ମଧ୍ୟ ସେ ଉପସ୍ଥିତ ଥାଏ । ଦୁଧ ମଧ୍ୟରେ ଘିଅ ଥାଏ କିନ୍ତୁ ଦେଖା ଯାଏ ନାହିଁ । ତିଳ ମଧ୍ୟରେ ତେଲ ଥାଏ କିନ୍ତୁ ଦେଖା ଯାଏ ନାହିଁ । କେତେକ ପ୍ରକ୍ରିୟାରେ ଘିଅ ବା ତେଲ ବାହାରେ ଓ ଦେଖାଯାଏ । ଘିଅ ବା ତେଲ ଉପସ୍ଥିତ ଥାଏ । ଯେଉଁ ବସ୍ତୁ ନିରାକାର, ତାହା ସର୍ବଦା ନିରାକାର ଥାଏ । ଗୋଟିଏ ପଦାର୍ଥରେ ଦୁଇଟି ବିରୋଧୀ ଗୁଣ କଦାପି ରହେ ନାହିଁ । ତେଣୁ ପରମାତ୍ମା ଏକେ ତ ନିରାକାର ଅଥବା ସାକାର । ସାକାର ହେଲେ ନିରାକାର ନ ହୋଇ ଏକ-ଦେଶୀୟ ହେବେ । ତାହାହେଲେ ସେ ସର୍ବବ୍ୟାପୀ ଓ ସର୍ବାନ୍ତର୍ଯାମୀ ହୋଇ ରହିବେ ନାହିଁ । ଫଳତଃ ସେ କର୍ମଫଳଦାତା ଓ ସୃଷ୍ଟିର ନିର୍ମାତା ଓ ନିୟାମକ ହେବେ ନାହିଁ । ସାକାର ହେଲେ ସେ ଜଡ଼ ବସ୍ତୁ ଭଳି ରହିବେ ଓ ଚେତନାଶୂନ୍ୟ ହେବେ । ତେଣୁ ପରମାତ୍ମା ସାକାର ନୁହନ୍ତି । ସେ ଜୀବ ପରି ନିରାକାର ମଧ୍ୟ ନୁହନ୍ତି । ତାହା ହେଲେ ସେ ଦେହଧାରଣ କରି ସୁଖଦୁଃଖାଦି ବିକାରଦ୍ୱାରା ଆକ୍ରାନ୍ତ ହେବେ । ନିର୍ଲେପ ଓ ନିର୍ବିକାର ହେବେ ନାହିଁ । ଦେହ କର୍ମର ଫଳ; ତେଣୁ ଦେହଧାରୀ ପ୍ରଭୁ କର୍ମବନ୍ଧନରେ ଆବଦ୍ଧ ରହିବେ । ଏପରି ଅବସ୍ଥାରେ ପରମାତ୍ମା ନ ହୋଇ ଜୀବାତ୍ମା ହୋଇଯିବେ ।

ଅନେକ ନିର୍ଗୁଣ ଓ ସଗୁଣ ଉପାସନାର ଭୁଲ ଅର୍ଥ ବୁଝନ୍ତି । ନିର୍ଗୁଣ ଉପାସକ ପରମାତ୍ମାଙ୍କର ଆଦି, ଅନ୍ତ, ଜରା, ମୃତ୍ୟୁ, ଦୁଃଖ ଆଦି ନାହିଁ ବୋଲି ଉପଲବ୍ଧି କରି ଉପାସନା କରନ୍ତି । ଅନ୍ୟ ପକ୍ଷରେ ସଗୁଣ ଉପାସକ ତାହାଙ୍କର ନ୍ୟାୟ, ଦୟା, ଆନନ୍ଦ ଆଦି ଧନାତ୍ମକ ଗୁଣଗୁଡ଼ିକୁ ହୃଦୟରେ ଧାରଣ ଚିନ୍ତନ କରନ୍ତି । ନିର୍ଗୁଣ ଉପାସନାର ପ୍ରଭାବରେ ନିର୍ଗୁଣତା ମିଳେ । ଈଶ୍ୱର ଅମର ; ମୁଁ ମଧ୍ୟ ଅମରତାର ପଥିକ ହେବି । ସଗୁଣ ଉପାସନାର ଫଳ ସଗୁଣତା ମିଳେ । ଈଶ୍ୱର ଦୟାଳୁ ; ମୁଁ ମଧ୍ୟ ଦୟାଳୁ ହେବି । ସଗୁଣ ଉପାସନାର ଅର୍ଥ ସାକାର ପୂଜା ନୁହେଁ ।

—୨୦—

"ବାଳିକାମାନେ କଣ୍ଢେଇ ଖେଳ ଖେଳନ୍ତି । ପରନ୍ତୁ ବିବାହ ହେବା ପରେ ସେ ଖେଳ ଛାଡ଼ି ଦିଅନ୍ତି । ସେହିପରି ପ୍ରଥମେ ମୂର୍ତ୍ତିପୂଜା କରାଯାଏ । ପ୍ରଭୁପ୍ରାପ୍ତି ପରେ ସେହି ପ୍ରଥା ଛାଡ଼ି ଦିଆଯାଏ ।"

ମୂର୍ତ୍ତିପୂଜକମାନେ ମୂର୍ତ୍ତିପୂଜାକୁ ଈଶ୍ୱରପ୍ରାପ୍ତିର ସାଧନ ବୋଲି ମନେ କରି ପାରନ୍ତି ; ପରନ୍ତୁ କଣ୍ଢେଇ ଖେଳକୁ ବାଳିକାମାନେ ବିବାହର ସାଧନ ବୋଲି ମନେ କରନ୍ତି ନାହିଁ । ତାହା ହୋଇଥିଲେ ସବୁ ପିତାମାତା କନ୍ୟାମାନଙ୍କ ବିବାହର ଚିନ୍ତାରୁ ମୁକ୍ତ ହୋଇଥାନ୍ତେ । କଣ୍ଢେଇ ଦେଇ ପିଲାମାନଙ୍କ ମନକୁ ଭୁଲାଇ ଦିଆଯାଏ । ମୂର୍ତ୍ତିପୂଜା କ'ଣ ସେହିପରି କାର୍ଯ୍ୟ ? ବୃଦ୍ଧା ହୋଇ ସୁଦ୍ଧା କୌଣସି ବାଳିକା କଣ୍ଢେଇ ଖେଳେ କି ? ପରନ୍ତୁ ବୃଦ୍ଧାବୃଦ୍ଧମାନେ ମଧ୍ୟ ମୂର୍ତ୍ତି ପୂଜା କରନ୍ତି । ପ୍ରକୃତ ପକ୍ଷରେ ସେମାନେ ବୁଝନ୍ତି ଯେ ତଦ୍ୱାରା ଈଶ୍ୱରଙ୍କ ନିକଟବର୍ତ୍ତୀ ହେଉଛନ୍ତି । ପରନ୍ତୁ ଆଶା ଦୁରାଶା ହୋଇ ରହେ ।

ବାଳକ ବାଳକା କଣ୍ଢେଇଙ୍କୁ ଖେଳ ପାଇଁ ବୁଝନ୍ତି, ପରନ୍ତୁ ମୂର୍ତ୍ତି-ପୂଜକ ଅଜ୍ଞାବନ ମୂର୍ତ୍ତିପୂଜାକୁ ଇଶ୍ୱରପୂଜା ବୋଲି ଭାବନ୍ତି । ସୁତରାଂ କଣ୍ଢେଇ ଖେଳର ତୁଳନା ଅଯୌକ୍ତିକ ।

—୨୧—

"ମୂର୍ତ୍ତିପୂଜାରେ କିଛି ଗୁଣ ଥାଉ ବା ନ ଥାଉ ହଜାର ହଜାର ବର୍ଷ ଧରି ଆମ ପୂର୍ବପୁରୁଷ ଏହି ପ୍ରଥା ପ୍ରଚଳନ କରିଛନ୍ତି । ଧର୍ମ ଦୃଷ୍ଟିରୁ ନ ହେଲେ ମଧ୍ୟ ଏହାକୁ ପ୍ରାଚୀନ ପରଂପରା ଭାବ ଅନୁସରଣ କଲେ ଦୋଷ ବା କ'ଣ ?"

ଏହି ପୁସ୍ତକରେ ବିଶଦ୍ଭାବରେ ବର୍ଣ୍ଣନା କରାଯାଇଛି ଯେ ମୂର୍ତ୍ତିପୂଜା ପ୍ରାଚୀନ ଋଷିମୁନିମାନଙ୍କର ଅବଦାନ ନୁହେ । ମହାଭାରତ ଯୁଦ୍ଧ ପରେ ପୌରାଣିକ କାଳରେ ବହୁ ଦେବତାବାଦ ଓ ମୂର୍ତ୍ତିପୂଜା କଳ୍ପିତ ହେଲ । କୌଣସି ପ୍ରଥାର ଗୁଣଦୋଷ ବିବେଚନ କରିବା ଆବଶ୍ୟକ । ପରଂପରାଗତ ବୋଲି ଦୋଷ କରଣୀୟ ନୁହେଁ । ମନ୍ଦ ପ୍ରଥାଗୁଡ଼ିକୁ ପୂର୍ବଜମାନଙ୍କ ଅବଦାନ କହି ସେଥିରେ ଜୋକ ପରି ଲାଗି ରହିବା ମନୁଷ୍ୟତା ନୁହେଁ । ବଗିଚାରେ ଉଠିଥିବା ଅନାବନା ଗଛକୁ ସଫା କରିଦେବା ଉଚିତ । ସେହିପରି ଯେଉଁ ସବୁ ପ୍ରଥା ଆମ ସାମାଜିକ ଓ ଧାର୍ମିକ ଜୀବନ ପାଇଁ ହାନିକାରକ, ସେ ସମସ୍ତକୁ ସମୂଳେ ଉତ୍ପାଟନ କରିବା ଆମର କର୍ତ୍ତବ୍ୟ ।

—୨୨—

"ମୂର୍ତ୍ତିପୂଜା ହିନ୍ଦୁଧର୍ମର ଆତ୍ମା ସଦୃଶ । ତାକୁ ଦୂର କରିବା ପାଇଁ ବିରାଟ ସାହସ ଆବଶ୍ୟକ । ପରନ୍ତୁ ଉଙ୍କ୍ଷାର ହିନ୍ଦୁ ଜାତିରେ

ପାରସ୍ପରିକ ମନୋମାଳିନ୍ୟ ଓ ପ୍ରବଳ ବିଦ୍ରୋହ ସୃଷ୍ଟି ହେବ । ତାହା ହିନ୍ଦୁ ସଙ୍ଗଠନ ଓ ରାଷ୍ଟ୍ରୋନ୍ନତିରେ ବାଧକ ହେବ । ତେଣୁ ବର୍ତ୍ତମାନ ପରିସ୍ଥିତିରେ ମୂର୍ତ୍ତିପୂଜା ବିରୋଧରେ କିଛି କହିବା ହାନିପ୍ରଦ ଅଟେ ।"

ମୂର୍ତ୍ତିପୂଜା ଯେ ପୌରାଣିକ ହିନ୍ଦୁ ଧର୍ମର ପ୍ରାଣ ସ୍ୱରୂପ—ଏଥିରେ ସନ୍ଦେହ ନାହିଁ । ଏହି ଧର୍ମର ସମସ୍ତ କ୍ରିୟାକଳାପ ମୂର୍ତ୍ତିପୂଜା ସହିତ ନିବିଡ଼ ଭାବରେ ଜଡ଼ିତ । ପରନ୍ତୁ ଭ୍ରାନ୍ତିକୁ ଭୟ କରି କୌଣସି ସଂସ୍କାରକୁ ସ୍ଥଗିତ ରଖିବା ଉଚିତ ନୁହେ । ରୋଗ ଯେତିକି ଭୟାନକ ହୁଏ, ତାକୁ ଦୂର କରିବା ପାଇଁ ସେତିକି ପ୍ରବଳ ଉପଚାର ଆବଶ୍ୟକ ହୁଏ । ଘାଆକୁ ଦୂର କରିବା ନିମନ୍ତେ କିଷ୍ଟ ସାପେକ୍ଷ ଶସ୍ତ୍ର-ଉପଚାର କରାଯାଏ । ମୂର୍ତ୍ତିପୂଜା ହିନ୍ଦୁ ସଙ୍ଗଠନର ଦୁର୍ବଳତାର ମୂଳ କାରଣ । ତାହା ଆମର ପରାଧୀନତା ଓ ପରସ୍ପର ବିଦ୍ୱେଷର ମୁଖ୍ୟ ହେତୁ । ମୂଳ କାରଣକୁ ଦୂର କରିବା ସର୍ବାଦୌ ପ୍ରୟୋଜନ । ବିପ୍ଳବ ରାଜନୈତିକ ବା ଧାର୍ମିକ ହେଉ, ସେଥିରୁ ବିରୋଧ ଓ ଯନ୍ତ୍ରଣା ଜାତ ହେବା ସ୍ୱାଭାବିକ । ପରନ୍ତୁ ବିପ୍ଳବ ଜୀବନର ଚିହ୍ନ । ଧାର୍ମିକ ଓ ସାମାଜିକ ସଂସ୍କାରକୁ ଅବହେଳା କରିବା ସ୍ୱାଧୀନତାର ଅର୍ଥ ନୁହେ । ଆମ ଦେଶର ପରତନ୍ତ୍ରତାର ମୂଳ କାରଣ ଥିଲା ଧାର୍ମିକ ଓ ସାମାଜିକ—ରାଜନୈତିକ ନୁହେ ।

ଯେଉଁମାନଙ୍କ ହାତରେ ରାଜଦଣ୍ଡ ରହେ, ସେମାନେ ଯେ ଧାର୍ମିକ ଓ ସାମାଜିକ ସଂସ୍କାର ପାଇଁ ଚେଷ୍ଟାଶୀଳ ହେବେ—ଏଭଳି ନିଶ୍ଚିତତା ନାହିଁ । ତେଣୁ ଧାର୍ମିକ ଓ ସାମାଜିକ ବିଷୟଗୁଡ଼ିକୁ ପଛରେ ରଖି ରାଜନୈତିକ ସମସ୍ୟାଗୁଡ଼ିକର ସମାଧାନ କରିବା ଅସଂଗତ । ଜନସାଧାରଣ ସାମାଜିକ ଦୃଢ଼ତା ପ୍ରତି ଶ୍ରଦ୍ଧାଶୀଳ

ନ ହେଲେ ଆବେଗବଶତଃ ମନ୍ଦ ପ୍ରକୃତିର ଲୋକଙ୍କୁ ପ୍ରତିନିଧି ଭାବରେ ନିର୍ବାଚିତ କରନ୍ତି । ଉଭୟ ଶାସକ ଓ ଶାସିତ ଧାର୍ମିକ ଓ ସାମାଜିକ କୁସଂସ୍କାରଗୁଡ଼ିକୁ ଅବହେଳନା କରନ୍ତି । ଫଳରେ ରାଜନୈତିକ ସ୍ୱାଧୀନତା ଲାଭ କରି ମଧ୍ୟ ସୁଖୀ ଲୋକେ ଅଜ୍ଞାନବଶତଃ ସୁଖ ପାଆନ୍ତି ନାହିଁ ।

—୨୩—

"ହିନ୍ଦୁ ଧର୍ମରେ ବହୁଦେବତା ବିଶ୍ୱାସ ନାହିଁ । ମନ୍ଦିର ମଧ୍ୟରେ ଭକ୍ତ ଯେଉଁ ସ୍ତୁତି ପ୍ରାର୍ଥନା କରନ୍ତି, ସେଥିରେ ପରମାତ୍ମାଙ୍କୁ ନିରାକାର ଆଦି ବିଶେଷଣରେ ଭୂଷିତ କରନ୍ତି ।"

ଏହି ପୁସ୍ତକରେ ବର୍ଣ୍ଣିତ ହୋଇଛି ଯେ ହିନ୍ଦୁଧର୍ମର ଗୋଟିଏ ସଂପ୍ରଦାୟ ଅନ୍ୟର ଉପାସ୍ୟ ଦେବଙ୍କ ପୂଜାକୁ ନିଷିଦ୍ଧ କରିବା ସଙ୍ଗେ ସଙ୍ଗେ ତାହାଙ୍କୁ ନିନ୍ଦା କରେ । ଏପରିକି ଗୋଟିଏ ସମ୍ପ୍ରଦାୟ ମଧ୍ୟରେ ବିଭେଦ ଦେଖାଯାଏ । ବୈଷ୍ଣବମାନେ ରାମ ଓ କୃଷ୍ଣ ଉଭୟଙ୍କୁ ପୂର୍ଣ୍ଣାବତାର ମାନନ୍ତି । କିନ୍ତୁ ଏହି ସଂପ୍ରଦାୟର ଗୋଟିଏ ଦଳ ଶ୍ରୀରାମଙ୍କୁ ଓ ଅନ୍ୟ ଦଳ ଶ୍ରୀକୃଷ୍ଣଙ୍କୁ ବିଶେଷ ଭକ୍ତି କରନ୍ତି । ବେଳେବେଳେ ଜଣେ ଅନ୍ୟର ଉପାସ୍ୟ ଦେବଙ୍କୁ ପୂଜା କରିବା ପାଇଁ କୁଣ୍ଠାବୋଧ କରେ ।

ପରମ ବୈଷ୍ଣବ ଶ୍ରୀ ଗୋସ୍ୱାମୀ ତୁଳସୀଦାସ ମଥୁରା ଆସି କହିଥିଲେ—

କହା କହୋ ଛବି ଆଜକୀ, ଭଲେ ବନେ ହୋ ନାଥ ।
ତୁଳସୀ ମସ୍ତକ ତବ ନବେ ଧନୁଷ ବାଣ ଲେ ହାଥ ॥

ତୁଳସୀ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଆଗରେ ନତମସ୍ତକ ହେବାପାଇଁ ଇଚ୍ଛା କଲେ ନାହିଁ; କାରଣ ସେହି ମୂର୍ତ୍ତି ସମ୍ମୁଖରେ ଧନୁଷବାଣ ଧାରଣ କରି ନ ଥିଲେ । ଏହି ଘଟଣା ସତ୍ୟ ହେଉ ବା ନ ହେଉ, ଏଥିରୁ ସିଦ୍ଧ ହୁଏ ଯେ ହିନ୍ଦୁମାନଙ୍କ ପ୍ରତ୍ୟେକ ସଂପ୍ରଦାୟ ମଧ୍ୟରେ ମୂର୍ତ୍ତିକୁ ନେଇ ବିଭେଦ ରହିଛି ।

ଏକ ପ୍ରସିଦ୍ଧ ଶ୍ଳୋକୋକ୍ତି ଅଛି—'ହସ୍ତିନା ତାଡ଼ୟମାନୋଽପି ନ ଗଚ୍ଛେତ୍ ଜୈନ ମନ୍ଦିରମ୍' ଅର୍ଥାତ୍ ହସ୍ତୀଦ୍ୱାରା ଆକ୍ରାନ୍ତ ହୋଇ ମଧ୍ୟ ଆଶ୍ରୟ ନିମନ୍ତେ ଜୈନ ମନ୍ଦିରରେ ପ୍ରବେଶ କର ନାହିଁ ।

ମୂର୍ତ୍ତିପୂଜକ ପ୍ରାର୍ଥନା ମନ୍ତ୍ରରେ ପ୍ରଭୁଙ୍କୁ ନିରାକାର ବୋଲି ବର୍ଣ୍ଣନା କରି ପୁଣି ମୂର୍ତ୍ତିକୁ ପୂଜା କରିବାବେଳେ ଈଶ୍ୱରଙ୍କୁ ପୂଜା କରୁଅଛୁ ବୋଲି କହିଥାନ୍ତି । ସେ ଈଶ୍ୱରଙ୍କୁ ଉଭୟ ସାକାର ଓ ନିରାକାର ମଣେ । ତେଣୁ ବେଳେବେଳେ ମୂର୍ତ୍ତିପୂଜା ସମୟରେ ନିରାକାର ଗୁଣକୁ ବର୍ଣ୍ଣନା କରେ । ହିନ୍ଦୁଧର୍ମରେ ବହୁଦେବ ପୂଜା ନାହିଁ କହିବା ସତ୍ୟର ଅପଳାପ । ଆଧୁନିକ ହିନ୍ଦୁଧର୍ମ ପରବର୍ତ୍ତୀ ପୁରାଣମାନଙ୍କ-ଦ୍ୱାରା ଆଚ୍ଛନ୍ନ । ପୁରାଣମାନଙ୍କରେ ନାନା ଦେବ-ଦେବୀଙ୍କ କାହାଣୀ, ଯଥା: ସେମାନଙ୍କ ଜନ୍ମ, ବିବାହ, ସନ୍ତାନ, ଯୁଦ୍ଧ ଆଦି ବର୍ଣ୍ଣନା ମିଳେ । ଏସବୁ କଥନ ସତ୍ତ୍ୱେ ହିନ୍ଦୁଧର୍ମ ବହୁ ଦେବତାବାଦୀ ନୁହେ କହିବା ଅନୁଚିତ ଅଟେ ।

—୨୪—

"ଫଳରୁ ଗଛର ଗୁଣ ଜଣାଯାଏ । ମୂର୍ତ୍ତିପୂଜାରେ ବିଶ୍ୱାସ ରଖୁଥିବା ଅନେକ ବ୍ୟକ୍ତି ମହାତ୍ମା ହୋଇ ସାରିଛନ୍ତି ଓ ହେଉଛନ୍ତି । ସେମାନଙ୍କ ଚରିତ୍ର ଆଦର୍ଶମୟ । ତାହାହେଲେ ମୂର୍ତ୍ତିପୂଜା ଦୋଷାବହ ବୋଲି କିପରି ବୁଝାଯିବ ?"

ମୂର୍ତ୍ତିପୂଜାର କୁପରିଣାମ ବିଷୟରେ ଏହି ପୁସ୍ତକରେ ବର୍ଣ୍ଣନା କରାଯାଇଛି । ଏହି ପ୍ରଥାର ଆଡ଼ୁଆଳରେ ନାନା ଦୁଷ୍କର୍ମ ହେଉଛି । ମନ୍ଦିର ଓ ତୀର୍ଥ ସ୍ଥଳଗୁଡ଼ିକୁ ଦେଖି ଓ ସେଠାରେ ଥିବା ଅଧିକାଂଶ ପଣ୍ଡା ପୂଜାରୀଙ୍କ ଜୀବନଚର୍ଯ୍ୟାକୁ ନିରୀକ୍ଷଣ କରି ଏକଥା ପରିଷ୍କାର ବୁଝିହୁଏ । ମିଥ୍ୟା, ଛଳ, କପଟ, ଦାମ୍ଭିକତା ଆଦି ସବୁ ଅସତ୍ କାର୍ଯ୍ୟ ଦେବମନ୍ଦିରମାନଙ୍କରେ ଦେଖିବାକୁ ମିଳେ । ନିରୀହ ପଶୁ-ମାନଙ୍କଠାରୁ ଆରମ୍ଭ କରି ମନୁଷ୍ୟ ପରି ବୁଦ୍ଧିମାନ ଜୀବ ପର୍ଯ୍ୟନ୍ତ ସମସ୍ତେ ଦେବଦେବୀ ପୀଠରେ ବଳି ଦିଆ ଯାଆନ୍ତି । ଏଭଳି ନାରକୀୟ ପ୍ରଥାକୁ ପୂଜା ନାମ ଦିଆଯାଏ । ଦେବଦାସୀ ପ୍ରଥା ପରି ହୀନକାର୍ଯ୍ୟ-ମାନ ମନ୍ଦିରମାନଙ୍କରେ ପ୍ରଚଳିତ । ହିନ୍ଦୁଜାତିର ମାନସିକ, ସାମାଜିକ ଓ ରାଜନୈତିକ ଦାସତା ପ୍ରତିମାପୂଜାର ଫଳ ।

ଯେଉଁମାନେ ମୂର୍ତ୍ତିପୂଜାରେ ବିଶ୍ୱାସ ରଖି ମହାତ୍ମା ହୋଇଛନ୍ତି, ସେମାନଙ୍କ ଜୀବନୀ ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ସେମାନେ ପରମ୍ପରାଗତ ଭାବରେ ଏଥିରେ ଜଡ଼ିତ ରହିଛନ୍ତି । ମୂର୍ତ୍ତିପୂଜା ସେମାନଙ୍କର ମାହାତ୍ମ୍ୟର କାରଣ ନୁହେଁ । ଯମ, ନିୟମାଦି ମଣି-ମାଳାରେ ଭୂଷିତ ହୋଇ ସେମାନେ ଜୀବନକୁ ମହାନ୍ କରିଛନ୍ତି । ଏହି ପୁସ୍ତକରେ ବିଶଦ୍ ଭାବରେ କୁହାଯାଇଛି ଯେ, ବୈଦିକ କାଳରୁ ଆରମ୍ଭ କରି ଉପନିଷଦ୍ କାଳ, ରାମାୟଣ କାଳ, ମହାଭାରତ କାଳରେ ଆର୍ଯ୍ୟଜାତିର ଉତ୍କର୍ଷ ନିରାକାର ବ୍ରହ୍ମୋପାସନା ଫଳରୁ ଘଟିଥିଲା । ପ୍ରାଚୀନ ଋଷିମାନଙ୍କର ଆତ୍ମବଳ ସହିତ ପରବର୍ତ୍ତୀ ମୂର୍ତ୍ତିପୂଜା ସମୟର ସାଧକମାନେ ସମକକ୍ଷ ନୁହନ୍ତି । ଆଧୁନିକ ସାଧକମାନଙ୍କ ମଧ୍ୟରେ ରାଜା ରାମମୋହନ ରାୟ, ଦୟାନନ୍ଦ ସରସ୍ୱତୀ ତଥା ବହୁ ଅନ୍ୟ ମହା-ପୁରୁଷମାନେ ମୂର୍ତ୍ତିପୂଜାର ଯୁକ୍ତିଯୁକ୍ତ ସମୀକ୍ଷା କରିଛନ୍ତି । ସଂଯମୀ ଯୋଗୀ ପୁରୁଷମାନେ ମୂର୍ତ୍ତିପୂଜାର ମାଧ୍ୟମରେ ନୁହେଁ, ବରଂ

ସେମାନଙ୍କର ଯୋଗଶୀଳ କାର୍ଯ୍ୟ ଯୋଗୁଁ ପ୍ରସିଦ୍ଧ ହୋଇଛନ୍ତି । ସେମାନେ ଏହି ପରବର୍ତ୍ତୀ ପରମେଶ୍ୱରଙ୍କୁ ଗ୍ରହଣ ପାରି ନାହାନ୍ତି । ବେଦୋକ୍ତ ନିରାକାର ତତ୍ତ୍ୱର ଗମ୍ଭୀର ଅନୁଶୀଳନ କରି ନାହାନ୍ତି ।

—୨୪—

"ଯେଉଁମାନେ ଭବନ ବା ଅଟ୍ଟାଳିକା ନିର୍ମାଣ କରନ୍ତି, ସେମାନେ ଅସ୍ଥାୟୀ ମଞ୍ଚ ତିଆରି କରି ତା' ଉପରେ ଠିଆ ହୋଇ କାର୍ଯ୍ୟ କରନ୍ତି । ଭବନ ନିର୍ମିତ ହେବା ପରେ ମଞ୍ଚର କୌଣସି ଆବଶ୍ୟକତା ନ ଥାଏ । ସେହିପରି ଜ୍ଞାନୀମାନଙ୍କ ପାଇଁ ମନ୍ଦିର, ତୀର୍ଥାଦିର ଉପଯୋଗ ନ ଥାଏ । ସାଧାରଣ ମନୁଷ୍ୟଙ୍କ ପାଇଁ ପୂଜା, ସ୍ନାନ ଆଦି ଆବଶ୍ୟକ ହୁଏ ।"

—ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ

ସମୀକ୍ଷା ସଂଖ୍ୟା ୧୧ରେ ସୂଚିତ ହୋଇଛି ଯେ ମୂର୍ତ୍ତିପୂଜା ଈଶ୍ୱର ପ୍ରାପ୍ତିର ସୋପାନ ନୁହେଁ । ଉଲ୍ଲିଖିତ ମନ୍ତବ୍ୟର ଉତ୍ତର ମଧ୍ୟ ସେହିଭଳି । ଯୋଗସାଧନ ଓ ମୂର୍ତ୍ତିପୂଜା ଅଧ୍ୟାୟରେ ସିଦ୍ଧ କରାଯାଇଛି ଯେ ଯୋଗଦର୍ଶନ ଈଶ୍ୱର ପ୍ରାପ୍ତିର ସାଧନଗୁଡ଼ିକରେ ମୂର୍ତ୍ତି-ପୂଜାକୁ ସ୍ଥାନ ଦେଇ ନାହାନ୍ତି । ସେଥିରେ ଯମ-ନିୟମାଦି ଅଷ୍ଟାଙ୍ଗ ଯୋଗ ସନ୍ନିବିଷ୍ଟ । ଅଷ୍ଟାଙ୍ଗ ଯୋଗ ସାଧାରଣ ଓ ଅସାଧାରଣ ସବୁ ମନୁଷ୍ୟଙ୍କ ଅଭିପ୍ରେତ । ସାଧାରଣ ମନୁଷ୍ୟଙ୍କ ପାଇଁ ଯୋଗଦର୍ଶନରେ ମୂର୍ତ୍ତିପୂଜା ପରି ହାନିକାରକ ପ୍ରଥାର ଚିନ୍ତା କରାଯାଇନାହିଁ । ଘର ତିଆରି ପାଇଁ ବ୍ୟବହୃତ ହେଉଥିବା ମଞ୍ଚର ତୁଳନା ଦେଇ ଯମ-ନିୟମାଦିର ବର୍ଣ୍ଣନା କରାଯାଇପାରେ, ପରନ୍ତୁ ସେଭଳି ଉପମା ନେଇ ପ୍ରତିମାପୂଜାର ବିଶ୍ଳେଷଣ କରିବା ସମ୍ଭବ ନୁହେଁ । ମୂର୍ତ୍ତିପୂଜା ଏକ ଗର୍ତ୍ତ ସଦୃଶ । ସେଥିରେ ପଡ଼ିଲେ ଉତ୍ଥାନ ସମ୍ଭବ ନୁହେଁ । ଆଜି

ପର୍ଯ୍ୟନ୍ତ ଏଭଳି ବ୍ୟକ୍ତି ହୋଇ ନାହାନ୍ତି ଯେ ମୂର୍ତ୍ତିପୂଜାକୁ ପ୍ରାଥମିକ ସାଧନ ହିବ ପରବର୍ତ୍ତୀ କାଳରେ ତାକୁ ତ୍ୟାଗ କରିଛନ୍ତି । ଜଣେ ମୂର୍ତ୍ତିପୂଜକ ସର୍ବଦା ମୂର୍ତ୍ତିପୂଜକ ହୋଇ ରହେ ।

ରାଜଗୋପାଳାଚାରି ଏକ ସ୍ଥଳରେ କହିଛନ୍ତି—'ଯେଉଁମାନେ ମୂର୍ତ୍ତିପୂଜାକୁ ପସନ୍ଦ କରନ୍ତି ନାହିଁ, ସେମାନେ ତାହା କରନ୍ତୁ । ପରନ୍ତୁ ତାହାର ଖଣ୍ଡନ କରନ୍ତୁ ନାହିଁ । ଏଭଳି କରିବା ମୂର୍ଖତା' । ରାଜାଜୀଙ୍କ କଥନ ସତ୍ୟ ହେଲେ ବେଦ ଓ ଉପନିଷଦର ସମସ୍ତ ଋଷି ମୂର୍ଖ । ମୂର୍ତ୍ତିପୂଜାର କୁପରିଣାମକୁ ଜନସାଧାରଣଙ୍କ ସମକ୍ଷରେ ଉପସ୍ଥାପିତ କରିଥିବା ରାମମୋହନ ରାୟ, ଦୟାନନ୍ଦ, ମହମ୍ମଦ, ନାନକ, କବୀର, ଦାଦୁ ଆଦି ସମସ୍ତେ ମୂର୍ଖ । ଖ୍ରୀଷ୍ଟ, ଶଙ୍କର, ତୁକାରାମ, ରାମଦାସ, ଜ୍ଞାନେଶ୍ୱର, ମାର୍ଟିନ ଲୁଥର, ବଶବେଶ୍ୱର, ଶିବାକ୍ୟବର, ମାଣିକ୍ଲ, ବାଚକର ଇତ୍ୟାଦି ସନ୍ଥ ଓ ଆଚାର୍ଯ୍ୟ ଅଜ୍ଞ । ଅବଶ୍ୟ କାଳକ୍ରମେ କେତେକ ଆଚାର୍ଯ୍ୟଙ୍କ ଶିଷ୍ୟଗଣ ମୂର୍ତ୍ତିପୂଜା ଅବଲମ୍ବନ କରିଛନ୍ତି ଓ ପୂଜା ନାମରେ ପ୍ରଚଳିତ ସହଜ ପନ୍ଥା ଗ୍ରହଣ କରିଛନ୍ତି, ଯାହା ବେଦ, ଉପନିଷଦ ଆଦି ମୂଳଗ୍ରନ୍ଥରେ କଳ୍ପନା ସୁଦ୍ଧା କରି ଯାଇନାହିଁ ।

—୨୭—

"ଥରେ ଅଲବରର ରାଜା ସ୍ୱାମୀ ବିବେକାନନ୍ଦଙ୍କୁ କହିଥିଲେ ଯେ, ମୂର୍ତ୍ତିପୂଜାରେ ସେ ବିଶ୍ୱାସ ରଖନ୍ତି ନାହିଁ । ରାଜାଙ୍କ କଥନ ଶୁଣି ସ୍ୱାମୀ ବିବେକାନନ୍ଦ କାନ୍ଥରେ ଝୁଲୁଥିବା ଏକ ଚିତ୍ରକୁ ଆଣି ପଚାରିଲେ —'ଏହା କାହାର ଛବି ?' ସେଠାରେ ଥିବା ଲୋକଙ୍କୁ ସ୍ୱାମୀଜୀ ଛବି ଉପରେ ଛେପ ପକାଇବା ପାଇଁ କହିଲେ । କେହି ହେଲେ ସେପରି କରିବାପାଇଁ ସାହସ କଲେ ନାହିଁ । ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇ

ରହିଲେ । ସେତେବେଳେ ସ୍ୱାମୀଜୀ କହିଲେ—'ଚିତ୍ର ମଧ୍ୟରେ ମହାରାଜା ନାହାନ୍ତି । ତଥାପି ତା' ଉପରେ ଛେପ ପକାଇବା ପାଇଁ କେହି ରାଜି ନାହାନ୍ତି । ସମସ୍ତେ ବିଶ୍ୱାସ କରନ୍ତି ଯେ ଏଭଳି କାର୍ଯ୍ୟ କରିବାଦ୍ୱାରା ସେମାନଙ୍କର ମହାରାଜା ଅପମାନିତ ହେବେ । ମୂର୍ତ୍ତିପୂଜା ଠିକ ଏହିପରି । କେହି ଇଟା, ପଥର ବା କାଠର ପୂଜା କରେ ନାହିଁ । ପରନ୍ତୁ ସେଥିରେ ନିଜ ଇଷ୍ଟଦେବଙ୍କ ମୂର୍ତ୍ତି ନିର୍ମାଣ କରି ପୂଜା କରେ । ସେହି ମୂର୍ତ୍ତିରେ ସେ ଇଷ୍ଟଦେବଙ୍କ ଛାୟା ଦେଖେ ; ଇଟା ପଥର ଦେଖେ ନାହିଁ । ମୂର୍ତ୍ତିପୂଜକମାନେ କେବେ କହନ୍ତି ନାହିଁ—ହେ ଇଟା, ହେ ପଥର ! ମୁଁ ତୁମର ପୂଜା କରୁଅଛି । ତୁମେ ମୋ ପ୍ରତି ଦୟାଳୁ ହୁଅ ।"

ଏହିଠାରେ ଜଗଦ୍ ପ୍ରସିଦ୍ଧ ବିଦ୍ୱାନ୍ ସ୍ୱାମୀ ବିବେକାନନ୍ଦ ବାକ୍-ଚାତୁର୍ଯ୍ୟର ଆଶ୍ରୟ ନେଇଛନ୍ତି । ପ୍ରଶ୍ନ ଏକ ପ୍ରକାର ତ ଉତ୍ତର ଅନ୍ୟ କିଛି । ଜାଣିଶୁଣି ଜଣକର ଚିତ୍ର ବା ପ୍ରତିମୂର୍ତ୍ତିକୁ ଅପମାନ କରିବା ତାହା ପ୍ରତି ଅପମାନ । ଅବଶ୍ୟ ଦୈନନ୍ଦିନ ସମ୍ବାଦପତ୍ରରେ ଛପା ଯାଉଥିବା ଚିତ୍ର ଆମ ଅଜାଣତରେ ରଦ୍ଦି କାଗଜ ଦୋରେ ପଡ଼ି, ବହୁ ଗର୍ହିତ କାର୍ଯ୍ୟରେ ଲାଗେ । ଏଠାରେ ପ୍ରଶ୍ନ ହେଉଛି ମୂର୍ତ୍ତିପୂଜାର ମୂର୍ତ୍ତିକୁ ଅପବିତ୍ର କରିବାର ନୁହେଁ । ପରମାତ୍ମା ନିରାକାର ଓ ଅମୂର୍ତ୍ତ । ତେଣୁ ତାଙ୍କର କୌଣସି ଚିତ୍ର ବା ମୂର୍ତ୍ତି ନାହିଁ, ଯାହାକୁ ଅପବିତ୍ର ଓ ଅପମାନିତ କରାଯିବ । ଏହା ଠିକ୍ ଯେ ପ୍ରଭୁ ସର୍ବବ୍ୟାପକ, ସବୁ-ଠାରେ ପରିବ୍ୟାପ୍ତ । ତେବେ ତାହାର ଅର୍ଥ ନୁହେଁ ଯେ ପ୍ରତ୍ୟେକ ବସ୍ତୁ ପରମେଶ୍ୱର । ତାକୁ ସ୍ୱୀକାର କଲେ ଆମେ ଯେଉଁ ପୃଥିବୀ, ମାଟି, ପଥରରେ ମଳମୂତ୍ର ତ୍ୟାଗ କରୁ, ଯାହା ଉପରେ ଚାଲୁ—ସେ ସମସ୍ତ ପରମେଶ୍ୱର ହୋଇଥିବାରୁ ଆମର ଏଭଳି କାର୍ଯ୍ୟଦ୍ୱାରା ସେ ଅପବିତ୍ର ହେବେ । ପ୍ରକୃତ ପ୍ରଶ୍ନ ହେଉଛି ଯେଉଁ ମୂର୍ତ୍ତିର ପୂଜା କରାଯାଏ, ତାହା

କ'ଣ ପରମେଶ୍ୱରଙ୍କର ? ତା' ନ ହେଲେ ତାଙ୍କୁ ଈଶ୍ୱର ପୂଜା କପରି କୁହାଯିବ ? କୌଣସି ମହାପୁରୁଷଙ୍କ ଉପଦେଶର ଅନୁକରଣରେ ତାଙ୍କର ପୂଜା ହୁଏ । ତାଙ୍କ ଚିତ୍ର ଦେଖି ତାଙ୍କ ସଦ୍‌ଗୁଣର ସ୍ମରଣ ଆସେ । ପରନ୍ତୁ ମହାପୁରୁଷମାନଙ୍କ ଚିତ୍ର ବା ମୂର୍ତ୍ତିକୁ ଜୀବନ୍ତଙ୍କ ପରି ସ୍ନାନ କରାଇବା, ଖୁଆଇବା, ଭୋଗ ଚଢ଼ାଇବା, ଶୁଆଇବା ଇତ୍ୟାଦି ଅନୁଚିତ । ତଦ୍ଦ୍ୱାରା ମୂର୍ତ୍ତିକର୍ତ୍ତା ସେମାନଙ୍କୁ ନିଜ ଉପରେ ନିର୍ଭରଶୀଳ ଓ କ୍ଷୁଦ୍ର ବୋଲି ଭାବେ ।

ମୂର୍ତ୍ତିପୂଜକ ମୂର୍ତ୍ତିକୁ ପାଷାଣ ଭାବିଥାଏ । ପୂଜା କରିବାପାଇଁ ସେଥିରେ ପ୍ରାଣପ୍ରତିଷ୍ଠା କରେ । ସେ ମୂର୍ତ୍ତିକୁ ହିଁ ଈଶ୍ୱର ଭାବି ପୂଜା କରେ—ସେଥିରେ ଥିବା ବ୍ୟାପକ ପରମାତ୍ମାଙ୍କୁ ନୁହେ । ତାହା ନ ହୋଇଥିଲେ ପ୍ରାଣ ପ୍ରତିଷ୍ଠାର ଅର୍ଥ କ'ଣ ? ସେଥିରେ ପରମାତ୍ମା ପୂର୍ବରୁ ନ ଥିଲେ କି ? ମୂର୍ତ୍ତିପୂଜାରେ ଈଶ୍ୱରଙ୍କ ପୂଜା ହେଉଥିଲେ ସ୍ନାନ, ଚନ୍ଦନଲେପନ, ଭୋଗ-ଧୂପଦାନ ଆଦି ଅର୍ଚ୍ଚନାର ମୂଲ୍ୟ ନାହିଁ କାରଣ ପରମାତ୍ମା ଏସବୁ ଆବଶ୍ୟକ କରନ୍ତି ନାହିଁ । ସେ ଭୋଗୀ ନୁହନ୍ତି ; ତାହାଙ୍କ ଭୋଗର କି ପ୍ରୟୋଜନ ? ଭୋଗ ପ୍ରାଣୀଙ୍କ ପାଇଁ । ତେଣୁ ସ୍ୱାମୀ ବିବେକାନନ୍ଦ ଯେଉଁ ଯୁକ୍ତି ଦେଇଛନ୍ତି, ତାହା ହେତ୍ୱାଭାସ ଏବଂ ଭ୍ରାନ୍ତ ।

---

# ଉପାସନା ବିଧି

ମୂର୍ତ୍ତିପୂଜାର ଅଭାବରେ ଆମ୍ଭମାନଙ୍କର ଉପାସନା ବିଧି କିଭଳି ହେବ ? ଏହି ପୁସ୍ତକରେ ପୂର୍ବରୁ ପ୍ରମାଣିତ କରାଯାଇଛି ଯେ ମହାଭାରତ କାଳ ପରେ ମୂର୍ତ୍ତିପୂଜାର ସୂତ୍ରପାତ ହୋଇଛି । ଆମର ପ୍ରାଚୀନ ବୈଦିକ ଧର୍ମ ଓ ସଂସ୍କୃତି ସହିତ ଏହାର ସମ୍ବନ୍ଧ ନାହିଁ । ଯେତେବେଳେ ମୂର୍ତ୍ତିପୂଜା ପ୍ରଚଳିତ ନ ଥିଲା, ଆମ ଦେଶର ଜନସାଧାରଣ ଏକ ସର୍ବାଙ୍ଗପୂର୍ଣ୍ଣ ଉପାସନା ବିଧି ଅନୁସରଣ କରୁଥିଲେ । ଆମର ଇତିହାସ ଓ ଧର୍ମଶାସ୍ତ୍ରରେ ଏହାର ଯଥେଷ୍ଟ ବର୍ଣ୍ଣନା ରହିଛି । ଏହା ନ ବୁଝି ମୂର୍ତ୍ତିପୂଜାର ସମର୍ଥକମାନେ ବିଷୟଟିକୁ ଜଟିଳ କରି ପରିବେଷଣ କରନ୍ତି ଓ ମୂର୍ତ୍ତିପୂଜା ବନ୍ଦ ହେଲେ ଈଶ୍ୱରପୂଜା ପ୍ରତି ଲୋକେ ବିମୁଖ ହେବେ ବୋଲି ପ୍ରଚାର କରନ୍ତି ।

ଯୋଗ ପ୍ରଣାଳୀ ଆତ୍ମା ଓ ପରମାତ୍ମାଙ୍କ ମିଳନ ପାଇଁ ଉଚିତ । ଏହାର ପ୍ରତ୍ୟେକ ଅଙ୍ଗକୁ ଅନୁସରଣ କରିବା ଜନସାଧାରଣଙ୍କ ଶକ୍ତି ବାହାରେ ନୁହେ । ଅବଶ୍ୟ ପ୍ରତ୍ୟେକ ମନୁଷ୍ୟ ଉତ୍କୃଷ୍ଟ ବୈଜ୍ଞାନିକ, ସାହିତ୍ୟିକ ଅଥବା କଳାକାର ହୋଇ ପାରେ ନାହିଁ । ସେହିପରି ପ୍ରତ୍ୟେକ ବ୍ୟକ୍ତି ମହାନ୍ ଯୋଗୀ ହେବା ସମ୍ଭବ ନୁହେ । ଯେ ଯେତିକି ପରିଶ୍ରମ କରେ, ସେତିକି ଉନ୍ନତି ଲାଭ କରେ । ପୂର୍ବବର୍ତ୍ତୀ ସଂସ୍କାର ଓ ଇହ ଜୀବନର ପରିବେଷ୍ଟନୀ ଉପରେ ବ୍ୟକ୍ତିତ୍ୱ ନିର୍ମାଣ ନିର୍ଭର କରେ । ମନୁଷ୍ୟ ମନୁଷ୍ୟ ମଧ୍ୟରେ ଥିବା ପ୍ରଭେଦକୁ ବୁଝିବାକୁ ହେଲେ ଜନ୍ମଜନ୍ମାନ୍ତରର ସଂସ୍କାରକୁ ସ୍ୱୀକାର କରିବାକୁ ହେବ । ନିଜର

ଭୌତିକ ଉନ୍ନତି ସଙ୍ଗେ ସଙ୍ଗେ ଆତ୍ମବିକାଶ ନିମନ୍ତେ ମନୁଷ୍ୟ ସୃଷ୍ଟିର ଆରମ୍ଭ କାଳରୁ ଉଦ୍ୟମ କରି ଆସିଅଛି । ସେଥିପାଇଁ ସୃଷ୍ଟି ଓ ସ୍ରଷ୍ଟାଙ୍କୁ ଅନୁଭବ କରିବା ପାଇଁ ପ୍ରୟାସ କରିଅଛି । ଏହି ପ୍ରୟାସର ନାମକୁ ଆମର ପ୍ରାଚୀନ ଇତିହାସ ଓ ଧର୍ମଶାସ୍ତ୍ରରେ 'ସନ୍ଧ୍ୟା-ଉପାସନା' କୁହାଯାଇଅଛି । ମୂର୍ତ୍ତିପୂଜା ପ୍ରଚଳିତ ହେବା ପରେ ମଧ୍ୟ ଏହି ବିଧାନ ଲୋପ ପାଇ ନାହିଁ । ଅବଶ୍ୟ କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏହାର ଅନୁସରଣରେ ବିକୃତି ଦେଖା ଦେଇଛି ।

ଯୋଗ ମାର୍ଗର ଅନୁସରଣ ସନ୍ଧ୍ୟାବିଧି ପ୍ରଣିତ ହୋଇଛି । ନିଜର ନିଷ୍ଠା ଓ ଶକ୍ତି ବଳରେ ପ୍ରତ୍ୟେକ ମନୁଷ୍ୟ ସନ୍ଧ୍ୟା-ଉପାସନା କରି ସମାଧି ଅବସ୍ଥା ପର୍ଯ୍ୟନ୍ତ ଗତି କରିପାରେ । ଆଚମନ, ମାର୍ଜନ, ପ୍ରାଣାୟାମ ତଥା ଗାୟତ୍ରୀ ମନ୍ତ୍ରର ଜପ ସନ୍ଧ୍ୟା ମଧ୍ୟରେ ଅନ୍ତର୍ଗତ । ଏଗୁଡ଼ିକ ସରଳ ଓ ସୁଗମ । ଅଭ୍ୟାସ କଲେ ପ୍ରତ୍ୟେକ ଉପାସକ ସଫଳତାର ସହିତ ସନ୍ଧ୍ୟାନୁଷ୍ଠାନ କରିପାରେ । ଏହା ପୂର୍ବରୁ 'ଓଁକାର ଜପ'ର ଅନୁଷ୍ଠାନ ସରଳ ଓ ଫଳପ୍ରଦ । ଆବାଳବୃଦ୍ଧ ବନିତା 'ଓମ୍' ଅର୍ଥାତ୍ ଅ, ଉ ଓ ମ ର ଅର୍ଥ-ବିସ୍ତର ପୂର୍ବକ ଜପ କରିପାରିବେ । ଓମ୍ ପରମାତ୍ମାଙ୍କ ଶ୍ରେଷ୍ଠ ଓ ନିଜ ନାମ । ବିଷ୍ଣୁ, ଲକ୍ଷ୍ମୀ, ବ୍ରହ୍ମନ୍ ଆଦି ପରମାତ୍ମାଙ୍କ ଅନ୍ୟ ନାମଗୁଡ଼ିକ ପୁଂଲିଙ୍ଗ, ସ୍ତ୍ରୀ ଲିଙ୍ଗ ଅଥବା କ୍ଲୀବ ଲିଙ୍ଗ ହୋଇଥାଏ । ପରନ୍ତୁ ଓଁ ଏକ ଅବ୍ୟୟ ଶବ୍ଦ । ଏହାର ସବୁ ଲିଙ୍ଗ, ବିଭକ୍ତି ଓ ବଚନରେ ସମାନ । 'ଅ' ଅକ୍ଷର ଈଶ୍ୱର ବାଚକ ; 'ଉ' ଜୀବବାଚକ ଓ 'ମ' ପ୍ରକୃତି ବାଚକ । ସ୍ରଷ୍ଟା 'ଅ' ଜୀବାତ୍ମା 'ଉ' ଓ ଜଡ଼ସୃଷ୍ଟି ବା ପ୍ରକୃତି 'ମ' । ଓଁକାର ଜପ ସଙ୍ଗେ ସଙ୍ଗେ ଗାୟତ୍ରୀ ମନ୍ତ୍ରର ଜପ ଉପାସନାର ମୁଖ୍ୟ ଅଙ୍ଗ । ଯୋଗ ଶାସ୍ତ୍ରର ସମାଧି ପାଦରେ କୁହାଯାଇଛି—'ତଜ୍ଜପସ୍ତଦର୍ଥ ଭାବନମ୍' ଅର୍ଥାତ୍ ଜପ ସହିତ ଅର୍ଥ ଚିନ୍ତନ କରିବା ଆବଶ୍ୟକ । ମନ୍ତ୍ରଜପ

ଚିତ୍ତକୁ ଏକାଗ୍ର କରେ । ଉଚ୍ଚାରଣକୁ ଶୁଦ୍ଧ କରିବା ଓ ମନକୁ ଏକାଗ୍ର କରିବା ଜପର ଉଦ୍ଦେଶ୍ୟ । ତେଣୁ ଜପ ସହିତ ଅର୍ଥକୁ ବିଚାର କରିବା ଉଚିତ । ଦୁର୍ଭାଗ୍ୟ ବଶତଃ ପୌରାଣିକ କାଳରେ ଅର୍ଥ ବିଚାରକୁ ଅବହେଳା କରାଯାଇଛି । ମନ୍ତ୍ରର ଜପ ମାତ୍ରକେ ପାପ ନଷ୍ଟ ହୁଏ ବୋଲି ଧାରଣା ସୃଷ୍ଟି କରି ଯାଇଛି ।

ପଞ୍ଚ ମହାଯଜ୍ଞର ନିତ୍ୟ ଅନୁଷ୍ଠାନ ପାଇଁ ପ୍ରାଚୀନ ଶାସ୍ତ୍ରମାନଙ୍କରେ ଉପଦେଶ ଦିଆ ଯାଇଛି । ଏଗୁଡ଼ିକ ମନୁଷ୍ୟର ମୁଖ୍ୟ କର୍ତ୍ତବ୍ୟ ହୋଇ-ଥିବାରୁ ଏଗୁଡ଼ିକୁ ମହାଯଜ୍ଞ କୁହାଯାଇଛି । ବ୍ରହ୍ମଯଜ୍ଞ ହେଉଛି ପ୍ରଥମ ମହାଯଜ୍ଞ । ସନ୍ଧ୍ୟା, ଜପ, ସ୍ୱାଧ୍ୟାୟ ଓ ପ୍ରବଚନ—ଏଗୁଡ଼ିକ ବ୍ରହ୍ମଯଜ୍ଞର ଅନ୍ତର୍ଗତ । ପ୍ରାତଃ ସାୟଂ ଧ୍ୟାନ ପୂର୍ବକ ଈଶ୍ୱର ଚିନ୍ତନ, ଅର୍ଥ ବିଚାର ପୂର୍ବକ ଓଁକାର ଜପ, ବେଦାଦି ସତ୍‌ଶାସ୍ତ୍ରର ନିୟମିତ ଅଧ୍ୟୟନ ଓ ପଠିତ ବିଷୟକୁ ଅନ୍ୟ ଆଗରେ ବିଶ୍ଳେଷଣ—ଏହି ଗୁଡ଼ିକ ବ୍ରହ୍ମ ଉପାସନା । ପୌରାଣିକ କାଳରେ ମୂର୍ତ୍ତିପୂଜା ଧ୍ୟାନ ପୂର୍ବକ ପ୍ରଭୁ ଚିନ୍ତନର ସ୍ଥାନ ଗ୍ରହଣ କଲା ଓ ସ୍ୱାଧ୍ୟାୟ କାର୍ଯ୍ୟକ୍ରମ ପ୍ରାୟ ବନ୍ଦ ହୋଇଗଲା । ଜନ୍ମଗତ ବ୍ରାହ୍ମଣମାନେ ବେଦାଧ୍ୟୟନକୁ ନିଜ ମଧ୍ୟରେ ସୀମାବଦ୍ଧ କରି ରଖିଲେ । ଏପରିକି ନିଜର ଅର୍ଦ୍ଧାଙ୍ଗିନୀମାନଙ୍କୁ ବେଦ-ଶିକ୍ଷାରୁ ବଞ୍ଚିତ କଲେ । ବାୟୁ, ଜଳ, ସୂର୍ଯ୍ୟକିରଣ ସର୍ବଜନଙ୍କ ପାଇଁ ଉନ୍ମୁକ୍ତ ଥିଲେ ସୁଦ୍ଧା ଐଶ୍ୱରୀୟ ଜ୍ଞାନ ବେଦରୁ ଅଧ୍ୟୟନ-ଅଧ୍ୟାପନ ସ୍ତ୍ରୀ-ଶୂଦ୍ରଙ୍କ ପାଇଁ ନିଷିଦ୍ଧ ହେଲା । ଭାଗବତାଦି ପୁରାଣ ବେଦର ସ୍ଥାନ ଗ୍ରହଣ କଲା । ପ୍ରସିଦ୍ଧ ଧର୍ମସ୍ଥାନମାନଙ୍କରେ ମଧ୍ୟ ଦୁଇ ଚାରି ଜଣ ବେଦପାଠୀ ମିଳିଲେ ନାହିଁ । ଧର୍ମ କେବଳ ପୌରାଣିକ ଓ ଐତିହାସିକ ଗାଥାମାନଙ୍କରେ ସୀମିତ ରହିଲା । ଧର୍ମର ମୂଳ ସ୍ରୋତ ବେଦରେ ଅନଭିଜ୍ଞ ରହିବାରୁ ଜନସାଧାରଣ ବେଦୋକ୍ତ ନିରାକାର ଈଶ୍ୱରଙ୍କ ଉପାସନା ଭୁଲିଗଲେ । ସଂସ୍କୃତ ଭାଷାର ଶିକ୍ଷା ହ୍ରାସ ପାଇଲା ।

ସ୍ୱାର୍ଥବଶତଃ ଶାସ୍ତ୍ରମାନଙ୍କରେ ପକ୍ଷପାତି ବିଷୟର ମିଶ୍ରଣ କରାଗଲା । ଅଜ୍ଞ ଲୋକେ ଅପଭ୍ରଷ୍ଟ ସାହିତ୍ୟକୁ ଶାସ୍ତ୍ର ବୋଲି ମାନିଗଲେ ।

ପଞ୍ଚ ମହାଯଜ୍ଞରେ ଦ୍ୱିତୀୟ ହେଉଛି ଦେବ ଯଜ୍ଞ । ଏହା ଅଗ୍ନି-ହୋତ୍ର ବା ହୋମ । ଆର୍ଯ୍ୟ ଜୀବନରେ ବ୍ରହ୍ମଯଜ୍ଞ ପରି ଦେବଯଜ୍ଞ ମହତ୍ତ୍ୱପୂର୍ଣ୍ଣ । ସନ୍ଧ୍ୟା-ଉପାସନା ପରି ଅଗ୍ନିହୋତ୍ର ପ୍ରାତଃ ଓ ସାୟଂ ନିତ୍ୟପ୍ରତି କରଣୀୟ । ମହାଭାରତ ଯୁଗ ପର୍ଯ୍ୟନ୍ତ ଏହି ଉଭୟ ଯଜ୍ଞ ଭାରତୀୟଙ୍କ ଦିନଚର୍ଯ୍ୟାରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲା । ଆମର ସାଂସ୍କୃତିକ ପତନ ସଙ୍ଗେ ସଙ୍ଗେ ଦେବଯଜ୍ଞ ବିଧି ବିସ୍ମୃତ ହେଲା । ମନୁଷ୍ୟ ନିଜର ମଳମୂତ୍ର ଆଦି ଦ୍ୱାରା ପରିବେଷ୍ଟନୀକୁ ଦୁର୍ଗନ୍ଧଯୁକ୍ତ କରୁଥିବା ବେଳେ, ନିତ୍ୟ ହୋମ ବା ଅଗ୍ନିହୋତ୍ର ବିଧାନରେ ବାୟୁମଣ୍ଡଳକୁ ପରିଶୁଦ୍ଧ ରଖିବା ବିଷୟର ଧୀରେ ଧୀରେ ଲୋପ ପାଇଲା । ଅଗ୍ନି-ହୋତ୍ରରେ ଆହୁତି ଦିଆ ଯାଉଥିବା ଘୃତ ତଥା ନାନା ସୁଗନ୍ଧିତ ସାମଗ୍ରୀ ଅଗ୍ନିରେ ପଡ଼ି ସହସ୍ର ସହସ୍ର ଅଣୁ ପରମାଣୁ ହୋଇ ବିନା ଭେଦ ଭାବରେ ସର୍ବତ୍ର ବିଚରିତ ହୁଏ—ଏହି ତ୍ୟାଗମୟ ଭାବନା ହ୍ରାସ ପାଇଲା । ହୋମ ବଦଳରେ ସଂଜବତି ବା ସଞ୍ଜୁଆ ଦିଆଗଲା । ଯଜ୍ଞରେ ପଶୁବଳି ଦେବା ଆସୁରିକ ପ୍ରଥା ଆରମ୍ଭ ହେଲା । ରାମାୟଣ କାଳରେ ଶ୍ରୀରାମ ଆଦି ମହାପୁରୁଷମାନେ ଯଜ୍ଞରକ୍ଷା ପାଇଁ ଘୋର ଯୁଦ୍ଧ କରି-ଥିଲେ । ଗାଈ ପରି ଉପକାରୀ ଓ ନିର୍ଦ୍ଦୋଷ ପଶୁକୁ ମଧ୍ୟ ବଧ କରାଗଲା । ବୌଦ୍ଧ ଯୁଗରେ ଯଜ୍ଞର ଏହି ବିକୃତ ସ୍ୱରୂପକୁ ଦେଖି ଲୋକେ ଯଜ୍ଞପ୍ରତି ଘୃଣା ପୋଷଣ କଲେ ।

ପ୍ରାଚୀନ କାଳରେ ଅଗ୍ନିହୋତ୍ରର ଅନ୍ୟ ନାମ ଥିଲା ଦେବପୂଜା । ବାୟୁ, ଜଳ ଆଦି ଦ୍ରବ୍ୟ ପଦାର୍ଥକୁ ଶୁଦ୍ଧ ରଖିବାକୁ ହେଲେ ଅଗ୍ନିରେ ସୁଗନ୍ଧିତ ମିଷ୍ଟ ଓ ସ୍ୱାସ୍ଥ୍ୟବର୍ଦ୍ଧକ ଦ୍ରବ୍ୟ ଆହୁତି

ହେବା ଆବଶ୍ୟକ । ଅର୍ଥାତ୍ ଅଗ୍ନିରେ ଦିଆଯିବା ଆହୁତ ଅନ୍ୟ ଦେବମାନଙ୍କୁ ଶୁଦ୍ଧ ଓ ପବିତ୍ର ରଖେ । ବୈଦିକ ଭାରତରେ ଯଜ୍ଞଶାଳାକୁ ଦେବମନ୍ଦିର, ଦେବାଳୟ, ଦେବମଣ୍ଡପ ଆଦି ଆଖ୍ୟା ଦିଆ ଯାଉ ଥିଲା । ମୂର୍ତ୍ତିପୂଜା ଆରମ୍ଭ ହେବା ପରେ ଦେବାଳୟର ଅର୍ଥ ବଦଳି ଗଲା । ମନ୍ଦିର ଶବ୍ଦର ଅର୍ଥ ମଧ୍ୟ ପରିବର୍ତ୍ତିତ ହେଲା ।

ଏବେ ମଧ୍ୟ ଆମ ଦେଶରେ ଅନେକ ଶିବାଳୟ ଯଜ୍ଞଶାଳା ପରି ନିର୍ମିତ ହୋଇଅଛି । ସେଥି ମଧ୍ୟରୁ କେତେକ ଚତୁଷ୍କୋଣ ବିଶିଷ୍ଟ ଓ କେତେକ ଅଷ୍ଟକୋଣ ବିଶିଷ୍ଟ । ଶିବଲିଙ୍ଗ ସ୍ଥାପିତ ହେଉଥିବା ସ୍ଥଳ ଯଜ୍ଞକୁଣ୍ଡ ପରି ଦେଖାଯାଏ । ଦେଶରେ ବାମମାର୍ଗ ପ୍ରଚଳିତ ହେବା ପରେ ଯଜ୍ଞମଣ୍ଡପଗୁଡ଼ିକ ଶିବାଳୟରେ ରୂପାନ୍ତରିତ ହୋଇଗଲା । ଯଜ୍ଞକୁଣ୍ଡ ମଧ୍ୟରେ ଶିବଲିଙ୍ଗ ପ୍ରତିଷ୍ଠିତ ହେଲା । ଦେବଯଜ୍ଞର ଭଗ୍ନ ବିଶେଷରେ ମୂର୍ତ୍ତିପୂଜା ପ୍ରଚଳିତ ହେଲା । ଯଜ୍ଞାଳୟ ଦେବାଳୟ ନାମିତ ହେଲା ।

ବୈଦିକ ଭାରତରେ ବ୍ରହ୍ମଯଜ୍ଞ ବା ସନ୍ଧ୍ୟା ଉପାସନା ଥିଲା ଈଶ୍ୱରପୂଜା । ପରିବାରର ପ୍ରତ୍ୟେକ ବ୍ୟକ୍ତି ବ୍ୟକ୍ତିଗତଭାବରେ ସନ୍ଧ୍ୟା କରୁଥିଲେ । ସମଷ୍ଟିଗତଭାବରେ ପରିବାର ଲୋକ, ଗ୍ରାମବାସୀ ଅଥବା ନଗରବାସୀ ଅଗ୍ନିହୋତ୍ର ବା ଦେବଯଜ୍ଞ ଅନୁଷ୍ଠାନ କରୁଥିଲେ । ଏହା ଥିଲା ଆର୍ଯ୍ୟ ମର୍ଯ୍ୟାଦା । ବ୍ରହ୍ମଯଜ୍ଞ ଓ ଦେବଯଜ୍ଞ ଅନିବାର୍ଯ୍ୟ ଭାବରେ ନିତ୍ୟ କ୍ରିୟା ରୂପରେ ଅନୁଷ୍ଠିତ ହେଉଥିଲା । ମହାଭାରତ ଯୁଗ ପର୍ଯ୍ୟନ୍ତ ପକ୍ଷ, ମାସ, ଚତୁର୍ମାସ ତଥା ଷଡ଼୍‌ମାସର ସମାପ୍ତି ସମୟରେ ସାମୂହିକ ଅଥବା ସାମାଜିକ ଅଗ୍ନିହୋତ୍ର ସମ୍ପାଦିତ ହେଉଥିଲା । ଦୀପାବଳୀ, ଶାରଦୀୟ ନବ ଶସ୍ୟେଷ୍ଟି ତଥା ହୋଲି (ବାସନ୍ତୀୟ ନବ ଶସ୍ୟେଷ୍ଟି ଯଜ୍ଞ) ବିଶିଷ୍ଟ ଦିବସ ରୂପରେ ପାଳିତ ହେଉଥିଲା । ଋତୁ ପରିବର୍ତ୍ତନ

ସମ୍ପ୍ରରେ ତଥା ଐତିହାସିକ ମହାପୁରୁଷମାନଙ୍କ ଜୟନ୍ତୀ ଉତ୍ସବରେ ବଡ଼ ବଡ଼ ଯଜ୍ଞ ଅନୁଷ୍ଠିତ ହେଉଥିଲା । ସାରା ବର୍ଷ୍ଟରେ ଯଜ୍ଞହୀଁଙ୍କ ମହୋତ୍ସବ ପାଳିତ ହେଉଥିଲା । ହୋମ ବା ଅଗ୍ନିହୋତ୍ରର ମହତ୍ତ୍ୱ ଏତେ ଅଧିକ ଅନୁଭୂତ ହେଉଥିଲା ଯେ ବୈଦିକ ଷୋଡ଼ଶ ସଂସ୍କାର ଅର୍ଥାତ୍ ଗର୍ଭାଧାନ, ପୁଂସବନ, ସୀମନ୍ତୋନ୍ନୟନ, ଜାତକର୍ମ, ନାମକରଣ, ଅନ୍ନପ୍ରାଶନ, ଚୂଡ଼ାକର୍ମ, ଉପନୟନ, ବିବାହ ଆଦି ଧାର୍ମିକ ଅବସରରେ ତାହା ମଧ୍ୟରେ ସମ୍ପାଦିତ ହେଉଥିଲା । ଏହି ପରମ୍ପରା ଏବେ ମଧ୍ୟ ପ୍ରଚଳିତ ଅଛି । ଅଗ୍ନିହୋତ୍ରଦ୍ୱାରା ମନ ଓ ଦେହ ଉପରେ ଅଦ୍ଭୁତ ପ୍ରଭାବ ପଡ଼େ । ଅଳ୍ପ ବ୍ୟୟ ଓ ପରିଶ୍ରମରେ ବହୁ କଲ୍ୟାଣ ସାଧିତ ହୁଏ ।

ଆର୍ଯ୍ୟଜାତି ନିଜର ଧର୍ମ ଓ ସଂସ୍କୃତିଠାରୁ ବହୁ ଦୂର ଚାଲିଯାଇଛି ; ତଥାପି ସେ ସବୁର କେନ୍ଦ୍ରୀୟ ବିଚାର ବୀଜ ରୂପରେ ଏବେ ମଧ୍ୟ ଆମର ଚିନ୍ତାଧାରା ଓ କାର୍ଯ୍ୟକଳାପରେ ବିଦ୍ୟମାନ । କେବଳ ନେତୃତ୍ୱ ଓ ପଥପ୍ରଦର୍ଶନର ଆବଶ୍ୟକତା ରହିଛି । ଆର୍ଯ୍ୟସମାଜ ବହୁ ସମ୍ପ୍ରଦାୟରେ ବିଭକ୍ତ ହୋଇଯାଇଛି । ଅଗଣିତ ପୂଜା ପଦ୍ଧତି ପ୍ରଚଳିତ ହୋଇଛି, ଧର୍ମ ନାମରେ କୁସଂସ୍କାର ଓ ଦୁର୍ବ୍ୟସନ ଘର କରି ରହିଛି । ପ୍ରତ୍ୟେକ କୁସଂସ୍କାର କେତେବେଳେ ଓ କିପରି ପ୍ରଚଳିତ ହୋଇଛି, ତାହା ଗବେଷଣା କରି ଜନସାଧାରଣଙ୍କ ଆଗରେ ଉପସ୍ଥାପିତ କଲେ ; ସେମାନେ ସହଜରେ କୁସଂସ୍କାରର ଉତ୍ପତ୍ତି ଓ ପରିଣାମ ସମ୍ବନ୍ଧରେ ଅବଗତ ହେବେ । ସଂସ୍କାରକମାନେ ନିଜ ଜୀବନକୁ ପବିତ୍ର ଓ ଚରିତ୍ରପୂର୍ଣ୍ଣ କରି ଉପଦେଶ ଦେଲେ ତାହା ଫଳପ୍ରଦ ହେବ । ସାଧକ ସନ୍ଧ୍ୟା-ଉପାସନାର ଅଭ୍ୟାସ କରି ଯେଉଁ ସୁଫଳ ପାଇବ, ତାହା ମୂର୍ତ୍ତିପୂଜାରେ ପାଇବ ନାହିଁ । ଅଗ୍ନିହୋତ୍ର ଅନୁଷ୍ଠାନରେ ଯେଉଁ ପ୍ରସନ୍ନତା ମିଳିବ, ତାହା କ୍ଲିଷ୍ଟ କର୍ମକାଣ୍ଡୀ ପୂଜା ଉପଚାରରେ ମିଳିବ

ନାହିଁ । ହିନ୍ଦୁସମାଜର କର୍ଣ୍ଣଧାରମାନେ ସ୍ୱାର୍ଥ ତ୍ୟାଗ କରି ଯେବେ
ଅଗ୍ନି ପ୍ରଜ୍ୱଳନ କଲେ ବୈଦିକ ସଂସ୍କୃତି ପୁନରାୟ ଦେଦୀପ୍ୟମାନ
ହେବ । ଏହି ଜାତିର ବହୁ ଦୁର୍ଦ୍ଦିନ ଆସିଛି ; ତଥାପି ନିଜ ସଂସ୍କୃତିକୁ
ସେ ସର୍ବଥା ତ୍ୟାଗ କରି ନାହିଁ । କଂକାଳ ରୂପରେ ଥିଲେ ସୁଦ୍ଧା ସେ
ବହୁ ମୂଲ୍ୟବାନ ରତ୍ନର ସ୍ୱାମିନୀ । ପୁନର୍ବାର ସଂସାରର ଗୁରୁ ହେବା
ନିମନ୍ତେ ତାହାର ଆତ୍ମବଳ ରହିଛି । ସେହି ସଂସ୍କୃତିର ଉତ୍ତରାଧିକାରୀ
ଭାବରେ ଆମେ ସେଥି ନିମିତ୍ତ ଉତ୍ସର୍ଗିତ ହେବା ଉଚିତ ନୁହେଁ କି ?

